# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

Digitized by srujanika@gmail.com

# ଭାଗବତ କଥା

## ତ୍ରୟସ୍ତ୍ରିଂଶ ଖଣ୍ଡ


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦିକା :

ସବିତା ରାଉତ



ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର



Digitized by srujanika@gmail.com

# ଭାଗବତ କଥା

ତ୍ରୟସ୍ତ୍ରିଂଶ ଖଣ୍ଡ

ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୯

ପ୍ରଚ୍ଛଦ :

ଅଜିତ ମୁଖାର୍ଜୀ

ମୁଦ୍ରଣ :

କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧୦

ମୂଲ୍ୟ :

ସାଧା—୨୫ ଟଙ୍କା
ବନ୍ଧେଇ—୨୮ ଟଙ୍କା

# BHAGABAT KATHA

( Thirty three Part )

Sri Prabhudatta Brahmachari

Publisher :

Srimati Annapurna Mishra
Cuttack Students' Store
Balubazar, Cuttack-753002

First Edition : 1989

Price :

Popular Rs.—25-00
Deluxe Rs.—28-00

*Digitized by srujanika@gmail.com*

# ସୂଚୀ



Digitized by srujanika@gmail.com

10671

# ଅନ୍ତର୍ଦ୍ୱନ୍ଦ୍ୱ

## ( ଭୂମିକା )

ଯସ୍ମିନ୍ ଯତୋ ଯର୍ହି ଯେନ ଚ ଯସ୍ୟ ଯସ୍ମାତ୍
ଯସ୍ମୈ ଯଥା ଯଦୁତ ଯସ୍ତ୍ୱପରଃ ପରୋ ବା
ଭାବଃ କରୋତି ବିକରୋତି ପୃଥକସ୍ୱଭାବଃ
ସଚୋଦିତସ୍ତଦଖିଳଂ ଭବତ ସ୍ୱରୂପମ୍ ।।

( ଶ୍ରୀ ଭା ୭ସ୍କ ୯ଅ-୨୦ ଶ୍ଲୋକ )

### ଛପ୍ପୟ

ସଂଗ୍ରହ ବନ ଜେ ଶ୍ୟାମ ! କବହୁଁ ହଁସି ହୃଦୟମହଁ ଆଓ ।
ଫୁନ ବଗଗ ବନ ଝରେ ! ବ୍ୟର୍ଥ ସବ ବସ୍ତୁ ବତାଓ ।।
ସେବା ଶିକ୍ଷା ଦେହୁ, ମନୋରଥ ମହଲ ରଚୁଓ ।
ଛିନ ମହଁ ସୁନ୍ଦର-ସୁଘର ମହଲ ରଜ ମାହିଁ ମିଲଓ ।।
ଜଳ ଭର-ଭର ରୀତେ କରୋ, ରୀତେ ପାତ୍ରନ ପୂନ ଭରୋ ।
କାମ-ଧାମ ତୁମ କୁଁ ନା କଛୁ, କଛୁ, ବାଲକବତ୍ କ୍ରୀଡ଼ା କରୋ ।।

ପ୍ରହ୍ଲାଦ ଭଗବାନ ନୃସିଂହଙ୍କର ସ୍ତୁତି କରି କହୁଛନ୍ତି—"ପ୍ରଭୁ ! ପୃଥକ୍ ପୃଥକ୍ ସ୍ୱଭବର ଯେତେ ପର ଏବଂ ଅପର କର୍ତ୍ତା ଅଛନ୍ତି, ସେମାନେ ଯାହାର ପ୍ରେରଣାରେ କାର୍ଯ୍ୟ କରୁଛନ୍ତି, ଯାହାଦ୍ୱାରା କରୁଛନ୍ତି, ଯାହାପାଇଁ କରୁଛନ୍ତି, ଯାହାପ୍ରତି କରୁଛନ୍ତି, ଯାହାର କରୁଛନ୍ତି, ଯେଉଁଥିରେ କରୁଛନ୍ତି, ଯେଉଁ ପ୍ରକାର ଯାହା କିଛି ସୃଷ୍ଟି କରୁଛନ୍ତି ଅଥବା ବିକୃତ କାର୍ଯ୍ୟ କରୁଛନ୍ତି, ସେ ସବୁ ଆପଣଙ୍କର ହିଁ ସ୍ୱରୂପ ଅଟେ ।"

Digitized by srujanika@gmail.com

ଯାହାଙ୍କର ଜୀବନରେ ନିରନ୍ତର ଅନ୍ତର୍ଦ୍ୱନ୍ଦ୍ୱ ଉଠେ ନାହିଁ, ସେ ହୁଏତ ଗୁଣାତୀତ କିମ୍ବା ଜଡ଼ ଅଟନ୍ତି । ଯାହାଙ୍କ ପାଖରେ ସାମାନ୍ୟ ଟିକେ ବିଚାର, ବିବେକ, ବୈରାଗ୍ୟ ଏବଂ ବିଷୟବିମର୍ଷର କ୍ଷମତା ଅଛି, ତାଙ୍କୁ ପ୍ରତି ପଦକ୍ଷେପରେ ନିଜ କାର୍ଯ୍ୟର, ତା'ର ପରିଣାମର ଓ ହିତ-ଅହିତର ନିରନ୍ତର ବିଚାର କରିବାକୁ ପଡ଼େ । ପ୍ରାଣୀ ମାତ୍ରେ ବ୍ୟସନ ପାଖରେ ନାଚାର । ଅଶନ ଭୋଜନଠାରୁ ବି ବୈଶିଷ୍ଟ୍ୟ ଥିବା ଅଭ୍ୟାସକୁ ବ୍ୟସନ କୁହାଯାଏ । ଯେମିତିକି କାହାର ଧୂମ୍ରପାନର ବ୍ୟସନ ହୋଇ ଯାଇଛି । ବର୍ତ୍ତମାନ ସେ ଅଶନ ବିନା ରହିପାରିବ କିନ୍ତୁ ବ୍ୟସନ ବିନା ରହିପାରିବ ନାହିଁ । ଦିନେ ତାକୁ ଖାଦ୍ୟ ନ ଦିଅ ସେ ତାହା ସହି ଯିବ କିନ୍ତୁ ତା' ପାଇଁ ଧୂମ୍ରପାନର ବ୍ୟବସ୍ଥା ନିଶ୍ଚିତ ରୂପେ କରିବାପାଇଁ ପଡ଼ିବ । କିଛି ନା କିଛି ବ୍ୟସନ ତ ସମସ୍ତଙ୍କର ଥାଏ । କୌଣସି ପ୍ରକାରର ବ୍ୟସନ ବିନା ପ୍ରାଣୀ ଜୀବିତ ରହି ପାରିବ ନାହିଁ । ଏହି ବ୍ୟସନ ଆମକୁ ପରମାର୍ଥ ପାଖକୁ ନେଉଛି ନା ସ୍ୱାର୍ଥ ଆଡ଼କୁ ଦେଖିବାକୁ ପଡ଼ିବ । ଏହାର ପରିଣାମ ଆମକୁ ପ୍ରଭୁଙ୍କ ପାଦପଦ୍ମ ପାଖକୁ ନେବ ନା ସଂସାର ଜାଲରେ ବାନ୍ଧି ରଖିବ । ଯେଉଁ ବ୍ୟସନ ଆମକୁ ଭଗବାନଙ୍କ ପାଖକୁ ନେଇଯାଏ, ବାସ୍ତବରେ ତାହା ହିଁ ଉତ୍ତମ ବ୍ୟସନ ଅଟେ ଏବଂ ତାହା ସର୍ବଥା ଗ୍ରହଣୀୟ । ଯାହା ସଂସାରରେ ଆମକୁ ବାନ୍ଧି ପକାଏ ସେ ବ୍ୟସନ ଯେତେ ଭଲ ହେଲେ ସୁଦ୍ଧା ଦୁର୍ବ୍ୟସନ ଅଟେ ଏବଂ ତାହା ତ୍ୟାଗକରିବା ଦ୍ୱାରା ହିଁ ଆମର ମଙ୍ଗଳ ହେବ ।

ମୁଁ ଅନେକ ଥର ପାଠକମାନଙ୍କୁ କହି ସାରିଛି ଯେ ଲେଖିବା ମୋର ବ୍ୟସନ । ମୁଁ ଭାବିଲି ଯେ ଆଉ କିଛି ନ ହେଉଛି ଯେତେବେଳେ ଭଗବାନ ଓ ଭକ୍ତଙ୍କ ବିଷୟରେ ହିଁ କିଛି ଲେଖା ହେଉଥାଉ । ତେଣୁ ତାଙ୍କର ପ୍ରେରଣାରେ, ତାଙ୍କର ଶକ୍ତିରେ, ତାଙ୍କର ନିର୍ଦ୍ଦେଶ ଦ୍ୱାରା ମୁଁ ଧଳା କାଗଜକୁ କଳା କରୁଛି । ଲେଖିବା ଦ୍ୱାରା ଲେଖା ପ୍ରତି ଲେଖକର ମମତା ହୋଇଯାଏ—ଲେଖା ଦ୍ୱାରା ମୋର ପ୍ରସିଦ୍ଧି ହେଉ, ପ୍ରତିଷ୍ଠା ହେଉ, ନାମ ହେଉ—ଏସବୁ କିନ୍ତୁ ପାପ । ଅର୍ଥାତ୍ ଅନ୍ୟର ପଦାର୍ଥକୁ ନିଜର କହିବା ଏକ ଅକ୍ଷମଣୀୟ ଅପରାଧ । ସେଥିପାଇଁ ବାରମ୍ବାର ଇଚ୍ଛା ହୁଏ ଯେ ଲେଖାଟି ଶୀଘ୍ର ଛପାଯାଉ, ଶୀଘ୍ର ପ୍ରକାଶିତ ପ୍ରସାରିତ ହେଉ । ଛାପିବା—ପ୍ରଚାର କରିବା ବ୍ୟାପାର ଅଟେ । ଯାହାକୁ ବ୍ୟାପାର କରିବା ଆସେ ନାହିଁ ସେ ଯଦି ସେଥିରେ ପ୍ରବୃତ୍ତ ହୁଏ ତେବେ ଅନର୍ଥ ଛଡ଼ା ଆଉ କ'ଣ ବା ହେବ ! ତା' ସାଥିର ଅନ୍ୟ ବେପାରୀ ଯେଉଁମାନଙ୍କର ଜିନିଷ ତା' ଜିନିଷ ତୁଳନାରେ ଭଲ ନ ହେଲେ ବି ସେମାନଙ୍କୁ ବ୍ୟବସାୟର କାଇଦା ଜଣାଥିବା ହେତୁ ସେମାନେ ସେମାନଙ୍କ ଜିନିଷର ଅଧିକା ପ୍ରଚାର କରିପାରିଥାନ୍ତି । ସେମାନଙ୍କୁ ଦେଖିଲେ ଈର୍ଷା ହୁଏ । ମନରେ ବ୍ୟାପାର ବୃଦ୍ଧିର ଆଶା ଅଛି, କୌଣସି କାମୀ ବା କାମିନୀଦ୍ୱାରା ପ୍ରଚାରର ଆଶା ଅଛି, ତେଣୁ

Digitized by srujanika@gmail.com

ଇଚ୍ଛା ନ ଥିଲେ ମଧ୍ୟ ସେମାନଙ୍କ ସହିତ ସମ୍ପର୍କ ପଡ଼େ । ଏହାଦ୍ୱାରା ଦମ୍ଭ ବଢ଼େ, ଈର୍ଷା ଆସେ । ଆଶାନୁରୂପ ଘଟିବାକୁ ବ୍ୟାପାର ନ ହେଲେ କ୍ରୋଧ ଆସେ । ବ୍ୟାପାର-ନୀତି କମନ୍ତେ ଲୋଭର ଅନ୍ତ୍ୟମ୍ଭ ମଧ୍ୟ ନେବାପାଇଁ ପଡ଼ୁଅଛି । ଅସତ୍ୟ ବିନା ବ୍ୟାପାର ଚାଲେ ନାହିଁ ବୋଲି ଲୋକଙ୍କର ଧାରଣା ହୋଇ ଯାଉଛି । ତେଣୁ କଥା କଥାରେ ସେମାନେ ମିଛ କୁହନ୍ତି । ଆଜିକାଲି ବ୍ୟବହାରରେ ଛନ୍ଦ କପଟ ପରସ୍ପରକୁ ପ୍ରତାରଣା କରିବା ଅତି ସାଧାରଣ କଥା ହୋଇ ଯାଇଛି । ଯିଏ ଯେତେ ଅଧିକ ମିଛସତ କହି ଲୋକଙ୍କ ସହ ଛଳନା କରି ଧନ ନୀତି କରୁଛି ସମାଜରେ ତା'ର ସେତିକି ସମ୍ମାନ ବଢ଼ୁଛି । କଜ୍ଜ୍ୱଳ କୋଠିରେ ପଶିଲେ ଦେହରେ କଳା ନ ଲାଗିବା ଆଦୌ ସମ୍ଭବ ନୁହେଁ । ଏସବୁ କଥା ମୁଁ ଆଗରୁ ଜାଣିଥିଲି । ତଥାପି ମାୟାରେ ପଡ଼ିଗଲି । ଏହାକୁ ପ୍ରାରବ୍ଧ କହିବି କି ପ୍ରମାଦ—ପାଠକମାନେ ହିଁ ନିର୍ଣ୍ଣୟ କରନ୍ତୁ । ଅନ୍ୟମାନେ ପ୍ରାରବ୍ଧ କହିଲେ ହୁଏତ ଉଚିତ ହେବ କିନ୍ତୁ ମୁଁ ତ ପ୍ରମାଦ କହିବା ହିଁ ଠିକ୍ ହେବ ।

'ଭାଗବତ କଥା'ର ପ୍ରକାଶନ ଯେବେ ଆରମ୍ଭ କରାଯାଇଥିଲା ସେତେବେଳେ ଏହାର ପ୍ରଥମ ଖଣ୍ଡରେ ଲେଖାଯାଇଥିଲା ୩-୪ ଖଣ୍ଡ ବାହାର କରି ମୁଁ ଏଥିରୁ ଅଲଗା ହୋଇଯିବି । କିନ୍ତୁ ତା' ହୋଇପାରିଲା ନାହିଁ । ଏହାର ଦାୟିତ୍ୱ ନେବାପାଇଁ ଯେ ମୋତେ ଆଶ୍ୱାସନା ଦେଇଥିଲେ ସେ ଏବେ ଆଖି ଉଠାଇ ଏହାକୁ ଦେଖୁ ବି ନାହାଁନ୍ତି । ପୁଣି ମୁଁ କୌଣସି ଏକ ଖଣ୍ଡର ଭୂମିକାରେ ଲେଖିଥିଲି—"ବାବାଜୀ ଅଡ଼ୁଆଜାଲରେ ପଡ଼ି ହିଁ ଗଲେ ।" ପ୍ରକୃତରେ ବାବାଜୀଙ୍କର ଜାଲରେ ପଡ଼ିବାପାଇଁ ଅବଶିଷ୍ଟ କିଛି ନ ଥିଲା । ଅନ୍ତର୍ଦ୍ୱନ୍ଦ୍ୱ ନିରନ୍ତର ଚାଲୁଥିଲା । ସେଇ ଦ୍ୱନ୍ଦ୍ୱ ଭିତରେ ଅଣତିରିଶି ଖଣ୍ଡ ଯାଏଁ ବାହାରିଗଲା । ପ୍ରେସ୍‌ର ଅସୁବିଧାରୁ ରକ୍ଷା ପାଇବାପାଇଁ ଝୁଞ୍ଜିରେ ଗୋଟିଏ ଛୋଟ ପ୍ରେସ ବି କରାଗଲା । କିନ୍ତୁ ତା' ଦ୍ୱାରା ସୁବିଧା ହେବା ପରିବର୍ତ୍ତେ ଅସୁବିଧା ହିଁ ବଢ଼ିଲା । କଥାରେ ଅଛି– "ଅଲ୍ପ ପୁଞ୍ଜି ବ୍ୟବସାୟୀଙ୍କୁ ଖାଇଯାଏ ।" ଘରର ପୂଷ୍ଟାର ସେଇ ଛୋଟ ମେସିନ୍‌ରେ 'ଭାଗବତ କଥା' ପରି ବିଶାଳ ଗ୍ରନ୍ଥ କିପରି ଛପା ହେବ । ଯେତେବେଳେ ଲେଖାଯାଇଥିବା ଅଧ୍ୟାୟ ସବୁ ଖଣ୍ଡରେ ଏକାଠି କରାଗଲା ଚାରି ବର୍ଷରେ ପ୍ରାୟ ୫୩ ଖଣ୍ଡ ପର୍ଯ୍ୟନ୍ତ ଲେଖା ହୋଇଯାଇଥିବା ଜଣାଗଲା । ଯଦିଓ ମୁଁ ପ୍ରକାଶନ ସମ୍ବନ୍ଧୀୟ କୌଣସି ଉଦ୍ୟମ କରୁ ନଥିଲି, ତଥାପି, ମନର ଆକର୍ଷଣ ତ ସେ ଦିଗରେ ରହିଥିଲା । ମନରେ ଅନେକ ପ୍ରକାରର ସନ୍ଦେହ ଲାଗି ରହୁଥିଲା—"ତୁମର ପତନ ହୋଇଗଲା । ଭଜନ-ପୂଜନ ସବୁ ବନ୍ଦ ହୋଇଗଲା । ଏଥର ଏଇ ନିୟମ କର, କାହା ସହିତ ଦେଖାକର ନାହିଁ, ପ୍ରକାଶନ ବିଷୟରେ ଚିନ୍ତା କରନି, ଯେମିତି ଯାହା ହେଉଛି ଖାଲି ଦେଖି ଚାଲୁଥାଅ, କିମ୍ବା ସବୁ କିଛି

Digitized by srujanika@gmail.com

ଭଗବାନଙ୍କ କାମ ବୋଲି ଭାବ, ନିଶ୍ଚିନ୍ତ ହୋଇଯାଅ ।" ଏହି ଭଳି ବିଭିନ୍ନ ପ୍ରକାର ବିଚାରରେ ମୁଁ କିଛି ନିଷ୍ପତ୍ତି କରିପାରିଲି ନାହିଁ । କୌଣସି ନିୟମ କଲେ ମଧ୍ୟ ନିଜର ଦୁର୍ବଳତା ହେତୁ ତାହା ପାଳନ କରିପାରୁ ନଥିଲି । ଶେଷରେ ଆଜିଠାରୁ ତିନିଚାରି ମାସ ପୂର୍ବରୁ ମୁଁ ସିଦ୍ଧାନ୍ତ କଲି ଯେ ଏବେ ପ୍ରତିଷ୍ଠାନପୁରର ପ୍ରତିଷ୍ଠା ପରିତ୍ୟାଗ କରି ନୀରବରେ ମୋର ଏଠାରୁ ଚାଲିଯିବା ଉଚିତ । ତାହାହେଲେ ଆଖି ଆଗରେ ଏସବୁ ଜିନିଷ ରହିବ ନା ଏଥିରୁ କୌଣସି ପ୍ରକାରର ଆକର୍ଷଣ ଆସିବ । ଏପରି ଭାବିବା ପରେ ମନରେ ଅନେକ ଶାନ୍ତି ମିଳିଲା । କିନ୍ତୁ ମାନ ମନରେ ବିପରୀତ ବିଚାର ମଧ୍ୟ ଉଠିଲା— "ତୁମେ ଚାଲିଯିବ, ସବୁ କିଛି ତ ଉଜୁଡ଼ିଯିବ ତା' ସହ ପ୍ରକାଶନ ମଧ୍ୟ ବନ୍ଦ ହୋଇଯିବ ।" ତେଣୁ ପୁଣି ଭାବିଲି—"ତୁ କରିବା କରାଇବାବାଲା କିଏ ? ଶ୍ରୀହରି ହିଁ ସବୁ କିଛି କରୁଛନ୍ତି, କରାଉଛନ୍ତି । ତାଙ୍କୁ ଯଦି ପ୍ରକାଶନ ଚାଲୁ ରଖିବାକୁ ପଡ଼ିବ ତେବେ ତୋର ରହିବା ଦ୍ୱାରା କ'ଣ ହେବ ? ତୁ ଏଥିରୁ ନିଜ ଅହଂକାର ଛାଡ଼ି ଚୁପ୍‌ଚାପ କୌଣସି ପୁଣ୍ୟ ତୀର୍ଥରେ ବସି ରାମ ରାମ ଜପକରି ଏବଂ ଅବଶିଷ୍ଟ ସମୟରେ ବସି ଭାଗବତୀ କଥାର ଅବଶିଷ୍ଟ ଖଣ୍ଡକୁ ଲେଖ ।" ଭଗବାନଙ୍କ ଉପରେ ସବୁ କିଛି ଛାଡ଼ିଦେବା ପରେ ମନରେ ଦୃଢ଼ତା ଆସିଲା । ସଂକୀର୍ତ୍ତନ ଭବନର ଏକ ସଂରକ୍ଷଣ ସଂଘ ଗଠନ କରାଗଲା ଯାହାର ସ୍ୱାମୀ ଶ୍ରୀ ମୂଳଚନ୍ଦ ମାଳବୀୟ, ଲାଲ ରାମନାରାୟଣ ଲାଲ ବୁକ୍ ସେଲରଙ୍କ ସୁପୁତ୍ର ବେଣୀପ୍ରସାଦ, ପଣ୍ଡିତ ରାମକୃଷ୍ଣ ଶାସ୍ତ୍ରୀ, ବୈଦ୍ୟନାଥ ପ୍ରାଣଦାର, ସ୍ୱାମୀ ପଣ୍ଡିତ ରାମନାରାୟଣ ବୈଦ୍ୟ ଏବଂ ବାବୁ ଶ୍ୟାମସୁନ୍ଦରଙ୍କୁ ଟ୍ରଷ୍ଟିର ସଭ୍ୟ ରଖାଗଲା । ଶ୍ରୀ ଗଦାଧର ପ୍ରସାଦ ଭାର୍ଗବଙ୍କୁ ଏହାର ବୈଧାନିକ ପରାମର୍ଶଦାତା ଭାବରେ ନିଯୁକ୍ତି କରାଗଲା । ଏହିଭଳି ଭାବରେ ରାଜକୀୟ ବିଧି-ବିଧାନରେ ସଂକୀର୍ତ୍ତନ ଭବନର ସଂରକ୍ଷଣ ସଂଘ ଗଠିତ ହେଲା । ତା'ପରେ ଚୈତ୍ର ମାସରେ ନୂତନ ସମ୍ବତ୍ସର ମହୋତ୍ସବ ସରିବା ପରେ ବୈଶାଖ କୃଷ୍ଣ ତୃତୀୟା ଦିନ ଏଠାରୁ କାହାକୁ କିଛି ନ କହି ଚାଲିଯିବି ବୋଲି ମୁଁ ଠିକ୍ କଲି । ଏଥିପାଇଁ ଯେତିକି ବ୍ୟବସ୍ଥା କରିବା ଦରକାର ଥିଲା ସେ ସବୁ ମୁଁ କଲି । ପ୍ରଶ୍ନ ଉଠିଲା ଲୁଚିକରି ଯିବି କେଉଁଠିକୁ ? ଗଙ୍ଗାତଟ ବା ପୁଣ୍ୟତୀର୍ଥକୁ ଛାଡ଼ି ଅନ୍ୟ କେଉଁଠି ତ ମୁଁ ରହିପାରିବିନି । ମନକୁ ଆସିଲା, ବୃନ୍ଦାବନ ଯାଇ ରହିବି, କିନ୍ତୁ ଭାବିଲି ଯେ ସେଠାରେ ତ ମୋର ବାଲ୍ୟକାଳ କଟିଛି । ବୃନ୍ଦାବନ ତ ମୋର ନିଜ ଘର । ତେଣୁ ଏଠା ଅପେକ୍ଷା ସେଠି ଅଧିକା ଭିଡ଼ ହେବା ସ୍ୱାଭାବିକ । ତେଣୁ ଭାବିଲି—"ବଦ୍ରୀନାଥ ଯିବି" କିନ୍ତୁ ସେଠିକାର ଜଳବାୟୁ ବିଶେଷ ଅନୁକୂଳ ନୁହେଁ । ଦୁ' ଚାରି ମାସ ରହି ପୁଣି ଫେରିବାକୁ ପଡ଼ିବ । କେତେଥର ତ ଯାଇଛି ଆସିଛି । ଶେଷରେ ଭାବିଲି—ଦ୍ୱାରକା ହିଁ ଚାଲିଯିବି, ଅବଶିଷ୍ଟ "ଭାଗବତ କଥା"ର ଖଣ୍ଡଗୁଡ଼ିକ ସେଇଠି ବସି ଲେଖିବି । ସେଠିକାର ତ ବିଶେଷ ଅନୁଭବ ବି ମୋର ନାହିଁ । ଥରେ ଦୁଇଥର ଯାଇଛି, କିନ୍ତୁ ଦୁଇ ତିନି ଦିନରୁ

Digitized by srujanika@gmail.com

ଅଧିକ ସେଠି ରହିନାହିଁ । ସେଠି ଅନ୍ୟ ସବୁ ସୁବିଧା ତ ହୋଇପାରିବ । କିନ୍ତୁ ଗୋଟିଏ କଥା ଯୋଗୁଁ ମୋତେ କଷ୍ଟ ହେଉଥିଲା । ସେଠି ଗଙ୍ଗାମାତା ନଥିବେ । ସବୁବେଳେ ଗଙ୍ଗାଜଳ ପାନକରି ଏତେ ଅଭ୍ୟସ୍ତ ମୁଁ ହୋଇ ଯାଇଥିଲି ଯେ ଅନ୍ୟ ଜଳରେ ମୋତେ ସନ୍ତୋଷ ଲାଗୁ ନଥିଲା । ଆଜିକାଲି ଗରମରେ ସୁରେଇରେ ରହିଥିବା ଗଙ୍ଗାଜଳ ଢାଳ ଢାଳ କରି ପିଉଥିବାବେଳେ ବ୍ରହ୍ମଙ୍କୁ ପାଇଲି ପରି ଲାଗେ । ଶୀତଳ ଗଙ୍ଗାଜଳ ମୁଖ ଦେଇ ଉଦରସ୍ଥ ହେଲାବେଳେ ମୁହଁରୁ ଆପେ ଆପେ ବାହାରଯାଏ—ଏଇ ତ ଅମୃତ ! ଆଜିକାଲି ଭଗବାନଙ୍କ ପ୍ରସାଦସହ ଶାଗ ବେଶୀ ଦିଆଯାଉ । ପ୍ରବଚନ ଦେଉଥିବା ବେଳେ ଶୋଷ ଯୋଗୁ ଗଙ୍ଗାଜଳ ପାନ କରି ଯେଉଁ ତୃପ୍ତି ମିଳୁଥିଲା ତାହା ଶବ୍ଦ ମାଧ୍ୟମରେ ବର୍ଣ୍ଣନା କରି ହେବନି । କିନ୍ତୁ କ'ଣ କରାଯିବ ? ସବୁ କଷ୍ଟ ସହିବାକୁ ପଡ଼ିବ । ଏଇ ତ ବୈରାଗ୍ୟ । ଦ୍ୱାରକା ଯିବାକୁ ହିଁ ହେବ ! ଦ୍ୱାରକା ଯିବା ନ ଯାଏ ଶାନ୍ତି ନାହିଁ । ସେଇଠାକୁ ଯିବା ନିଶ୍ଚିତ ହୋଇଗଲା ।

ଏଇଥରର ଉତ୍ସବ ଆଉ ସମାପ୍ତ ହେଲାନାହିଁ । ପୂର୍ଣ୍ଣିମାରେ ଉତ୍ସବ ସମାପ୍ତ ହେବାର ଥିଲା । ଠିକ୍ ତା'ର ଦୁଇ ତିନି ଦିନ ପୂର୍ବରୁ ପ୍ରୟାଗ ଜିଲ୍ଲା ବୋର୍ଡ଼ ବିଦ୍ୟାଳୟର ପ୍ରାୟ ପାଞ୍ଚ-ସାତ ଶହ ଛାତ୍ର ସଙ୍କୀର୍ତ୍ତନ ଭବନରେ ସ୍ୱାବଲମ୍ବନର ଶିକ୍ଷା ଗ୍ରହଣ କରିବାପାଇଁ ଆସିଗଲେ । ସ୍ୱାବଲମ୍ବନ ଶିବିର ସ୍ଥାପନ କରାଗଲା । ତଥାପି ତାକୁ ଛାଡ଼ି ଦ୍ୱାରକା ଯିବାପାଇଁ ମୁଁ ସ୍ଥିର କରିନେଲି । କିନ୍ତୁ ଯିବାପାଇଁ ଯେଉଁଦିନ ସ୍ଥିର ହୋଇଥିଲା ତା'ର ଗୋଟିଏ ଦିନ ପୂର୍ବରୁ ଦ୍ୱାରଙ୍ଗାବାଦର ଶ୍ରୀ ହରେରାମ ମହାରାଜାଙ୍କ ସାନଭାଇର ଦେହାନ୍ତ ହୋଇଗଲା । ସେ ସପରିବାର କୀର୍ତ୍ତନମଣ୍ଡଳୀ ସହିତ ଉତ୍ସବରେ ସମ୍ମିଳିତ ହେବାପାଇଁ ଆସିଥିଲେ । ଭାଇର ବୟସ ହୋଇଥିଲା ବତିଶ ବର୍ଷ, ଦୁଇଟି ଛୋଟ ଛୋଟ ପିଲାଙ୍କୁ ଛାଡ଼ି ସେ ଚାଲିଗଲା । ଆସିଥିଲା, ଏଇ ଆଶାରେ ଯେ ପ୍ରୟାଗ ଆସି ସୁସ୍ଥ ହୋଇଯିବ । କିନ୍ତୁ ଏଠି ସବୁଦିନପାଇଁ ସଙ୍ଗମରେ ଶୋଇ-ପଡ଼ିଲା । ବର୍ତ୍ତମାନ ଏଇଭଳି ଅବସ୍ଥାରେ ସମସ୍ତଙ୍କୁ ଛାଡ଼ି ଯିବା ମାନବିକତା ଓ ଶିଷ୍ଟାଚାରର ବିରୁଦ୍ଧ । ଭାବିଲି—"ଯେବେ ତେରଦିନ ହୋଇଯିବ ସବୁ କ୍ରିୟାକାର୍ଯ୍ୟ ସରିଯିବ, ଅକ୍ଷୟ ତୃତୀୟା ଦିନ ଏଠାରୁ ଚାଲିଯିବି । ଶ୍ରୀ ଜାନକୀନବମୀ ଦିନ ପାଖାପାଖି ଦ୍ୱାରକାରେ ପହଞ୍ଚି ପ୍ରଥମେ ଉପୋଷଣ କରି ଭାଗବତ ସହିତାର ସାତଦିନ ମୁଁ ପାରାୟଣ କରିବି । ତା'ପରେ ଭଗବାନ ଯେମିତି ରଖିବେ ସେମିତି ରହିବି । ସେଠି କେବେ ମୁଁ ରହିନାହିଁ । ମୋତେ ସେଠି କେହି ଜାଣନ୍ତି ନାହିଁ, ଚିହ୍ନନ୍ତି ନାହିଁ । ତେଣୁ ନିଶ୍ଚିନ୍ତରେ ବସି ଲେଖିବି । ଯେତେବେଳେ ଯଦୁକୁଳର କ୍ଷୟ ବିଷୟ ଆସିବ ସେତେବେଳେ ପ୍ରଭାସ-କ୍ଷେତ୍ରକୁ ଯାଇ ତାହା ସେହିଠାରେ ହିଁ ଲେଖିବି ।" ଏମିତି ପ୍ରତିଦିନ ଏହିପରି ଭାବୁଥିଲି । ମନେ ମନେ ଦ୍ୱାରକାରେ ପହଞ୍ଚି ବି ଗଲି । ଏକାନ୍ତରେ

Digitized by srujanika@gmail.com

ଏକ ବଟବୃକ୍ଷ ତଳେ କୁଟୀର ବ ଛଆର କଲ । ସେଠାରେ ମିଠା ଜଳର ଅଭାବ ଅନୁଭବ କଲ । ଦୁଇ ଗ୍ରହଣନ ସରସ୍ୱତୀ ସ୍ନାନ ତ ତୀର୍ଥ ସ୍ନାନ ପୁଣ୍ୟପାଇଁ ଠିକ କରୁ ସବୁବେଳେ ସମୁଦ୍ରର ଲୁଣିଆ ଏବଂ ଲଲୁଆ ପାଣି କପର ଭଲ ଲାଗିବ । ଦୁର୍ଗା ପୂଜା ଭବାନୀ ଶଙ୍କରର ତେରହଣ କିମ୍ବା ସୋମବତୀ ଅମାବାସ୍ୟାରେ ବି ସରିଗଲା । ଅକ୍ଷୟତୃତୀୟା ଦିନ ପ୍ରାତଃକାଳରୁ ତ୍ରିବେଣୀରୁ ଚାଲିଯିବାପାଇଁ ମୋର ସଙ୍କଳ୍ପ ଥିଲା । ଷ୍ଟେସନକୁ ଗଲେ ଚହ୍ଲା ପରିଚୟ ଲୋକ ମିଳିଯିବେ । ଅକ୍ଷୟ ତୃତୀୟା ଦିନ ସକାଳେ ସଙ୍ଗମ ପର୍ଯ୍ୟନ୍ତ ଆସିବାପାଇଁ ଟ୍ୟାକ୍‌ସିଟିଏ ଠିକ୍ କଲ । ସେଥିରେ କିଛି ଦୂର ଯାଇ ଆଗରେ କୌଣସି ଗ୍ରେଟ ଷ୍ଟେସନରୁ ଗାଡ଼ିରେ ଚଢ଼ିଯିବ । ସାଥିରେ ଠାକୁର ଏବଂ ଶର୍ମାଜୀଙ୍କୁ ନେଇଯିବା କଥା । ନହେଲେ ବାଟରେ ଭାଗବତ କିଏ ଶୁଣେଇବ; ଭାଗବତ କଥା ଶୁଣିବା ବିନା ତ ମୋର ସମୟ କଟିବ ନାହିଁ । ଠାକୁରଙ୍କୁ ତ କିଛି କହିବାର ନାହିଁ । ତାଙ୍କୁ ତ ଯେଉଁଠାକୁ ମୁଁ କହିବ ସେ ସେଠାକୁ ଚାଲିଯିବ । କିଛି ନେବାକୁ କି ସଂଗ୍ରହ କରିବାକୁ ତା'ର କିଛି ନାହିଁ । ରାଜାଭାଇଙ୍କୁ ବି ସବୁ ପ୍ରକାର ବ୍ୟବସ୍ଥା କରିବାକୁ ପଡ଼ିବ । ପ୍ରଥମେ ତ ତାଙ୍କୁ ଯିବାପାଇଁ କହିବାକୁ ପଡ଼ିବ କିନ୍ତୁ ତାଙ୍କୁ ଏକଥା କହିଲେ ସବୁ ଯୋଜନା ପଦାରେ ପଡ଼ିଯିବ । ଲୋକଙ୍କର କହାକହି ବି ଆରମ୍ଭ ହୋଇଯିବ । ଏଣେ ତାଙ୍କୁ ନ କହି ବ୍ୟବସ୍ଥା ବି ତ କିପରି ହେବନି । ଏହିସବୁ କଥା ଭାବି ଅକ୍ଷୟତୃତୀୟାର ଗୋଟେ ଦିନ ପୂର୍ବରୁ ଦ୍ୱିତୀୟା ଦିନ ଯେତେବେଳେ ସଙ୍ଗମରୁ ଫେରି ଆସିଲୁ ମୁଁ ରାଜାଙ୍କୁ ଏକାନ୍ତରେ ଡାକିନେଇ କହିଲି—"ମୁଁ ତୁମକୁ ଗୋଟିଏ ଗୁପ୍ତ କଥା କହୁଛି କାହାକୁ କହିବ ନାହିଁ ।" ସେ କହିଲେ—"ଆପଣ ଯେତେବେଳେ ମନା କରୁଛନ୍ତି, ମୁଁ କାହିଁକି କାହାକୁ କହିବ ?"

ମୁଁ କହିଲି "ତେବେ ଶପଥ କର ।"

ସେ କହିଲେ—"ହଁ ଶପଥ କଲି ।"

ତା'ପରେ ମୁଁ ତାଙ୍କୁ ପ୍ରଥମରୁ ଶେଷଯାଏ ସବୁକଥା କହିଲି ଏବଂ କହିଲି —"ଏବେ ଦ୍ୱାରକା ଯିବାକୁ ହେବ । ତୁମକୁ ବି ସାଥିରେ ଯିବାକୁ ପଡ଼ିବ ।" ଏହା ଶୁଣିବାକ୍ଷଣି ତାଙ୍କ ଆଖି ଛଳ ଛଳ ହୋଇ ଉଠିଲା । ସେ କହିଲେ—"ମହାରାଜ ! ଏଇ କଳଙ୍କ ମୋ ମଥାରେ ହିଁ ଲାଗିବ । ସମସ୍ତେ ମୋତେ ଅଭିଯୋଗ କରିବେ । ପୁଣି ଆପଣଙ୍କୁ ବି କପରି କହିବ ଯେ ଆପଣ ଏମିତି କରନ୍ତୁ ନାହିଁ । ମୋତେ ଯେପରି ଆଦେଶ ହେବ ସେଇ ଅନୁସାରେ ମୁଁ କାର୍ଯ୍ୟ କରିବ । ଆପଣଙ୍କ ସାଥିରେ ଯିବ ।"

ମୁଁ କହିଲି—"ଆଚ୍ଛା, ତୁମେ ଆଜି ସନ୍ଧ୍ୟାରେ ଚାଲିଯିବ । ଯେଉଁ ଜିନିଷ ସବୁ ନିହାତି ଦରକାର, ସେଗୁଡ଼ିକ ନେଇ ବୈଦ୍ୟଜୀଙ୍କ ଘରେ ରଖିଦେବ । ସେଠୁ ଥାନରୁ ଟ୍ୟାକ୍‌ସି ନେଇ କାଲି ସକାଳେ ସଙ୍ଗମ ପାଖକୁ ଚାଲି ଆସିବ ।"

Digitized by srujanika@gmail.com

ଆଖିରୁ ଲୁହ ପୋଛି ସେ କହିଲେ—"ମହାରାଜ ! ବଡ଼ କଠିନ କାର୍ଯ୍ୟ ଆପଣ ମୋତେ ଦେଉଛନ୍ତି । ଇଏ ମୋର ଶକ୍ତିର ବାହାରେ । ମୁଁ ପଛେ ପଛେ ଏନା ଯାଇପାରିବି କିନ୍ତୁ ଟ୍ୟାକ୍ସି ନେଇ ଆସି ପାରିବି ନାହିଁ । ସମସ୍ତଙ୍କର ଅଭିଶାପ ମୋ ଉପରେ ପଡ଼ିବ । ଅକ୍ରୁରଙ୍କୁ ସବୁ ଗୋପୀମାନେ ମିଶି ଶାପ ଦେଇଥିଲେ କ୍ରୁର ହେବାପାଇଁ । ସେଇଆ ହୋଇଥିଲା ମଧ୍ୟ । ସତକୁ ସତ ସେ କ୍ରୁର ହୋଇଗଲେ । ସାଧାରଣ ମଣି ପାଇଁ ସେ ଭଗବାନଙ୍କଠାରୁ ଦୂରେଇ ଯାଇଥିଲେ । ପ୍ରେମୀଙ୍କର ଅଭିଶାପ ଅମୋଘ ହୋଇଥାଏ ।"

ମୁଁ କହିଲି—"ଭାଇ ! ମୁଁ ତ ଅଭାଗା । ମୋତେ ଏ ସଂସାରରେ ପ୍ରେମ କରେ ବା କିଏ ? ମୋର କେହି ପ୍ରେମିକ ନାହାନ୍ତି । ଇଏ ସବୁ ଶିଷ୍ଟାଚାର ।"

ସେ କହିଲେ—"ହଁ, ଏ କଥା ତ ମୁଁ ବି ଜାଣିଛି କେହି ଆପଣଙ୍କୁ ପ୍ରେମ କରନ୍ତି ନାହିଁ । ଏଠି ଏତେ ଲୋକ ରହିଛନ୍ତି । ଏ ସମସ୍ତଙ୍କୁ ତ ଦୁଃଖ ଲାଗିବ । ଟ୍ୟାକ୍ସି ଆଣିବା କଥା ମୋତେ କହନ୍ତୁ ନାହିଁ ।"

ମୁଁ କହିଲି—"ଭଲ କଥା । ତା'ର ବ୍ୟବସ୍ଥା ମୁଁ କରିଦେବି । ତୁମେ ସଙ୍ଗମ ପାଖରୁ ମୋ ସାଙ୍ଗରେ ଯିବ ।" ଏହାଶୁଣି ସେ ଚାଲିଗଲେ ଏବଂ ଯାତ୍ରାର ସବୁ ପ୍ରକାର ବ୍ୟବସ୍ଥା କରିବାକୁ ଲାଗିଲେ । ଏତେବେଳଯାଏ ଏ କଥା କେବଳ ମୁଁ ଜାଣିଥିଲି, ଏବେ ଚାରିକାନ ହୋଇଗଲା ।

ସନ୍ଧ୍ୟାରେ ଶର୍ମାଜୀଙ୍କୁ ଡାକି, ତାଙ୍କୁ ଶପଥ କରାଇ ମୁଁ ସବୁ କଥା କହିଲି ଏବଂ ସେ ମଧ୍ୟ ଯିବାର ବ୍ୟବସ୍ଥା ସବୁ କରିବାକୁ ଲାଗିଲେ ।

ହଁ, ଏହାର ଠିକ୍ ଗୋଟିଏ ଦିନ ପୂର୍ବରୁ ଶ୍ରୀ ଶ୍ରୀ ମା ଆନନ୍ଦମୟୀଙ୍କର ଜଣେ ଲୋକ ଆସି କହିଲା—"ଆମର ଶିବ ପ୍ରତିଷ୍ଠା ହେବ । ଅକ୍ଷୟତୃତୀୟା ଦିନ କିଛି ଘଣ୍ଟାପାଇଁ ହେଲେ ସୁଦ୍ଧା ଆପଣଙ୍କର ଉପସ୍ଥିତି ଅତ୍ୟନ୍ତ ଆବଶ୍ୟକ ।" ମୋର ତ ଲୁଚିକରି ଯିବାକଥା ଥିଲା, ସେଥିପାଇଁ ଅବସର ବି ମିଳିଗଲା । କହିବାକୁ ବାହାନା ବି ମିଳିଗଲା ଯେ ମୁଁ କାଶୀ ଯାଉଛି । ମୁଁ କହିଦେଲି—"ମଟର ପଠେଇଲେ ମୁଁ ଚାଲିଆସିବି ।" ଯେଉଁ ଟ୍ୟାକ୍ସିକୁ ସଙ୍ଗମ ପାଖକୁ ଆସିବାକୁ କହିଥିଲି ତାକୁ ମନା-କରିଦେଲି । ମାଆଙ୍କ ପାଖରୁ ଆଉ ଜଣେ ଆସି କହି ଦେଇଗଲା ଯେ ଅକ୍ଷୟତୃତୀୟା ଦିନ ଭୋର୍‌ରୁ ମଟର ପହଞ୍ଚିଯିବ ।

ଦ୍ୱିତୀୟ ଦିନ କୀର୍ତ୍ତନରୁ ଫେରି ମୁଁ ଏଠାକୁ ଆସିଲି । ମନରେ ଅନେକ କଥା ଉଠିଲା । କିଛି ସୁଖର କିଛି ଅବସାଦର । ଖୁସି ଲାଗୁଥିଲା ଏଇଥିପାଇଁ ଯେ ପାଖାପାଖି

Digitized by srujanika@gmail.com

ପାଞ୍ଚ ବର୍ଷର କାରାବାସରୁ ମୋତେ ମୁକ୍ତି ମିଳିବ, ମୁକ୍ତ ସଂସାରରେ ଚଲିବା ପାଇଁ ସୁଯୋଗ ମିଳିବ । ଦୁଃଖ ବି ଲାଗୁଥିଲା ତା' ସହିତ, ଏଇଥିପାଇଁ ଯେ, କାଲିଠାରୁ ତ୍ରିବେଣୀ ସ୍ନାନ ସଙ୍ଗମ ଦର୍ଶନ ଏବଂ ଗଙ୍ଗାଜଳ-ପାନ ମୋ ପାଇଁ ଦୁର୍ଲଭ ହୋଇଯିବ । ଏଥିପାଇଁ ମନରେ କ୍ଳେଶର ସୀମା ନଥିଲା । କୁଟୀରର ଲତାପତ୍ର ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଫୁଲଗଛ ସବୁ ପ୍ରତି ମୋହ ଥାଇପାରେ କିନ୍ତୁ ତା'ର ଅନୁଭୂତି କେବେ ହୋଇ ନଥିଲା । ଗାର୍ଡ଼ିନ ଭବନରୁ ଫେରିବାବେଳେ ମନରେ କିଛି ଦ୍ଵନ୍ଦ୍ଵ ଉଠିଲା । କାଲି ମୁଁ ଚାଲିଯିବା ପରେ ଆଶ୍ରମର ଯେଉଁ ଅବସ୍ଥା ହେବ ତା'ର ଚିତ୍ର ସବୁ ମୋ' ଆଖି ଆଗରେ ନାଚି ଉଠିଲା । ଏତେବେଳଯାଏ ମନରେ ଥିବା ଦୃଢ଼ତା ତାହା ଶିଥିଳ ହେବାପରି ଲାଗିଲା । କାହାକୁ ସୂଚନା ନଦେଇ ଚାଲିଯିବି ବୋଲି ଠିକ୍ କରିଥିଲି । କିନ୍ତୁ ଏବେ ଲାଗିଲା ଯେ ଯଦି ଯିବାକୁ ହିଁ ହେବ ଯେତେବେଳେ ସମସ୍ତଙ୍କୁ ଜଣେଇ ଦେଇ ଯିବି । ରାଜା ଭାଇ ସାଥିରେ ଥିଲେ । ମୁଁ କହିଲି—"କୁହ ଭାଇ ! ତୁମର କ'ଣ ସମ୍ମତି ଅଛି ?"

ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"କି ସମ୍ମତି ?"

ମୁଁ କହିଲି—"ଆମର ଏ ପ୍ରକାର ଚାଲିଯିବା ଠିକ୍ ହେବ କି ?"

ସେ କହିଲେ—'ମହାରାଜ ! ଯଦି ଆପଣ ମୋର ସମ୍ମତି ଜାଣିବାକୁ ଚାହୁଁଛନ୍ତି ମୋତେ ସ୍ପଷ୍ଟ କହିବା ପାଇଁ ଅନୁମତି ଦିଅନ୍ତୁ ।"

ମୁଁ କହିଲି—"ହଁ, କୁହ ।"

ସେ କହିଲେ—"ଆପଣଙ୍କର ଏପରି ଭାବରେ ଯିବା ମୋତେ ଭଲ ଲାଗୁନି । ଏହାର ଅନେକ କାରଣ ଅଛି । ଆପଣ ଚାଲିଗଲେ ଆଶ୍ରମ ରହିବ ନାହିଁ ।"

ମୁଁ କହିଲି—"ଯାଉ, ମୋର କ'ଣ ଅଛି ? ଶ୍ରୀହରି ହିଁ ସବୁ କରିଛନ୍ତି । ମୋର କୌଣସିଥିରେ ମୋହ ନାହିଁ । ମୋର ବୈରାଗ୍ୟ ଆସିବା ଦ୍ଵାରା ହିଁ ମୁଁ ଏପରି ନିଷ୍ପତ୍ତି କରିଛି ।"

ସେ କହିଲେ—"ତଥାପି ଯେଉଁ କାର୍ଯ୍ୟ ଆପଣଙ୍କ ଦ୍ଵାରା ହେଉଛି ତାହା ଅସମ୍ପୂର୍ଣ୍ଣ ରହିଯିବ । ଦ୍ଵାରକା ଭଗବନ୍ତ କ୍ଷେତ୍ର, ଏହା ସତ୍ୟ କିନ୍ତୁ ମୁଁ ସେଠି ଅନେକ ଦିନ ରହିଛି । କିନ୍ତୁ ସେଠି ଏଠାପରି ବଗିଚା ଏକାନ୍ତ ସ୍ଥାନ ମିଳିବ ନାହିଁ—ସେଠି ସେଉଁଠିକୁ ସ୍ନାନ କରିବାପାଇଁ ଯାଅ ଜନସମୁଦ୍ର ଭିତରେ ହିଁ ଯିବାକୁ ହେବ । ପ୍ରତିଷ୍ଠାନପୁର ହିଁ ଏପରି ସ୍ଥାନ ଯେଉଁଠି ଆପଣ ଏକାନ୍ତରେ ତ୍ରିବେଣୀସ୍ନାନ କରିପାରିବେ । ସେଠି ଏପରି ମଧୁର ଗଙ୍ଗାଜଳ କେଉଁଠି ପାଇବେ ? ସବୁଠାରୁ ବଡ଼ କଥା ହେଲା ଯେ

Digitized by srujanika@gmail.com

ଲେଖିବା ପାଇଁ ଏଠାର ପରିବେଶ ସେଠି ପୃଷ୍ଠିଥରେ ସୃଷ୍ଟି କରିବା ପାଇଁ ସମୟ ଦରକାର । ପୁନଶ୍ଚ କବିତା ଲେଖା ପାଇଁ ସ୍ଥାନର ବିଶେଷତ୍ୱ ଥାଏ । ସେଠି କବିତା ସୃଷ୍ଟି ନ ହୋଇପାରେ । ତେଣୁ ଏ ଯେଉଁ "ଭାଗବତ୍ ଚରିତ" ଛପ୍‌ପସ୍ଥରେ ଲେଖା-ଯାଉଛି ତାହା ଅସମ୍ପୂର୍ଣ୍ଣ ରହିଯିବ ।"

ତାଙ୍କର ଶେଷ କେତେ ପଦ ମୋ ହୃଦୟରେ ଯଥେଷ୍ଟ ପ୍ରଭାବ ପକାଇଲା । ପ୍ରକୃତରେ ମୋର ସବୁଠାରେ କବିତାର ସ୍ଫୂର୍ତ୍ତି ହୁଏ ନାହିଁ । ଗଙ୍ଗା ମଝିରେ ନୌକାରେ କିମ୍ବା ଏଇ କୁଟୀରରେ—ଏଇ ଦୁଇଟି ସ୍ଥାନରେ ହିଁ କବିତାର ସ୍ଫୂର୍ତ୍ତି ହୁଏ । କିଏ ଯେମିତି ମୋର ଲେଖନୀ ଧରି ମୋତେ ଲେଖେଇ ଦେଲା ଭଳି ଲାଗେ । ଅନ୍ୟ କେଉଁଠି ମୁଁ କବିତା ଲେଖିଲେ ସେଗୁଡ଼ିକ ଅତି ଭଲ ହୁଏ ନାହିଁ ।

ତା'ପରେ ଅନ୍ୟ ପ୍ରକାରେ ଭାବିଲି । ମୋହରେ ପଡ଼ି ନିଜକୁ କର୍ତ୍ତା ଭାବି ବିଚାର କରିବାକୁ ଲାଗିଲି—ନୂଆ ନୂଆ ଟ୍ରଷ୍ଟ୍ କରା ହୋଇଛି, ଟ୍ରଷ୍ଟି ସଭ୍ୟମାନଙ୍କର ମୁଣ୍ଡ ଉପରେ ଏକାଥରେ ଗୁଡ଼ାଏ ଦାୟିତ୍ୱ ପଡ଼ିଯାଉଛି ଯଦିଓ ୩୬ ଖଣ୍ଡ ଛପା ଯିବାର ବ୍ୟବସ୍ଥା ହୋଇ ସାରିଥିଲା, କିନ୍ତୁ କିଏ ଜାଣେ, ପରେ ଅସମ୍ପୂର୍ଣ୍ଣ ଖଣ୍ଡ ସବୁ ଛପା ହୋଇ ପାରିବ କି ନାହିଁ । ୩୬ ଖଣ୍ଡ ପର୍ଯ୍ୟନ୍ତ ପ୍ରତ୍ୟେକ ଖଣ୍ଡ ଯଦି ପାଠକମାନଙ୍କ ପାଖରେ ନ ପହଞ୍ଚେ ତେବେ ଯେଉଁ ଆଗ୍ରହୀ ପାଠକମାନେ "ଭାଗବତ କଥା"ର ପ୍ରତ୍ୟେକ ଖଣ୍ଡକୁ ଅତ୍ୟନ୍ତ ଉତ୍ସୁକତାର ସହ ପ୍ରତୀକ୍ଷା କରି ରହିଛନ୍ତି ସେ ସମସ୍ତଙ୍କର ଅଭିଶାପ ମୋ ଉପରେ ପଡ଼ିବ । ଆଶ୍ରମ ଉପରେ ପ୍ରାୟ ପନ୍ଦର ହଜାର ଟଙ୍କାର ଋଣ । ଏବେ ମୁଦ୍ରା ବି ଲୋକମାନଙ୍କର ବିଶ୍ୱାସ ଭିତରରେ ହେଉ ପଛେ ସବୁ ଶୂନ୍ୟ ହୋଇଯିବ । ମୁଁ ଚାଲିଗଲେ ମହାଜନମାନେ ପରମହଂସଙ୍କୁ ଏବଂ କୋଷାଧ୍ୟକ୍ଷଙ୍କୁ ବ୍ୟସ୍ତ କରିବେ । ଏମାନେ ସମସ୍ତେ ହଇରାଣ ହୋଇଯିବେ ।" ଏହାପରେ ଭାବେ ବୈରାଗ୍ୟ ବିଚାର ଯାଇ ମାୟାମୋହର ଭାବନା ଆସିବାକୁ ଲାଗିଲା—"ସେଠାକୁ ଯିବି ଆଉ ଯଦି କବିତାର ସ୍ଫୂର୍ତ୍ତି ନ ହୁଏ ପୁଣି ନିରାଶ ହୋଇ ଏଠାକୁ ଫେରିବାକୁ ପଡ଼ିବ ।"

ତ୍ରିବେଣୀ ଏଇଠି ରହିଯିବ । ଏପରି ଗରମ ସମୟରେ ସୁରେଇରୁ ଶୀତଳ ଗଙ୍ଗାଜଳ ମିଳିବା ଦୁର୍ଲ୍ଲଭ ହୋଇଯିବ । କେତେ ଦିନରୁ ଲୋକେ ଶ୍ରୀକୃଷ୍ଣ ଚରିତକୁ ପଢ଼ିବା ପାଇଁ ଆଶା କରି ବସିଛନ୍ତି । ଛତିଶତମ ଖଣ୍ଡରୁ ଶ୍ରୀକୃଷ୍ଣ ଚରିତ ଆରମ୍ଭ ହୋଇ ପଚିଶତମ ଖଣ୍ଡ ପର୍ଯ୍ୟନ୍ତ ଚାଲୁଛି । ମୋର ଆଶା ଥିଲା ଯେ ଅତି କମ୍‌ରେ ଏଇ ପଚିଶ ଖଣ୍ଡ ତ ଛପା ହୋଇ ପାଠକମାନଙ୍କ ପାଖରେ ପହଞ୍ଚିଯାଉ ! ଏଇସବୁ ବିପରୀତ ଚିନ୍ତାର ଫଳରେ ମୋର ସିଦ୍ଧାନ୍ତରେ ଶିଥିଳତା ଆସିଲେ ।

Digitized by srujanika@gmail.com

ମୁଁ ଭାବିଲି—ଆଚ୍ଛା, କାଲି ଏ ବିଷୟରେ ଚିନ୍ତା କରିବି । ନ ହେଲେ ସନ୍ତମାନଙ୍କୁ କଟକେ ଦେଇ ହିଁ ଯିବି ।

ମୁଁ ଦେଖିଲି, ମୋ ଭିତରେ ଆଗଭଳି ଭଗବତ୍ ବିଶ୍ୱାସ ନାହିଁ । ଆଗେ ମୁଁ ଯେଉଁଠାକୁ ଯାଉଥିଲି ଏମିତ ହିଁ ଚାଲି ଯାଉଥିଲି । ଏକଥା ବି ମୁଁ ଭାବୁ ନଥିଲି ଯେ ଟିକେଟ ପାଇଁ ପଇସା କେଉଁଠୁ ଆସିବ । ଯେତେଜଣ ସାଙ୍ଗ ହେଉଥିଲେ ବି ଚାଲିଯାଉଥିଲୁ । ଷ୍ଟେସନରେ ଟିକେଟ୍ ପାଇଁ କିଛି ନା କିଛି ବ୍ୟବସ୍ଥା ହୋଇ ଯାଉଥିଲା । ଏଥର କେତେଦିନ ଆଗରୁ ମୁଁ ଯିବାପାଇଁ ସ୍ଥିର କରି ସାରିଥିଲି । ଯିବାର ଦୋଟିଏ ଦିନ ପୂର୍ବରୁ ବେଣୀପ୍ରସାଦଙ୍କଠାରୁ ପାଞ୍ଚଶହ ଟଙ୍କା ବି ଡୁପଲ୍ଗସ୍ ମାଗି ଆଣିଥିଲି ଯିବାବେଳର ଖର୍ଚ୍ଚ ପାଇଁ । ବର୍ତ୍ତମାନ ମନ ଅଡୁଆରେ ପଡ଼ିଗଲା ।

ରାଜା କହିଲେ—"ଆପଣ ଏବେ ରହିଯାଆନ୍ତୁ । ହୁଏତ ଭଗବାନ ଆପଣଙ୍କୁ ଏହି ବିଷୟରେ କିଛି କହିବେ ବା ସ୍ୱପ୍ନରେ ହିଁ କିଛି ନିର୍ଦ୍ଦେଶ ଦେବେ ।"

ଏହିସବୁ ଭାବୁ ଭାବୁ ମୁଁ ଶୋଇ ପଡ଼ିଲି । ବଡ଼ି ସକାଳୁଁ ଉଠି ତ୍ରିବେଣୀ ସ୍ନାନ କରିବାକୁ ଗଲି । ରାଜା କହିଲେ,—"କୁହନ୍ତୁ କ'ଣ ଆଦେଶ ହେଲା । କିଛି ସ୍ୱପ୍ନ ହେଲା ?"

ମୁଁ କହିଲି—"ଆଦେଶ ତ କିଛି ମିଳିଲା ନାହିଁ କିନ୍ତୁ ସ୍ୱପ୍ନ ଦେଖିଛି ଯେ ଗଙ୍ଗାରେ ବୁଡ଼ି ଦେଉଛି ଏବଂ ମୋତେ ଗୋଟେ କଙ୍କଣ ମିଳିଛି ।"

ସେ କହିଲେ—"ଏହାର ଦୁଇଟି ଅର୍ଥ ହୋଇପାରେ—ହୁଏତ ତ୍ରିବେଣୀ ମାତା କହୁଛନ୍ତି ଯେ ମୁଁ ତତେ କଙ୍କଣ ପିନ୍ଧାଉଛି ତୁ ଏଇଠି ରହିଯା କିମ୍ବା ଏହା ମୋ ତରଫରୁ ଉପହାର ନେଇ ଯାଅ ।"

ମୁଁ ସ୍ନାନ କରି ଫେରିଲି । ସଙ୍ଗମରେ କେତେଜଣ ପଣ୍ଡିତ ହୋମ କରୁଥିଲେ । ସେମାନେ ମୋତେ ସମ୍ମାନର ସହ ସ୍ୱାଗତ କଲେ ଏବଂ ମାଲ୍ୟାର୍ପଣ କଲେ । ମୁଁ କିଛି ନିଷ୍ପତ୍ତି କରିପାରିଲି ନାହିଁ, କ'ଣ ଆଦେଶ ଆଉ କ'ଣ ଉପଦେଶ ।

ଆଶ୍ରମକୁ ଆସି ପୁରୀ ମହାତ୍ମା ଏବଂ ହରେରାମ ମହାରାଜାଙ୍କୁ ଡାକିଲି । ସେମାନଙ୍କୁ ସବୁ କଥା କହିଲି । ସେମାନେ କହିଲେ—"ନା ଆପଣ ଆମ ମନାରେ ରହି ପାରିବେ ନା ଆପଣ ଆମ ନିର୍ଦ୍ଦେଶରେ ଯାଇପାରିବେ । ଭଗବାନଙ୍କର ଆପଣଙ୍କ ଦ୍ୱାରା ଯାହା କିଛି କରାଇବାର ଥିବ ସେ ନିଶ୍ଚୟ କରାଇବେ । ଯଦି ଏଇଠାରେ ହିଁ ଲେଖାହେବା ପାଇଁ ଥାଏ ତେବେ ଆପଣ ଚାହିଁଲେ ବି ଯାଇପାରିବେ ନାହିଁ । ଯଦି କେଉଁଠି ବାହାରେ ଲେଖାହେବାର ଥାଏ ଆପଣ ଏଇଠି ରହିବାପାଇଁ ଚାହିଁଲେ ବି

Digitized by srujanika@gmail.com

ରହୁପାରବେ ନାହିଁ । ପ୍ରଥମ ଖଣ୍ଡରେ ଭୂମିକାରେ ଲେଖାଯାଇଛି ଯେ ଏଇଠି ତ୍ରିବେଣୀରେ କଥା ଲେଖାହେବ । ଯଦି ମୋତେ ତାହା ପୂରା କରିବାକୁ ହେବ ସେ ଆପଣଙ୍କୁ ଏଇଠି ରଖିବେ ।"

ମୁଁ କହିଲି—"କଥା ଲେଖିବାପାଇଁ ମୋର କିଛି ଆପତ୍ତି ନାହିଁ । ଗୋଟିଏ କଥା ମୁଁ ଅନୁଭବ କରୁଛି ଯେ ମୋର ତ୍ୟାଗ-ବୈରାଗ୍ୟ ହିଁ ସମାନ ହୋଇଥିଲେ ବି ମୁଁ ମାୟା-ମୋହ ଜାଲ ଭିତରେ ଫସି ଯାଇଛି । ଆଶ୍ରମ ପାଇଁ, ଟଙ୍କା ପାଇଁ, ଇଟା ପଥର ପାଇଁ ଚିନ୍ତା ଲାଗି ରହୁଛି । ଏସବୁ ଭିତରେ ବର୍ତ୍ତମାନ ନା କିଛି ଲେଖି ହେଉଛି ନା ଭଜନ କୀର୍ତ୍ତନ କରି ହେଉଛି ।"

ସେ କହିଲେ—"ଆପଣ ଯେଉଁଠାକୁ ଗଲେ ବି ଏମିତି ହେବ । ଅଗତ୍ଲା ନିୟମ କରିଦିଅନ୍ତୁ । କଥା-କୀର୍ତ୍ତନ ବ୍ୟତୀତ ଆଉକୁ ଯେପରି କାହା ସହିତ ଦେଖା କରୁ ନଥିଲେ ସେହିପରି କରନ୍ତୁ, ଆଶ୍ରମରେ ଯାହା କିଛି ହେଲେ ବି ଭଗବାନ ସବୁ ସମସ୍ୟାର ସମାଧାନ କରିବେ । ଆପଣ ଅନୁଭବ କରୁନାହାଁନ୍ତି "ଭଗବତ୍ କଥା"ର ଏ କେତେ ବଡ଼ ଦାୟିତ୍ୱ ଭଗବାନ ଆପଣଙ୍କ ଦ୍ୱାରା କରାଉଛନ୍ତି । ଏହାର ମହତ୍ତ୍ୱ ଆପଣଙ୍କୁ ଏବେ ଜଣାପଡ଼ୁନାହିଁ । ପରେ ଜାଣିବେ । ଆପଣ ତ୍ରିବେଣୀ ତଥା ଆପଣଙ୍କ କୁଟୀର ଭିତରେ ହିଁ ରହନ୍ତୁ । ଆଶ୍ରମ, ପ୍ରେସ୍, ପ୍ରକାଶନ—ଏ ସବୁ ଚିନ୍ତା ଛାଡ଼ି ଦିଅନ୍ତୁ । ସ୍ୱାମୀ ମହାରାଜ ମଧ୍ୟ ଏହାର ସମର୍ଥନ କଲେ । ସେ କହିଲେ— "ଏଠାରେ ଆପଣଙ୍କର ଛଅବର୍ଷ ରହିବାର ସଙ୍କଳ୍ପ ପ୍ରଥମରୁ ଅଛି । ତେଣୁ ଅନ୍ତତଃ ଛଅବର୍ଷ ଯାଏ ଏସବୁ କଥା ଚିନ୍ତା କରିବା ଠିକ୍ ନୁହେଁ । ଏମିତି ଅନେକ ବାଧାର ଆସେ । ଶୁଭ କାର୍ଯ୍ୟରେ ବିଘ୍ନ ହୁଏ । ଏସବୁ ସହିଯିବା ଉଚିତ । ଆରମ୍ଭ କରିଥିବା କାର୍ଯ୍ୟକୁ ଉତ୍ତମ ବ୍ୟକ୍ତି ମଝିରୁ ଛାଡ଼ନ୍ତି ନାହିଁ ।"

ମୁଁ ଲେଖିବା କାର୍ଯ୍ୟକୁ ତ୍ୟାଗ ତ କରୁ ନଥିଲି । କାଠ ପରି ମୌନବ୍ରତ ରହି କି ଦୁଇବର୍ଷ ଦେଖିଲି । ସେଥିରେ ଚଳବଳ ବରଂ ଦମ୍ଭ ହିଁ ବଢ଼ିବାକୁ ଲାଗୁଛି । ଅନ୍ୟ ଲୋକ ଭାବୁଛନ୍ତି—"ମହାରାଜ କାଠ ପରି ମୌନବ ।" କିନ୍ତୁ ମୋ ମନରେ ଯେଉଁ କି ପ୍ରକାରର ସଙ୍କଳ୍ପ ବିକଳ୍ପ ଉଠେ ସେକଥା କେବଳ ମୁଁ ହିଁ ଜାଣେ । କେହି ଅତ୍ୟନ୍ତ ପ୍ରିୟବ୍ୟକ୍ତି ଆସିଗଲେ ତାଙ୍କ ସହିତ ଦେଖା କରିବାକୁ ମନ ବ୍ୟାକୁଳ ହୋଇ ଉଠେ । ଲୋକେ ଅନେକ ପ୍ରକାରର ବ୍ୟଙ୍ଗ କରନ୍ତି । ସେ ସବୁ ଦ୍ୱାରା ମୋର କ୍ଷୋଭ ଜାତ ହୁଏ ।

ମୋ ମନରେ ପ୍ରକୃତ ବୈରାଗ୍ୟ ଥିଲେ ଅନ୍ୟର ସମ୍ମତି ନେବାର ଆବଶ୍ୟକତା ହିଁ ନଥିଲା । ମୋର ନିଜର ଦୁର୍ବଳତା ଥିଲା; ଯାହାର ସମର୍ଥନ ନିଜର ଏଇସବୁ ହିତୈଷୀ-

Digitized by srujanika@gmail.com

ମାନଙ୍କ ପାଖରୁ ଶୁଣି ମୁଁ ବାହାରକୁ ଯିବା ବ୍ୟଗ୍ର ଛାଡ଼ିଦେଲି । କାଶୀ ଯିବାପାଇଁ ସ୍ଥିର ହୋଇଥିଲି । ସେଠାରୁ କାର୍ ବି ଆସିଯାଇଥିଲା । (୧) ପ୍ରୟାଗ ରାଜାଙ୍କର ଅଯୋଧ୍ୟା, ମଥୁରା, ମାୟା, କାଶୀ କାଞ୍ଚି, ଅବନ୍ତିକା, ପୁରୀ, ଓ ଦ୍ୱାରାବତୀ—ଏ ସାତରାଣୀ ଅଟନ୍ତି । ସବୁଠାରୁ ନିକଟରେ ଥିବାରୁ କାଶୀ ତାଙ୍କର ପାଟରାଣୀ । ପିତା ଆତପତ୍ର ଅକ୍ଷୟବଟର ଛାୟା ଛାଡ଼ି ମୁଁ ମାଆ କୋଳକୁ ଯାଉଥିଲି । ପିତା କହିଲେ—"ତୋ ବଡ଼ ମାଆଙ୍କୁ ପଚାରି ନେ ।" କାଶୀ ଗଲି, ମା'ତ ବହୁତ ଆଦର କଲେ । କହିଲେ—"ପୁଅ, ଏଇଲେ ତୁ ପିତାଙ୍କ ପାଖକୁ ଫେରିଯାଅ ।" ରାତି ରାତି ସେଇ କାର୍‌ରେ ମୁଁ ଫେରି ଆସିଲି । ଚତୁର୍ଥୀ ଦିନ ତ୍ରିବେଣୀ ସ୍ନାନର ଆଶା ଛାଡ଼ି ଦେଇଥିଲି । କିନ୍ତୁ ଚଉଠ ଦିନ ପୁଣି ମୁଁ ତ୍ରିବେଣୀରେ ବୁଡ଼ ପକାଇଲି । ମୋର ଗୋଟିଏ ଗଳ୍ପ ମନେ ପଡ଼ିଲା । କାହାଣୀଟିକୁ ନ କହିଲେ ଭୂମିକା ପୂରଣ ହେବ କିପରି ?

ମଥୁରାର ବିଶ୍ରାମ ଘାଟ ତଳକୁ ଏବଂ ବଙ୍ଗାଳୀଘାଟର ଉପରକୁ ଗୋଟିଏ ଘାଟ ଅଛି, ଯେଉଁଠି କି କଦମ୍ବ ଗଛଟିଏ ଅଛି । ସେଇ ଘାଟକୁ ଚାରିଜଣ ଲୋକ ଆସୁଥିଲେ ଏବଂ ଭାଙ୍ଗ ଗୋଟକା ଖାଇ ଇଆଡ଼େ ସିଆଡ଼ର କଥା ଗପୁଥିଲେ । ସେମାନଙ୍କର ଡଙ୍ଗାଟିଏ ଥିଲା । କେବେ କେବେ ସେମାନେ ସେଇ ଡଙ୍ଗା ଭିତରେ ବସି ଭାଙ୍ଗ ବାଟୁଥିଲେ । ଡଙ୍ଗାଟି କଦମ୍ବ ଗଛରେ ବନ୍ଧାହୋଇ ରହୁଥିଲା । ଦିନେ ନୌକାରେ ବସି ଭାଙ୍ଗ ବାଟୁ ବାଟୁ ଜଣେ କହିଲା—"ଭାଇ, ମୋର ତ ଇଚ୍ଛା ହେଉଛି ପ୍ରୟାଗରାଜ ଯାଇ ତ୍ରିବେଣୀ ସ୍ନାନ କରନ୍ତି ।"

ଦ୍ୱିତୀୟ ଜଣକ କହିଲା—"ହଁ ଯାଇ ଗଲେ ତ ହୁଅନ୍ତା କିନ୍ତୁ ଯିବା କେମିତି ? ରେଲ୍‌ରେ ତ ବହୁତ ଭିଡ଼ । ତା'ଛଡ଼ା ସେଥିରେ ଆଉ ଭାଙ୍ଗ ଘୋଟିବାର ସୁବିଧା ମିଳିବନି ।"

ତୃତୀୟ ଜଣକ କହିଲା—"ସବୁଠାରୁ ଭଲହେବ ଚାଲ ଏଇ ଡଙ୍ଗାରେ ଯିବା । ଜଣେ ଅଧାଗଡ଼ାଣି ଆଉ ଜଣେ ଅନୁକୂଳ ମାରିବ । ଇଚ୍ଛା ଅନୁସାରେ ଯେଉଁଠି

(୧) ପୁର୍ଯ୍ୟଃ ସପ୍ତ ପ୍ରସିଦ୍ଧାଃ ପ୍ରତି ବଚନ କରତୀର୍ଥରାଜସ୍ୟ ନାର୍ଯ୍ୟୋଂ । ନୈକଟ୍ୟେନ ନାଥ ବୁଦ୍ଧ୍ୟାଃ ପ୍ରଭବତି ଚ ଗୁଣୈଃ କାଶତେ ବ୍ରହ୍ମ ଯସ୍ୟାମ୍ । ସେୟଂ ରାଜ୍ଞୀ ପ୍ରଧାନା ପ୍ରିୟ ବଚନକାରୀ ମୁକ୍ତିଦାନେ ନିଯୁକ୍ତା । ଯେନ ବ୍ରହ୍ମାଣ୍ଡ ମଧ୍ୟେ ସ ଜୟତି ସୁତରାଂ ତୀର୍ଥରାଜ ପ୍ରୟାଗଃ ॥

( ପ୍ରୟାଗ—ଗୀତାଧାମ୍ଭି )

Digitized by srujanika@gmail.com

ଇଚ୍ଛା ହେବ ତଙ୍ଗା ରଖି ଭାଙ୍ଗ ବଣ୍ଟା କାମ ହୋଇ ପାରିବ । କିନ୍ତୁ ସମସ୍ତ ବିଶ୍ରାମ ନେଇ ପୁଣି ଚାଲିବା । ବାଟରେ ତ ବହୁତ ଗାଁ ପଡ଼ିବ । ଦୁଧ ନେଇ ଆସି ସରବତ୍ କରିନେବା । ଏହା ଦ୍ୱାରା ଭାଙ୍ଗ ନିଶା ଛୁଟିଯିବ । 'କଦଳୀ ବିକା ଯାତରା ଦେଖା'— ସବୁ ଏକାଥରେ ହେବ ।"

ତା' କଥାକୁ ସମସ୍ତେ ସମର୍ଥନ କଲେ । ସର୍ବସମ୍ମତିକ୍ରମେ ଏହା ନିଷ୍ପତ୍ତି ନିଆଗଲା ଯେ ଆଜି ହିଁ ଯାତ୍ରା ଆରମ୍ଭ ହେବ । ଆଜି ଟିକେ ଅଧିକା ମାତ୍ରା ଆବଶ୍ୟକ ଯାହାଦ୍ୱାରା ନୌକା ଚଳେଇବାରେ କ୍ଳାନ୍ତି ଆସିବନି ।

ମନ୍ତ୍ର ପଢ଼ାଗଲା—

ଦାନ୍ତୁ ଦାସ୍ୟାଲ ବ୍ରଜକେ ରାଜା । ଭାଙ୍ଗ ପିନେ-ତୋ ସୁହାଁ ଆଜା । ଜାନେ ନା ଖୋଲି ହଙ୍ଗ କା କାଜା । ବାଂ ହୈର ତେ ହୈଙ୍ଗ ଭଲ ବଜୟା ଯୈସି ଗ୍ରୁନ୍ଟ୍ୟା, ମୈସେ ଗାଢ଼ୀ ଲାତ୍ ! ଘର କେ ସମଟେ ମରଗୟେ, ଆପ ନଶେ କା ବାତ୍ ॥ ସବେରେ ଫେର ଛନେଗୀ ଜି ।

ଏଇଭଳି କେତେଥର ମନ୍ତ୍ର ପଢ଼ି ଗାଢ଼ପଣା ସମସ୍ତେ ଢାଳେ ଲେଖା ଭାଙ୍ଗ ଟେକି ଦେଲେ । ତା'ପରେ ନିଶା ଛଡ଼େଇବା ପାଇଁ ସରବତ୍ ପିଇବାର ବି ଶେଷ କରିଦେଲେ । ସେତେବେଳକୁ ଆଖି ସବୁ ନିଶାରେ ଲାଲ ହୋଇ ଆସିଲାଣି । ସମସ୍ତେ ଏକାସାଥିରେ କହିଲେ—"ହଉ ଭାଇ ! ଏଥର ଚାଲିଯିବା ।" ଚାରିଜଣଯାକ ନୌକାରେ ବସିଗଲେ । ସେମାନେ ନିଶାରେ କଦମ୍ବ ଗଛରେ ବନ୍ଧା ହୋଇଥିବା ଦଉଡ଼ିକୁ ଖୋଲିବା ପାଇଁ ଭୁଲିଗଲେ । ତାଙ୍କ ଭିତରୁ ଜଣେ ମହାଶୟ କାତ ମାରିବା ବି ଆରମ୍ଭ କରିଦେଲେ । ଅନ୍ୟ ତିନିଜଣ ନିଶାରେ ଝୁଲିବାରେ ଲାଗିଲେ । ସେ ଜଣକ କ୍ଳାନ୍ତ ହୋଇଗଲା ପରେ ଆଉ ଜଣେ ଏବଂ ତା'ପରେ ଅନ୍ୟ ଜଣେ ଏହିପରି ସମସ୍ତେ ଥର ଥର କରି କାତ ମାରୁଥିଲେ । ସେମାନେ ମନେ ମନେ ହିଁ ଭାବି ନେଉଥିଲେ, ଏବେ ଗୋକୁଳ ଘାଟ ଆସିଲା, ଏବେ ଆମେ ମହାବାନରେ ପହଞ୍ଚି ଗଲୁଣି । ଏବେ ବ୍ରହ୍ମାଣ୍ଡ ଘାଟ ଆସିଲା, ଏବେ ଦାଉଜୀ ଘାଟ ଆସିଲା, ଏବେ ରେଣୁକା ଘାଟ ଆସିଲା, ଏବେ ଆଗ୍ରାରେ ପହଞ୍ଚି ଗଲୁଣି । ସେତେବେଳକୁ ସୂର୍ଯ୍ୟୋଦୟ ହୋଇଗଲା । ଲୋକମାନେ ଯମୁନା ସ୍ନାନପାଇଁ ଆସିବା ଆରମ୍ଭ କରିଦେଲେ କେତେ ଜଣ ପରିଚିତଙ୍କୁ ଦେଖି ସେମାନଙ୍କର ସନ୍ଦେହ ହେଲା । ଘର ଲୋକେ ମଧ୍ୟ ଆସିଗଲେ । ସେମାନେ ତାଙ୍କୁ ପଚାରିଲେ—"ତୁମେ ସବୁ ଏଠାକୁ କେଉଁଥିରେ ଆସିଲ ?" ଏଭଳି ପ୍ରଶ୍ନ ଶୁଣି ଲୋକଙ୍କର ମଧ୍ୟ ସନ୍ଦେହ ହେଲା । ସେମାନଙ୍କ ଭିତରୁ ଜଣେ ପଚାରିଲା— "ତୁମେ ଏଠି କାତ କାହିଁକି ମାରୁଛ ? ରାତିରେ ଟିକେ ମାତ୍ରା ବେଶି ପଡ଼ିଯାଇଛି କି ?"

Digitized by srujanika@gmail.com

ସେମାନଙ୍କ ଭିତରୁ ଜଣେ ଉତ୍ତର ଦେଲା—"ଆମେ ତ ପ୍ରୟାଗରାଜ ଯାଉଛୁ ; ଅଧାବାଟ ତ ସରିଗଲାଣି, ଆଉ ଅଧିକ ସରିଲେ ଆମେ ପହଞ୍ଚିଯିବୁ ।"

ସେମାନେ ନିଜର ହସ ସମ୍ଭାଳି କହିଲେ—"ଆଉ ପହଞ୍ଚିବ କେମିତି ଭାଇ ! ଏଇ କଦମ୍ବ ଗଛରେ ବନ୍ଧା ହୋଇଥିବା ଦଉଡ଼ିକୁ ତ ତୁମେ ଖୋଲି ନାହଁ । ଯାହାକୁ ଯେତେବେଳଯାଏ ନ ଖୋଲିବ ଯେତେ ଚେଷ୍ଟା କଲେ ବି ହାତଗୋଡ଼ ବାଡ଼େଇଲେ ବି ଆଗକୁ ଟିକେ ସୁଦ୍ଧା ଯାଇ ପାରିବ ନାହିଁ ।" ଏବେ ଯାଇ ସେମାନଙ୍କର ନିଜ ଭୁଲ ବିଷୟରେ ଜ୍ଞାନ ଆସିଲା ।

ଆମେ ବି ଗୁରୁଜଣ ଦ୍ୱାରକା ଯାଉଥିଲୁ । ତିନି ଚାରି ମାସ ଆଗରୁ ମୁଁ ଯୋଜନା କରୁଥିଲି, ଅନେକ କଳ୍ପନା ସବୁ କରିଯାଇଥିଲି । ଏହାର ପରିମାଣ କିଛି ହେଲାନାହିଁ । ଯେଉଁଠି ଥିଲି ସେଇଠି ହିଁ ରହିଗଲି । ଏହାକୁ ମୋର ମୋହ କୁହାଯିବ, ରାଗ କୁହାଯିବ, ତ୍ୟାଗ-ବୈରାଗ୍ୟର ନ୍ୟୂନତା ମଧ୍ୟ କୁହାଯିବ । ପୁସ୍ତକ ପ୍ରକାଶନ ପାଇଁ ଆସକ୍ତି କୁହାଯିବ, ଅସୁବିଧାର ଭୟ କୁହାଯିବ—ଏହାର ନିର୍ଣ୍ଣୟ ମୁଁ ତ କରିପାରିଲି ନାହିଁ, ପାଠକମାନେ ସେମାନଙ୍କ ଦୃଷ୍ଟିକୋଣରୁ ବିଚାର କରିବେ ; ଏଥର ସିଦ୍ଧାନ୍ତ କଲି ଯେ ତ୍ରିବେଣୀ ସ୍ନାନ ସାରିବା ପରେ ସିଧା କୁଟୀରକୁ ହିଁ ଚାଲିଯିବି । ପ୍ରବଚନ ସମୟରେ ପ୍ରାୟ ତିନିଟା-ଚାରିଟା ବେଳକୁ ବାହାରିବି । ସେତିକିବେଳେ ଅପେକ୍ଷା କରୁଥିବା ଲୋକଙ୍କ ସହ ଦେଖା କରିବି । ପୁଣି କୀର୍ତ୍ତନ ପରେ କୁଟୀର ଭିତରେ ହିଁ ପଶିବି । ଏଥିରେ କେବେ କେବେ ମହାପୁରୁଷଙ୍କର, ଭଗବାନଙ୍କର ଅପଚାର ହୋଇଯାଏ, ଜୟ ବିଜୟ, କାକଭୁଷୁଣ୍ଡି, ଇନ୍ଦ୍ରଦ୍ୟୁମ୍ନ ପ୍ରଭୃତିଙ୍କ ପରି ଅପରାଧ ହୋଇଯାଇଥାଏ, କିନ୍ତୁ କ'ଣ କରିବି, ସେ ହିଁ ତ ସବୁ କରାଉଛନ୍ତି, ତାଙ୍କର କାମ ତ କରିବାପାଇଁ ହେବ । କାହାରିକୁ ଅପମାନ ଦେବା ବା କାହାକୁ କଷ୍ଟ ଦେବାର ଉଦ୍ଦେଶ୍ୟ ତ ଆଦୌ ନାହିଁ । ତେଣୁ ହେ ସର୍ବଅନ୍ତର୍ଯାମୀ ପ୍ରଭୁ ! ଆପଣ ମୋର ପରୀକ୍ଷା ନେବାକୁ ଆସନ୍ତୁ ନାହିଁ । ପରୀକ୍ଷାରେ ତ ମୁଁ ଉତ୍ତୀର୍ଣ୍ଣ ହୋଇପାରିବି ନାହିଁ । ଏମିତି କୌଣସି ବଶିଷ୍ଟ ରୂପରେ ଆପଣ ଆସିଲେ ମୋର ଅନ୍ତଃକରଣରେ ଆପଣ ପ୍ରେରଣା ଭରି କରି ଦିଅନ୍ତୁ ଯେପରିକି ମୁଁ ବାହାରକୁ ଆସି ଆପଣଙ୍କର ସ୍ୱାଗତ ସତ୍କାର କରିବି । ଏବେ ଦେଖିବା ପ୍ରଭୁ ମୋତେ କେତେଦିନ ଯାଏ ଏଠି ରଖୁଛନ୍ତି, କେତେଦିନ ଯାଏ ମୋ ଦ୍ୱାରା କିଛି ଲେଖଉଛନ୍ତି । ଏବେ ତ ଆହୁରି ପ୍ରାୟ ଅଧା ଲେଖିବାକୁ ଅଛି । ପ୍ରଥମେ ତ ୫୦-୬୦ ଖଣ୍ଡରେ ହିଁ ଏହା ସମାପ୍ତ ହୋଇଯିବ ବୋଲି ଆଶା କରୁଥିଲି । ପୁଣି ୧୦୮ ପାଇଁ ପ୍ରେରଣା ମିଳିଲା । ବର୍ତ୍ତମାନ କ'ଣ ହେବ ସେ ହିଁ ଜାଣନ୍ତି ! ମୋର ଯେଉଁ ପତନ ହୋଇଛି, ହେଉଛି, ତାହା

Digitized by srujanika@gmail.com

ମୋର ନିଜ ଦୋଷରୁ, ନିଜ ଅସାବଧାନତାରୁ, ତ୍ୟାଗ-ବୈରାଗ୍ୟର ନ୍ୟୂନତାରୁ; କିନ୍ତୁ ତା'ର ଦାୟିତ୍ୱ ସେ ନିଜ ଉପରକୁ ନେଲେ ମୁଁ ତା'ର ପରିଣାମରୁ ମୁକ୍ତ ହୋଇଯାଏନ୍ତି ।

ହଉ ତେବେ ପ୍ରଣାମ !

## ନିପ୍‌ପତ୍ତି

କହୁଁ ରଖୋ ରମେଶ ! ଚାହେଁ କଛୁ କାଜ କରାଓ ।
ଭେଜୋ ପୁର ବୈକୁଣ୍ଠ, ନରକ ମହଁ ଚାହେଁ ପଠାଓ ।।
ତୀରଥରାଜ ପ୍ରୟାଗ ବସାଓ, ମଗଧ ଭଗାଓ ।
ଖୁଦ୍‌ବାଓ ଯ୍ୟା ଘାସ, ଚାହେଁ ନିଜ ଚରିତ ଲଖାଓ ।।
ଯହାଁ ରଖୋ ଯୈସେ ରଖୋ, ଭଲୌ କହେ ଜଗ ବା ହଁସୈ ।
ରସନା ଗୁନ ଗାବୈ କଥା, କାନ ସୁନୈ, ହିୟ ଛବି ବସୈ ।।

ସଂକୀର୍ତ୍ତନ ଭବନ, ପ୍ରତିଷ୍ଠାନପୁର (ପ୍ରୟାଗ)
ବୈଶାଖ ଶୁକ୍ଳ ଶ୍ରୀ ଜାନକୀ ନବମୀ
୨୦୦୭ ବି.

ତୁମର ଯେପରି ସେପରି ଥିବା
ପ୍ରଭୁଦତ୍ତ



Digitized by srujanika@gmail.com

# ବିଶ୍ୱାମିତ୍ର ଚରିତ

"ଗାଧେରଭୂନ୍ମହାତେଜାଃ ସମିଦ୍ଧ ଇବ ପାବକଃ ।
ତପସା କ୍ଷାତ୍ରମୁତ୍ସୃଜ୍ୟ ଯୋ ଲେଭେ ବ୍ରହ୍ମବର୍ଚସମ୍ ॥

(ଶ୍ରୀ ଭା-୯-୧୬-୨୮ ଶ୍ଳୋ)

## ଛପ୍ପୟ

ସତ୍ୟବତୀ କ ମାତୁ ବ୍ରହ୍ମମନ୍ତ୍ରିଣି ଚରୁ ଖାୟୋ ।
ତାତେଁ ଦ୍ୱିଜ-ଗୁଣ ଯୁକ୍ତ ପରମ ଜ୍ଞାନୀ ସୁତ ଜାୟୋ ॥
ସୋ ଇ ବିଶ୍ୱାମିତ୍ର, କରୟୋ ଜିନ ତପ ଅତି ଦୁଷ୍କର ।
ଛତ୍ର-ଫିର ଧରି ପୈର ଭୟୋ ଋଷିୟୁ ତେ ଦ୍ୱିଜବର ॥
ବିଶ୍ୱାମିତ୍ର ବଶିଷ୍ଠ ମହଁ, ଲଗ-ତଣ୍ଟୁ ଅତିଶୟ ଭଇ ।
କାମଧେନୁ-ହିତ ଉଭୟ ବିଚ, ଗୁତ୍ଥମ୍ ଗୁତ୍ଥା ହ୍ୱୈ ଗୟୀ ॥

ଅଧ୍ୟବସାୟୀ ପ୍ରକୃତ ପରିଶ୍ରମୀ ବ୍ୟକ୍ତି ପାଖରେ ସଂସାରରେ ଅସମ୍ଭବ ବୋଲି କିଛି ନାହିଁ । ସେ ନିଜ ସଙ୍କଳ୍ପରେ ଦୃଢ଼, ସେ କାହାକୁ ଭୟ କରେ ନାହିଁ, ବିପଦ ବେଳେ ସେ ବିବ୍ରତ ହୁଏ ନାହିଁ, ବିଘ୍ନ ଆସିବା ଦ୍ୱାରା ନିରାଶ ନିରୁତ୍ସାହ ହୁଏ ନାହିଁ, କାର୍ଯ୍ୟ ସିଦ୍ଧି ନ ହେଲେ ହତୋତ୍ସାହ ହୁଏ ନାହିଁ ସେ ନିଜର କାର୍ଯ୍ୟର ପୂର୍ଣ୍ଣତା ପାଇଁ ଉଦ୍ୟୋଗରୁ ପରାଙ୍ମୁଖ ହୁଏ ନାହିଁ ସଫଳତା ତା'ର ନିଶ୍ଚିତ ହୋଇଯାଏ, ବିଜୟ ତା'ର ପାଦ ପାଖରେ ପହଞ୍ଚିଯାଏ । ସେ କେବେହେଲେ ଅସଫଳ ହୁଏ ନାହିଁ । ଉଦ୍ୟୋଗୀ-ପୁରୁଷ-ସିଂହଙ୍କୁ ହିଁ ବିଜୟ ଶ୍ରୀ ବରଣ କରିଥାଏ ।

---

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ମହାରାଜ ଗାଧିଙ୍କର ପରମ ତେଜସ୍ୱୀ ବିଶ୍ୱାମିତ୍ର ଉତ୍ପନ୍ନ ହେଲେ, ଯାହାଙ୍କର ତେଜ ପ୍ରଜ୍ୱଳିତ ଅଗ୍ନି ସମ ଥିଲା, ସିଏ ନିଜର ତପୋବଳ ଦ୍ୱାରା କ୍ଷତ୍ରିୟତ୍ୱ ତ୍ୟାଗକରି ବ୍ରାହ୍ମଣ ହୋଇଗଲେ ।"

Digitized by srujanika@gmail.com

ସୂତ କହୁଛନ୍ତି—ମୁନିମାନେ ! ବର୍ତ୍ତମାନ ମୁଁ ଆପଣଙ୍କୁ ଗାଧି ନନ୍ଦନ ବିଶ୍ୱାମିତ୍ରଙ୍କ ଚରିତ କହୁଛି । ମହାରାଜ ଗାଧିଙ୍କର କନ୍ୟା, ମହର୍ଷି ଋଚିକଙ୍କର ପତ୍ନୀ, ସତ୍ୟବତୀ ନିଜ ମାତାଙ୍କର ଆଗ୍ରହ ଫଳରେ ମନ୍ତ୍ର ଦ୍ୱାରା ଅଭିମନ୍ତ୍ରିତ ନିଜର ବ୍ରହ୍ମ-ତେଜୋମୟ ଚରୁ ନିଜ ମାତାଙ୍କୁ ଦେଇଦେଲେ ଏବଂ ମାତାଙ୍କର କ୍ଷାତ୍ରତେଜ-ଯୁକ୍ତ ଚରୁ ନିଜେ ଗ୍ରହଣ କଲେ । ଏହାଦ୍ୱାରା ତାଙ୍କର ପୌତ୍ର ପର୍ଶୁରାମ କ୍ଷତ୍ରିୟସ୍ୱଭାବଯୁକ୍ତ କ୍ରୂରକର୍ମା ହେଲେ । ଏବେ ଆପଣମାନେ ତାଙ୍କର ମାତାଙ୍କର ବୃତ୍ତାନ୍ତ ଶୁଣନ୍ତୁ ।

ନିଜ କନ୍ୟାର ଚରୁ ଗ୍ରହଣ କରି ଗାଧିପତ୍ନୀ ଗର୍ଭଧାରଣ କଲେ । ଉପଯୁକ୍ତ ସମୟରେ ତାଙ୍କର ଅଗ୍ନିସମ ଉଜ୍ଜ୍ୱଳ ପରମ ତେଜସ୍ୱୀ ଏକ ପୁତ୍ର ସନ୍ତାନ ଜାତହେଲା । ପିତା ତାଙ୍କର ନାମ ବିଶ୍ୱାମିତ୍ର ରଖିଲେ । ରାଜକୁମାର ବିଶ୍ୱାମିତ୍ର ଶୁକ୍ଳପକ୍ଷ ଚନ୍ଦ୍ର ପରି ପିତାମାତା ତଥା ଅନ୍ୟ ସମସ୍ତଙ୍କୁ ଆନନ୍ଦିତ କରି ବଢ଼ିବାରେ ଲାଗିଲେ । କିଛି କାଳପରେ ସେ ବୟସ୍କ ହେବାରେ ପିତା ତାଙ୍କର ରାଜ୍ୟାଭିଷେକ କରିଦେଲେ । ରାଜା ହେବାପରେ ବିଶ୍ୱାମିତ୍ର ଅନେକ ସମୟ ଯାଏଁ ଧର୍ମପୂର୍ବକ ପୃଥିବୀ ପାଳନ କରିବାରେ ଲାଗିଲେ ।

ଏକଦା ସେ ଚତୁରଙ୍ଗ ସେନା ଏକତ୍ରିତ କରି ଦିଗ୍‌ବିଜୟ କରିବାପାଇଁ ପ୍ରସ୍ଥାନ କଲେ । ସେ ଅନେକ ସ୍ଥାନ ଭ୍ରମଣ କଲେ । ଭ୍ରମଣ ସମୟରେ ସେ ଏକଦା ମହର୍ଷି ବଶିଷ୍ଠଙ୍କର ଆଶ୍ରମରେ ପହଞ୍ଚିଲେ । ଭଗବାନ ବଶିଷ୍ଠଙ୍କର ଆଶ୍ରମ ବ୍ରାହ୍ମି ସମ୍ପଦରେ ସମ୍ପନ୍ନ ଥିଲା । ସ୍ଥାନେ ସ୍ଥାନେ ଦେବତାମାନଙ୍କର ବେଦୀ ଥିଲା । ବିଭିନ୍ନପ୍ରକାରର ଅଗ୍ନି କୁଣ୍ଡମାନଙ୍କରେ ପ୍ରଜ୍ୱଳିତ ହେଉଥିଲା । ଫୁଲ ଫଳରେ ଭରପୁର ବୃକ୍ଷଲତାରେ ଏହାର ଶୋଭା ଅନୁପମ ପ୍ରତୀୟମାନ ହେଉଥିଲା । ଲତାକୁଞ୍ଜ ଭିତରେ ବର୍ଣ୍ଣ ମୃଗ ଶିଶୁମାନେ ପରସ୍ପର ସହ କ୍ରୀଡ଼ାରତ ଥିଲେ । ସିଦ୍ଧ, ଚାରଣ, ଦେବ, ଦାନବ, ଗନ୍ଧର୍ବ, କିନ୍ନର, ଆଦି ଦେବ ଉପଦେବଙ୍କର ନିରନ୍ତର ଆଗମନ-ପ୍ରସ୍ଥାନ ହେଉଥିଲା । କନ୍ଦମୂଳ ଓ ଫଳ ଖାଉଥିବା ବ୍ୟକ୍ତି; ଯମ, ନିୟମ, ପ୍ରାଣାୟମ, ଆସନ ଇତ୍ୟାଦି ଅଭ୍ୟାସ କରୁଥିବା ବ୍ୟକ୍ତି, ଶାନ୍ତ-ଦାନ୍ତ ତପସ୍ୱୀ ସେ ଆଶ୍ରମରେ ପ୍ରାୟ ଅଧିକାଂଶ ଅନ୍ତେବାସୀ ଥିଲେ । ସେମାନଙ୍କ ଭିତରୁ କେହି ଫଳାହାରୀ, କେହି ଜଳାହାରୀ ତ କେହି ବାୟୁ ଆହରଣ କରି ତଥା କେହି କେହି ଶୁଖିଲା ପତ୍ରଖାଇ ତପସ୍ୟାରତ ଥିଲେ । ଏତେକି ସେ ଆଶ୍ରମର ପଶୁପକ୍ଷୀ ମଧ୍ୟ ପରସ୍ପର ମଧ୍ୟରେ ସ୍ୱାଭାବିକ ଶତ୍ରୁତା ତ୍ୟାଗକରି ବନ୍ଧୁଭାବରେ ରହୁଥିଲେ ।

ସେହି ଉତ୍ତମ ଆଶ୍ରମକୁ ଦେଖି ରାଜା ବିଶ୍ୱାମିତ୍ର ପରମ ଆନନ୍ଦ ଲାଭ କଲେ । ସେ ମହର୍ଷି ବଶିଷ୍ଠଙ୍କର ପାଦପଦ୍ମରେ ଅତ୍ୟନ୍ତ ଶ୍ରଦ୍ଧା ସହିତ ପ୍ରଣାମ କଲେ । ନିଜ

Digitized by srujanika@gmail.com

ଆଶ୍ରମରେ ଗାଧି-ପୁତ୍ର ବିଶ୍ୱାମିତ୍ରଙ୍କର ଆଗମନ ଦେଖି ବ୍ରହ୍ମ-ପୁତ୍ର ବଶିଷ୍ଠ ଅତ୍ୟନ୍ତ ଆନନ୍ଦିତ ହେଲେ । ଫଳ, କନ୍ଦ, ମୂଳ ସହିତ ଅନ୍ୟାନ୍ୟ ସ୍ୱାଦିଷ୍ଟ ଫଳ ରାଜାଙ୍କୁ ଦେଇ ସେ ତାଙ୍କର ସ୍ୱାଗତ ସତ୍କାର କଲେ । ଶାସ୍ତ୍ରୀୟ ବିଧିମତେ ତାଙ୍କୁ ଅର୍ଘ୍ୟ ଦେଲେ ।

ମୁନି ରାଜାଙ୍କୁ ତାଙ୍କର ରାଜ୍ୟ, ପାରିଷଦ, ପରିବାର ମନ୍ତ୍ରୀ ତଥା ଅନ୍ୟ ସମସ୍ତଙ୍କ ବିଷୟରେ କୁଶଳ ପ୍ରଶ୍ନ କଲେ । ରାଜା ମଧ୍ୟ ମୁନିଙ୍କ ଆଶ୍ରମର ବୃକ୍ଷଲତା, ପଶୁପକ୍ଷୀ, ଅଗ୍ନି, ତପସ୍ୱୀ ତଥା ଅନ୍ୟ ସମସ୍ତ ଆଶ୍ରମବାସୀଙ୍କ ବିଷୟରେ କୁଶଳ ପ୍ରଶ୍ନ କଲେ । ଏହାପରେ ମୁନି ହସି ହସି କହିଲେ—"ରାଜନ୍ ! ସଂସାରରେ ସବୁ କିଛି ସହଜରେ ମିଳିଯିବ କିନ୍ତୁ ଉତ୍ତମ ଅତିଥିମାନଙ୍କର ପ୍ରାପ୍ତି ଅତ୍ୟନ୍ତ ସୌଭାଗ୍ୟ-ଯୋଗେ ହିଁ ହୁଏ । ସେ ଆଶ୍ରମ ଧନ୍ୟ ଯେଉଁଠି ଅତିଥିମାନଙ୍କର ନିରନ୍ତର ସ୍ୱାଗତ ସତ୍କାର ହୁଏ ଏବଂ ଯେଉଁଠି ଶ୍ରେଷ୍ଠପୁରୁଷଗଣ ଆତିଥ୍ୟ ଗ୍ରହଣ କରନ୍ତି । ଆପଣଙ୍କ ପରି ଅତିଥି ପାଇଁ ମୁଁ ଆଜି ଅତ୍ୟନ୍ତ ଆନନ୍ଦିତ ।"

ବିଶ୍ୱାମିତ୍ର କହିଲେ—"ଭଗବାନ୍ ! ମୁଁ ତ ଆପଣଙ୍କ ସେବକ ମାତ୍ର । ଆପଣଙ୍କ ଦର୍ଶନ ନିମିତ୍ତ ଏଠାକୁ ଚାଲି ଆସିଲି । ବର୍ତ୍ତମାନ ମୋତେ ଯିବାପାଇଁ ଅନୁମତି ଦିଅନ୍ତୁ ।"

ଏହାଶୁଣି ବଶିଷ୍ଠ କହିଲେ—"ନା ନା ରାଜା ବିଶ୍ୱାମିତ୍ର ! ଆପଣ ତଥା ଆପଣଙ୍କ ସାଥିମାନେ ମୋର ଆତିଥ୍ୟ ସ୍ୱୀକାର କରି ମୋତେ ଧନ୍ୟ କରନ୍ତୁ । ମୋର ଏକାନ୍ତ ଇଚ୍ଛା ମୁଁ ଆପଣମାନଙ୍କର ସ୍ୱାଗତ ସତ୍କାର ସୁଚାରୁରୂପେ କରେ ।"

ନମ୍ରତା ସହକାରେ ବିଶ୍ୱାମିତ୍ର କହିଲେ—"ଭଗବାନ ! ଆପଣ ଏପରି କହିବା ଆଦୌ ସମୀଚିନ ନୁହେଁ । ଆମେ କ୍ଷତ୍ରିୟ ତ ଆପଣଙ୍କ ପାଦଧୂଳିର ମଧ୍ୟ ସମକକ୍ଷ ନୁହଁ । ତଥାପି ଆପଣ ଆମର ଯଥେଷ୍ଟ ସତ୍କାର କଲେଣି । ଆପଣଙ୍କ ଆଶ୍ରମର ଫଳ, ଫୁଲ, ମୂଳ, ଜଳ ସବୁ କିଛି ଅତ୍ୟନ୍ତ ସ୍ୱାଦିଷ୍ଟ । ସବୁଠାରୁ ମଧୁର ଆପଣଙ୍କର ବିନୟ ମଧୁର ବଚନ । ଏ ସବୁଦେଇ ଆମର ଯଥେଷ୍ଟ ସତ୍କାର କଲେଣି । ଆପଣଙ୍କର କୃପା ଏହିପରି ଆମ ଉପରେ ଥାଉ । ଆମେ ଆପଣଙ୍କର ଅନୁଗ୍ରହ ପାଇଁ ଚିରକୃତଜ୍ଞ ।"

ମହର୍ଷି ବଶିଷ୍ଠ ଶିଷ୍ଟତାପୂର୍ବକ କହିଲେ—"ହେ ରାଜା ! ଆପଣ ତ ଭଗବାନଙ୍କର ଅଂଶାବତାର । ଆତ ଲୋକପାଳ ରାଜାଙ୍କ ଶରୀରରେ ବାସ କରନ୍ତି । ଆପଣ ତଥା ଆପଣଙ୍କର ସମସ୍ତ ସାଥୀ ସହଚର ଆପଣଙ୍କର ଯୋଗ୍ୟତା ଅନୁରୂପ ସ୍ୱାଗତ-ସତ୍କାର କରିବାପାଇଁ ମୁଁ ଇଚ୍ଛୁକ । ଆପଣ ମୋର ନିମନ୍ତ୍ରଣ ଗ୍ରହଣ କରନ୍ତୁ ।"

Digitized by srujanika@gmail.com

ବିଶ୍ୱାମିତ୍ର ମଧ୍ୟ ନମ୍ରତା ସହକାରେ ଉତ୍ତର ଦେଲେ—"ଭଗବାନ ! ମୋତେ ଆଉ କେତେବାର ପ୍ରଶ୍ନ କାହିଁକି ପଚାରୁଛନ୍ତି ? ଆମେ ତ ସବୁବେଳେ ଆପଣଙ୍କର ଦତ୍ତ ଖାଦ୍ୟ ଖାଉଛୁ । ତାହା ଏଠାରେ ହେଉ ଅବା ନଗରରେ ହେଉ । ମୁଁ ଭାବୁଛି ମୋ ସହିତ ଏତେବଡ଼ ସେନାବାହିନୀ ଅଛି । ତେଣୁ ସମସ୍ତ ଖାଦ୍ୟ ସଂଗ୍ରହ ପାଇଁ ଆଶ୍ରମର ମହାତ୍ମାମାନଙ୍କୁ ବହୁତ କଷ୍ଟ ହେବ ।"

ମହର୍ଷି ବଶିଷ୍ଠ କହିଲେ—"ହେ ରାଜା ! ଆପଣ ସେ ବିଷୟରେ ଆଦୌ ଚିନ୍ତା କରନ୍ତୁ ନାହିଁ । ଅତିଥି ସେବାରେ କେବେହେଲେ କଷ୍ଟ ହୁଏ ନାହିଁ । ପୁଣି ଆପଣଙ୍କ ପରି ଅତିଥି ! ଏଥିରେ ବରଂ ଆମମାନଙ୍କୁ ଅଧିକ ଆନନ୍ଦ ମିଳିବ । ଆପଣ ଆଦୌ ସଙ୍କୋଚ କରନ୍ତୁ ନାହିଁ ।"

ବିଶ୍ୱାମିତ୍ର କହିଲେ—"ମହାତ୍ମନ୍ ! ଆପଣ ସର୍ବସମର୍ଥ । ମୁଁ ବା କ'ଣ କହିବି ? ଆପଣଙ୍କର ଯେପରି ଇଚ୍ଛା ହେଉଛି ସେପରି କରନ୍ତୁ । ଆପଣଙ୍କ ଆଜ୍ଞାକୁ ତ ମୁଁ ଲଙ୍ଘନ କରିପାରିବି ନାହିଁ ।"

ଏହା ଶୁଣି ବଶିଷ୍ଠ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ନିଜ କାମଧେନୁକୁ ଡାକି କହିଲେ—"ହେ ଶବଳା ! ତୁମେ ମୋର ଅତ୍ୟନ୍ତ ଶ୍ରେଷ୍ଠ ଅତିଥି ବିଶ୍ୱାମିତ୍ରଙ୍କର ଓ ତାଙ୍କର ସମସ୍ତ ସାଥୀଙ୍କର ଉତ୍ତମ ପ୍ରକାର ସ୍ୱାଗତ-ସତ୍କାର କର । ସେମାନଙ୍କର ମନ ସନ୍ତୋଷ ପାଇଁ ପୃଥିବୀରେ ଥିବା ସକଳ ଆବଶ୍ୟକୀୟ ପଦାର୍ଥ ଯୋଗାଡ଼ କର ।"

ଏହା ଶୁଣି କାମଧେନୁର କନ୍ୟା ନନ୍ଦିନୀ ସମସ୍ତ ଖାଦ୍ୟ ପଦାର୍ଥ ସୃଷ୍ଟି କଲା । ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ, ଚୋଷ୍ୟ, ପେୟ ତଥା ଚର୍ବଣ କରିବା ନିମିତ୍ତ ଯେତେ-ପ୍ରକାରର ଖଟା, ମିଠା, କଷା, ରାଗ, ତଥା ଲୁଣି ଏହିପରି ଷଡ଼ରସ ବିଶିଷ୍ଟ ଖାଦ୍ୟ-ପଦାର୍ଥ ସବୁ ସୃଷ୍ଟି କଲା । କାମଧେନୁର କୃପାରୁ ସେଠାରେ ଗରମ ଗରମ ଭାତ ପାହାଡ଼ ପରି ଜମା ହୋଇଗଲା ଯେଉଁଥିରୁ କି ବାମ୍ଫ ବାହାରୁଥିଲା । ହଣ୍ଡା ହଣ୍ଡା ଡାଲି ଥୁଆ ହୋଇଗଲା । ଦୁଧ, ଦହିର ନଦୀ ସୃଷ୍ଟି ହେଲା । ଖିରି, ରାବିଡ଼ି ତଥା ମହନଭୋଗ କୁଣ୍ଡ କୁଣ୍ଡ ହୋଇ ଜମା ହୋଇଗଲେ । ଲଡ଼ୁ, ପେଡ଼ା, ଜଲେବି, ବରଫି, ରସଗୋଲା, ଗୋଲାପଜାମୁ, ଲବଙ୍ଗଲତା, କାଲାକନ୍ଦ, ଛେନାଗଜା, ବୁନ୍ଦି, ମିଠେଇ ଇତ୍ୟାଦି ନାନା ପ୍ରକାରର ଖାଦ୍ୟବସ୍ତୁ ସେଠାରେ ବହୁ ପରିମାଣରେ ସଜା ହୋଇ ରହିଗଲା । ସେ ସମସ୍ତ ପଦାର୍ଥକୁ ବଡ଼ ବଡ଼ ଥାଳିରେ ସଜାଇ ଦେବାଙ୍ଗନାମାନେ ପରିବେଷଣ କରିଥିଲେ । ବିଶ୍ୱାମିତ୍ର ମୁନିଙ୍କର ଏଇ ଭବ୍ୟ ସ୍ୱାଗତ-ସତ୍କାରରେ ବିଶ୍ୱାମିତ୍ର ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ସୈନିକଗଣ ଆତ୍ମତୃପ୍ତି ପର୍ଯ୍ୟନ୍ତ ଭୋଜନ କଲେ ତଥା ପାନୀୟର ସଦ୍‌ବ୍ୟବହାର କଲେ । ରାଜାଙ୍କର ସାଥୀମାନଙ୍କ ଭିତରୁ ଏପରି କେହି ଜଣେ ନଥିଲା

Digitized by srujanika@gmail.com

କି ଯାହାର ମନ ସେତେ ସନ୍ତୁଷ୍ଟ ହୋଇ ନଥିଲା । ଯେ ଯେଉଁ ବସ୍ତୁ ଚାହିଁଲା, ମାଗିବା ଆଗରୁ ହିଁ ସେ ବସ୍ତୁ ତା'ର ହସ୍ତଗତ ହେଉଥିଲା । ରାଜା ବିଶ୍ୱାମିତ୍ର ମୁନିଙ୍କର ଏହି ସିଦ୍ଧି ତଥା କାମଧେନୁର ଏ ପ୍ରକାର ସାମର୍ଥ୍ୟ ଦେଖି ମୁଗ୍‌ଧ ହୋଇ ଯାଇଥିଲେ ।

ସମସ୍ତେ ଖାଇବା ପରେ ବିଶ୍ରାମ ନେଉଥିବାବେଳେ ବିଶ୍ୱାମିତ୍ର ବଶିଷ୍ଠଙ୍କ ନିକଟକୁ ଗଲେ ଏବଂ କହିଲେ—"ଭଗବାନ ! ଆପଣ ମୋର ଅତ୍ୟନ୍ତ ସୁନ୍ଦର ସତ୍କାର କଲେ । ମୋର ସମସ୍ତ ସାଥୀ ଆପଣଙ୍କର ସ୍ୱାଗତ ସତ୍କାରରେ ସନ୍ତୁଷ୍ଟ । ବର୍ତ୍ତମାନ ମୁଁ ଗୋଟିଏ ଅନୁରୋଧ କରିବି । ଆପଣ ମୋତେ ଆପଣଙ୍କ କାମଧେନୁକୁ ଦେଇ ଦିଅନ୍ତୁ ।"

ନମ୍ର ଅଥଚ ତୀକ୍ଷ୍ଣ ସ୍ୱରରେ ମୁନି ଉତ୍ତର ଦେଲେ–"ହେ ରାଜା ! ମୁଁ ଏହାକୁ କାହାରିକୁ ଦେଇ ପାରିବି ନାହିଁ ।"

ବିଶ୍ୱାମିତ୍ର କହିଲେ—"କାହିଁକି ମହାରାଜ ?"

ମହର୍ଷି ଉତ୍ତର ଦେଲେ—"କାରଣ ଏହାର ସାହାଯ୍ୟରେ ମୋର ସମସ୍ତ ଇହଲୌକିକ ତଥା ପରଲୌକିକ କାର୍ଯ୍ୟମାନ ହେଉଛି ।"

ରାଜା କହିଲେ—"ଠିକ୍ ଅଛି, ସେଥିପାଇଁ ମୁଁ ଆପଣଙ୍କୁ ଏକ ସହସ୍ର ଗାଈ ଦେବି ।"

ମୁନି କହିଲେ—"ସେ ସବୁ ଆପଣ ଆପଣଙ୍କ ପାଖରେ ରଖନ୍ତୁ । ମୋର ସେ ସବୁ ଗାଈ ଆବଶ୍ୟକ ନାହିଁ ।"

ରାଜା କହିଲେ—ଠିକ୍ ଅଛି, ମୁଁ ଆପଣଙ୍କୁ କୋଟିଏ ଗାଈ ଦାନ କରିବି । ସବୁ ଗାଈ ଦୁହାଳିଆ ତଥା ସମସ୍ତଙ୍କର ଶିଙ୍ଗରେ ସୁନା ଲାଗିଥିବ !"

ମୁନି ଦୃଢ଼ତା ସହକାରେ କହିଲେ—"ମୋର ଏକମାତ୍ର କାମଧେନୁ ଆବଶ୍ୟକ, ସହସ୍ର କୋଟି ଗାଈ ନୁହେଁ ।"

ରାଜା କହିଲେ—"ପ୍ରଭୁ ! ମୁଁ ଗାଈ ସହିତ ଆପଣଙ୍କୁ ସୁବର୍ଣ୍ଣ ଘଣ୍ଟି ଥିବା ରଥ ମଧ୍ୟ ଦେବି । ଉତ୍ତମ ଜାତିର ଅଶ୍ୱ ମଧ୍ୟ ଦେବି । ଆପଣ ମୋତେ ଏ ଧେନୁ ଦେଇ ଦିଅନ୍ତୁ ।"

ମୁନି କହିଲେ—"ହେ ରାଜା ! ମୋର ତ ସେନାବଳ ଏକାଠି କରିବାର ନାହିଁ । କାହା ଉପରେ ଚଢ଼ିବାର ଇଚ୍ଛା ବି ନାହିଁ । ମୁଁ ରଥ, ଅଶ୍ୱ ନେଇ କ'ଣ ବା କରିବି ? ମୋର ଏଇ କାମଧେନୁ ହିଁ ଯଥେଷ୍ଟ ।"

Digitized by srujanika@gmail.com

ରାଜା କହିଲେ—"ହେ ପ୍ରଭୁ ! ଏ'ତ ଏକ ରତ୍ନ, ଏହାର ଅଧିକାରୀ ମୁଁ । ଆପଣ ଯଦି ଆନନ୍ଦରେ ସହିତ ଏହାକୁ ନ ଦିଅନ୍ତି, ମୁଁ ତେବେ ବଳପୂର୍ବକ ଏହାକୁ ନେଇଯିବି ।"

ମୁନି ଅତ୍ୟନ୍ତ ଦୃଢ଼ତା ସହକାରେ କହିଲେ—"ଆପଣଙ୍କୁ ଥରେ କ'ଣ ଲକ୍ଷେ ଥର ବି ମୁଁ ସେଇ ଗୋଟିଏ କଥା କହିବି । ଆପଣଙ୍କୁ ସ୍ୱେଚ୍ଛାରେ କାମଧେନୁ ଦେବି ନାହିଁ । ଆପଣ ଯଦି ଜବର୍‌ଦସ୍ତି ଛଡ଼େଇ ନେବାପାଇଁ ଚାହାନ୍ତି ତେବେ ନେଇଯାଆନ୍ତୁ ।"

ରାଜା ବିଶ୍ୱାମିତ୍ର ଶୁଣିଲା କ୍ଷଣି ହସି କ୍ରୋଧାନ୍ୱିତ ସ୍ୱରରେ କହିଲେ—"ମୁଁ ଆପଣଙ୍କର ଅଭିପ୍ରାୟ ବୁଝିଗଲି । ଆପଣ ସ୍ୱେଚ୍ଛାରେ କିଛି କହିବେ ନାହିଁ । ଭଲ କଥା । ମୁଁ ଆପଣଙ୍କ କହିବା ବିନା ହିଁ ତାକୁ ନେଇ ଯାଉଛି ।" ଏହା କହି ସେ ସେବକମାନଙ୍କୁ କାମଧେନୁକୁ ନେଇଯିବା ପାଇଁ ଆଦେଶ ଦେଲେ । ଅନେକ ସୈନିକ ଜୋର୍ ଜବରଦସ୍ତି ଆସି ଗାଈକୁ ଖୋଲି ବାଛୁରୀ ସହିତ ନେଇଗଲେ । ମୁନି ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କଲେ ନାହିଁ । ଗାଈ ଅତ୍ୟନ୍ତ ବିକଳ ହୋଇ ରଡ଼ି କରୁଥିଲା । ସତେ ଯେପରି ମୁନିଙ୍କୁ କହୁଥିଲା—"କେଉଁ ଅପରାଧରୁ ଆପଣ ମୋତେ ପରିତ୍ୟାଗ କଲେ ?"

ମୁନିଙ୍କର ଦୁଃଖରେ କଣ୍ଠରୋଧ ହୋଇ ଯାଉଥିଲା । ସେ କହିଲେ—"ଶବଳା ! ମୁଁ ସ୍ୱେଚ୍ଛାରେ ତୋତେ ତ୍ୟାଗ କରିନାହିଁ । ଏ ରାଜା, ସମର୍ଥ ପୁରୁଷ, ବଳପୂର୍ବକ ତୋତେ ନେଇ ଯାଉଛନ୍ତି । ମୁଁ କ୍ଷମାଶୀଳ ବ୍ରାହ୍ମଣ, କ'ଣ ବା କରି-ପାରିବି ? ଯଦି ତୁ ନିଜର ରକ୍ଷା ସ୍ୱୟଂ କରିପାରୁ, ତେବେ କର ।"

ମୁନି ବଶିଷ୍ଠଙ୍କର ସଙ୍କେତ ପାଇବା କ୍ଷଣି ଗାଈ ତା'ର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗରୁ ପହ୍ଲବ, ଯବନ, କାମ୍ବୋଜ, ଶକ, ମ୍ଳେଚ୍ଛ, ହାରୀତ ଏବଂ କିରାତ ଜାତିର ଅନାର୍ଯ୍ୟ ସୈନିକମାନଙ୍କୁ ଲକ୍ଷ ଲକ୍ଷ ସଂଖ୍ୟାରେ ସୃଷ୍ଟି କଲା । ସେମାନଙ୍କର ବିଶ୍ୱାମିତ୍ରଙ୍କ ସୈନିକଙ୍କ ସହ ଭୀଷଣ ଯୁଦ୍ଧ ହେଲା । ବିଶ୍ୱାମିତ୍ରଙ୍କର ସେନା ପରାସ୍ତ ହେଲେ । ଏଥର ସେମାନଙ୍କର ପୁଅମାନେ ମହର୍ଷି ବଶିଷ୍ଠଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଏହା ଦେଖି ବଶିଷ୍ଠ "ହୁଁ" ଶବ୍ଦ କରି ସେ ସମସ୍ତଙ୍କୁ ଭସ୍ମ କରିଦେଲେ । ଏସବୁ ଦେଖି ବିଶ୍ୱାମିତ୍ରଙ୍କର ଅତ୍ୟନ୍ତ ବୈରାଗ୍ୟ ଉତ୍ପନ୍ନ ହେଲା । ରାଜ୍ୟଭାର ନିଜର ପୁତ୍ର ହସ୍ତରେ ଅର୍ପଣ କରି ସେ ତପସ୍ୟା କରିବା ନିମିତ୍ତ ବଣକୁ ଚାଲିଗଲେ । ତାଙ୍କର ତପସ୍ୟା ପ୍ରତିଶୋଧ ନେବା ଆଶା ଯୋଗୁଁ ସକାମ ଥିଲା । ସେ ଦେବ-ଦେବ ମହାଦେବଙ୍କର ଆରାଧନା ଆରମ୍ଭ କଲେ । କିଛି କାଳ ପରେ ଆଶୁତୋଷ ଭଗବାନ ଭୂତନାଥ

Digitized by srujanika@gmail.com

ବିଶ୍ୱାମିତ୍ରଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କ ସମ୍ମୁଖରେ ଦର୍ଶନ ଦେଲେ ଏବଂ ତାଙ୍କୁ ବର ମାଗିବା ନିମନ୍ତେ ଆଦେଶ କଲେ ।

ରାଜା ବିଶ୍ୱାମିତ୍ର ପ୍ରଭୁ ପଶୁପତିଙ୍କର ପାଦପଦ୍ମରେ ବିନମ୍ର ପ୍ରଣତି ଜଣାଇ ପ୍ରାର୍ଥନା କଲେ—"ପ୍ରଭୋ ! ଯଦି ଆପଣ ଏ ଅକିଞ୍ଚନ ପ୍ରତି ପ୍ରସନ୍ନ ହୋଇଛନ୍ତି ତେବେ ସମସ୍ତ ପ୍ରକାର ଦିବ୍ୟ ଅସ୍ତ୍ରଶସ୍ତ୍ର ସ୍ୱୟଂ ହିଁ ମୋ ପାଖକୁ ଆସିଯାଉ ।"

ଦେବ ଦେବ ମହାଦେବ କହିଲେ—"ଏହା ହିଁ ହେଉ ।" ଏହା କହି ସେ ଅନ୍ତର୍ଦ୍ଧାନ ହୋଇଗଲେ । ବର୍ତ୍ତମାନ ବିଶ୍ୱାମିତ୍ର ନିଜକୁ ଅପରାଜେୟ ମନେକରି ମହର୍ଷି ବଶିଷ୍ଠଙ୍କର ଆଶ୍ରମକୁ ଗଲେ । ସେଠାରେ ପହଞ୍ଚି ସେ ଅସ୍ତ୍ରବୃଷ୍ଟି ବର୍ଷା କରିବାକୁ ଲାଗିଲେ ଏବଂ ଆଶ୍ରମକୁ ନଷ୍ଟଭ୍ରଷ୍ଟ କରିଦେଲେ । ଆଶ୍ରମର ମୁନି ଋଷି, ଜୀବଜନ୍ତୁ ସମସ୍ତେ ଆଶ୍ରମରୁ ବାହାରି ଚାଲିଗଲେ । ଏହା ଦେଖି ମହର୍ଷି ବଶିଷ୍ଠ ଅତ୍ୟନ୍ତ କ୍ରୁଦ୍ଧ ହୋଇ ନିଜର ବ୍ରହ୍ମଦଣ୍ଡ ଉଠାଇଲେ । ତା'ଦ୍ୱାରା ସେ ବିଶ୍ୱାମିତ୍ରଙ୍କର ସମସ୍ତ ଅସ୍ତ୍ରଶସ୍ତ୍ରକୁ ବ୍ୟର୍ଥ କରିଦେଲେ । ପୁଣି ନିଜର ପରାଜିତ ମୁହଁ ନେଇ ଲଜ୍ଜିତ ହୋଇ ବିଶ୍ୱାମିତ୍ର ସେଠାରୁ ଚାଲିଗଲେ । ଯିବା ସମୟରେ ସେ କହିଲେ—"କ୍ଷାତ୍ରବଳକୁ ଧିକ୍ । ବ୍ରହ୍ମବଳ ହିଁ ପ୍ରଧାନ ବଳ । ଗୋଟିଏ ମାତ୍ର ବ୍ରହ୍ମଦଣ୍ଡ ମୋର ସମସ୍ତ ପ୍ରକାର ଅସ୍ତ୍ରଶସ୍ତ୍ରକୁ ବ୍ୟର୍ଥ କରିଦେଲା । ଏ ସବୁ ଦ୍ୱାରା ମୁଁ ହତାଶ ନ ହୋଇ ଅତ୍ୟନ୍ତ ଆନନ୍ଦିତ ହୋଇଛି । ବର୍ତ୍ତମାନ ମୁଁ ନିଜ ତପସ୍ୟା ବଳରେ ଏହି ବ୍ରହ୍ମବଳକୁ ପ୍ରାପ୍ତି କରି ଏହି ଶରୀରରେ ବ୍ରାହ୍ମଣ ହେବି । ବର୍ତ୍ତମାନ ମୋର ସମସ୍ତ ଚେଷ୍ଟା ବ୍ରହ୍ମତେଜ-ପ୍ରାପ୍ତି ନିମନ୍ତେ ହିଁ ହେବ ।" ଏହା କହି ସେ ବ୍ରାହ୍ମଣତ୍ୱ ପ୍ରାପ୍ତି ନିମନ୍ତେ ଘୋର ତପସ୍ୟା ନିମନ୍ତେ ବଣକୁ ଚାଲିଗଲେ । ତାଙ୍କର ରାଣୀ ମଧ୍ୟ ତାଙ୍କ ସହିତ ଥିଲେ । ସେ ଗୃହସ୍ଥ ଧର୍ମ ପାଳନ କରୁଥିବା ସହିତ ତପସ୍ୟା ମଧ୍ୟ କରୁଥିଲେ । ବଣରେ ଥିବା ସମୟରେ ତାଙ୍କର ହବିଷ୍ୟନ୍ଦ, ମଧୁସ୍ୟନ୍ଦ, ଦୃଢ଼ନେତ୍ର ଏବଂ ମହାରଥ—ଏହି ଚାରିପୁତ୍ର ଉତ୍ପନ୍ନ ହେଲେ । ତା'ପରେ ସେ ଚିନ୍ତାକଲେ—"ଆରେ, ବଣକୁ ଆସିବା ପରେ ବି ମୁଁ କାମ ବଶୀଭୂତ ହୋଇଗଲି । ଏବେ ମୁଁ ରାଣୀଙ୍କଠାରୁ ପୃଥକ ରହି ଘୋର ତପସ୍ୟା କରିବି । କାହାକୁ ଦେଖିବି ନାହିଁ କିମ୍ବା କାହା ସହିତ କୌଣସି ପ୍ରକାରର ସମ୍ପର୍କ ରଖିବି ନାହିଁ । ଯମ-ନିୟମ ପାଳନରେ ହିଁ ନିରନ୍ତର ବ୍ୟସ୍ତ ରହିବି ।" ଏହା ଚିନ୍ତାକରି ସେ ତା' ପରଦିନ ଫଳମୂଳ ଖାଇ ତପସ୍ୟା କରିବାକୁ ଲାଗିଲେ । ତା'ପରେ ସେ ଫଳ ଛାଡ଼ି କେବଳ ପତ୍ରାହାରରେ ହିଁ ବଞ୍ଚିବାକୁ ଲାଗିଲେ । ଅନେକ ଦିନ ପର୍ଯ୍ୟନ୍ତ ସବୁଜପତ୍ର ଖାଇବା ପରେ ସେଥିରେ ମଧ୍ୟ ତାଙ୍କୁ ହିଂସାଭାବ ତ୍ୟାଗ ହେଉ ନଥିବା ପରି ମନେହେଲା । ସେ ଶୁଖିଲା ପତ୍ର ଖାଇ ରହିବାକୁ ଲାଗିଲେ । ଏହିପରି କିଛିକାଳ ପରେ ସେ କେବଳ ଜଳଗ୍ରହଣ କରି, ତା'ପରେ ବାୟୁଗ୍ରହଣ

Digitized by srujanika@gmail.com

କରି ସମସ୍ତ କାଟିବା'ରେ ଲାଗିଲେ । ତାଙ୍କ ଶରୀର କୃଶ ହୋଇଗଲା । ତଥାପି ସେ ତାଙ୍କର ଶରୀର ପ୍ରତି ଧ୍ୟାନ ଦେଲେ ନାହିଁ । ସେ ଭାବୁଥିଲେ—"ସଂସାରରେ ତପସ୍ୟା ହିଁ ମୁଖ୍ୟ । ତପର ପ୍ରଭାବରେ ବ୍ରହ୍ମାଙ୍କର ବ୍ରହ୍ମତ୍ୱ ପ୍ରାପ୍ତି ହୋଇଛି, ଇନ୍ଦ୍ର ତିନି ଲୋକଙ୍କର ରାଜା ହୋଇ ପାରିଛନ୍ତି । ମୁଁ ବି ତପବଳରେ କ୍ଷତ୍ରିୟରୁ ବ୍ରାହ୍ମଣ ହୋଇଯିବି । ବ୍ରହ୍ମା-ପୁତ୍ର ବଶିଷ୍ଠଙ୍କୁ ଦେଖେଇ ଦେବି ଯେ ମୁଁ ନିଜର ପୁରୁଷାର୍ଥ ଯୋଗେ ବିପ୍ରତ୍ୱ ପ୍ରାପ୍ତ କରିପାରିଛି । ବଶିଷ୍ଠଙ୍କ ମୁଖରୁ ମୁଁ ନିଜପାଇଁ ବ୍ରହ୍ମର୍ଷି ଶବ୍ଦର ପ୍ରୟୋଗ ନ କରାଇ ପାରିଲେ ମୋର ନାମ ବିଶ୍ୱାମିତ୍ର ନୁହେଁ ।" ଏଇ ସବୁ ବିଚାରରେ ଉତ୍ସାହିତ ହୋଇ ସେ କୌଣସି ବିଘ୍ନରେ ଚଳିତ ନ ହୋଇ, ଘୋର ତପରେ ନିମଗ୍ନ ହୋଇଗଲେ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ବିଶ୍ୱାମିତ୍ରଙ୍କର ତପସ୍ୟାରେ ଈର୍ଷା, ଡିକାର୍ଷର ଭାବନା ଏବଂ ରାଜସ ଅହଙ୍କାର ଥିଲା । କିନ୍ତୁ ତପସ୍ୟା ଅତ୍ୟନ୍ତ ଉତ୍କୃଷ୍ଟ ଥିଲା । ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ଲୋକପିତାମହ ବ୍ରହ୍ମା ତାଙ୍କ ନିକଟକୁ ଆସିଲେ ଏବଂ କହିଲେ—"ହେ ରାଜା ! ମୁଁ ତୁମର ତପସ୍ୟାରେ ଅତ୍ୟନ୍ତ ସନ୍ତୁଷ୍ଟ । ଏହି ତପସ୍ୟାର ଫଳ ପ୍ରଭାବରେ ତୁମକୁ ରାଜର୍ଷି—ଲୋକ ପ୍ରାପ୍ତ ହେବ । ଆଜିଠାରୁ ଲୋକେ ତୁମକୁ ରାଜର୍ଷି କହିବେ ।" ଏହିପରି ବରଦାନ କରି ଭଗବାନ କମଳଯୋନି ତତ୍‌କ୍ଷଣାତ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ବ୍ରହ୍ମାଙ୍କର କଥା ଶୁଣି ବିଶ୍ୱାମିତ୍ର ଅତ୍ୟନ୍ତ ଲଜ୍ଜିତ ହେଲେ । ସେ ଭାବିଲେ—"ହାୟ, ମୁଁ ବ୍ରହ୍ମର୍ଷି ହେବା ନିମିତ୍ତ କେତେ ଘୋର ତପସ୍ୟା କଲି । ମୋର ଆଶା ଥିଲା ମୁଁ ଏଇ ତପସ୍ୟାର ପ୍ରଭାବରେ ନିଶ୍ଚୟ ବ୍ରହ୍ମର୍ଷି ହୋଇଯିବି । କିନ୍ତୁ ଭଗବାନ ବ୍ରହ୍ମା ତ ମୋତେ କେବଳ 'ରାଜର୍ଷି' ହିଁ କହୁଛନ୍ତି । ଏହାଦ୍ୱାରା ସ୍ପଷ୍ଟ ଜଣାପଡ଼ୁଛି ଯେ ମୁଁ ଯେଉଁ ତପସ୍ୟା କରିଛି ତାହା ବ୍ରହ୍ମର୍ଷି-ପଦ ପ୍ରାପ୍ତି ପାଇଁ ଯଥେଷ୍ଟ ନୁହେଁ । ବର୍ତ୍ତମାନ ମୁଁ ପୁଣି ଆଉଥରେ ଘୋର ତପସ୍ୟା କରି ବ୍ରହ୍ମର୍ଷିପଦ ପାଇବି ।" ଏହା ଚିନ୍ତା କରି ସେ ନିର୍ଜନ ବଣର ଏକାନ୍ତ ସ୍ଥାନରେ ପୁନଶ୍ଚ ଘୋର ତପସ୍ୟାରେ ନିମଗ୍ନ ହୋଇଗଲେ ।"

ବିଶ୍ୱାମିତ୍ର ବଣରେ ତପସ୍ୟା କରୁଥିବା ସମୟରେ ତାଙ୍କୁ ଅତ୍ୟନ୍ତ କରୁଣ କ୍ରନ୍ଦନ ଶୁଣାଗଲା । କ୍ରନ୍ଦନ ଶୁଣି ରାଜର୍ଷି ବିଶ୍ୱାମିତ୍ରଙ୍କ ହୃଦୟରେ କରୁଣା ଧାରା ହେଲା । ସେ ଆଖି ଖୋଲି ଦେଖିଲେ, ଅଯୋଧ୍ୟାର ମହାରାଜ ତ୍ରିବନ୍ଧନଙ୍କର ପୁତ୍ର ତ୍ରିଶଙ୍କୁ କାନ୍ଦୁଛନ୍ତି । ମୁନି ପଚାରିଲେ—"ରାଜପୁତ୍ର ! ତୁମେ କାହିଁକି କାନ୍ଦୁଛ ? ତୁମର କ'ଣ ଦୁଃଖ ହୋଇଛି ? ଯାହା ଦୁଃଖ ହେଉ, ମୁଁ ତୁମ ଦୁଃଖ ଦୂର କରିବି ।"

ରାଜା ଉତ୍ତର ଦେଲେ—"ଭଗବାନ ! ମୁଁ ଗୁରୁଙ୍କ ଅଭିଶାପରୁ ଚଣ୍ଡାଳ ହୋଇ ଯାଇଛି । ସଶରୀରରେ ସ୍ୱର୍ଗକୁ ଯିବା ଇଚ୍ଛାରେ ଗୋଟିଏ ବଡ଼ ଯଜ୍ଞ କରିବାପାଇଁ

Digitized by srujanika@gmail.com

ମୁଁ ବୃଦ୍ଧ ହେଁ । ସେଥିପାଇଁ ମୁଁ ଆମ୍ଭର କୁଳଗୁରୁ ବଶିଷ୍ଠଙ୍କ ପାଖକୁ ତଥା ତାଙ୍କର ଶତପୁତ୍ରଙ୍କ ପାଖକୁ ଯାଇଥିଲି । ସେ ମୋର ଯଜ୍ଞ କରିବା ପାଇଁ ଅସ୍ୱୀକାର କଲେ । ଏହାର ବିପରୀତରେ ଅଭିଶାପ ଦେଇ ମୋତେ ଚଣ୍ଡାଳ କରିଦେଲେ । ବର୍ତ୍ତମାନ ମୁଁ ଆପଣଙ୍କ ଶରଣାଗତ ।"

ନିଜର ପ୍ରତିଦ୍ୱନ୍ଦୀକୁ ଶ୍ରେଷ୍ଠ କରିଦେବା ପାଇଁ ବିଶ୍ୱାମିତ୍ରଙ୍କର ଇଚ୍ଛା ଜାଗ୍ରତ ହେଲା । ସେ ସାହସର ସହିତ କହିଲେ—"ରାଜା ! କିଛି କଥା ନାହିଁ । ତୁମେ ଆଦୌ ଚିନ୍ତା କର ନାହିଁ । ବଶିଷ୍ଠ ଯଜ୍ଞ ନ କରନ୍ତୁ । ମୁଁ ତୁମର ଯଜ୍ଞ କାର୍ଯ୍ୟ କରିବି । ମୁଁ ତୁମକୁ ସଶରୀରରେ ସ୍ୱର୍ଗକୁ ପଠାଇବି । ମୁଁ ତୁମର ମନକାମନା ପୂର୍ଣ୍ଣ କରିବି । ତୁମେ ମୋର ତପସ୍ୟାର ପ୍ରଭାବ ଦେଖ ! ଯାଅ, ଯଜ୍ଞର ସମସ୍ତ ସାମଗ୍ରୀ ସଂଗ୍ରହ କର ।" ଏହାଶୁଣି ରାଜା ଅତ୍ୟନ୍ତ ଆନନ୍ଦିତ ହୋଇ ସମସ୍ତ ସାମଗ୍ରୀ ଏକାଠି କଲେ । ବିଶ୍ୱାମିତ୍ର ସେହି ଯଜ୍ଞକୁ ବଶିଷ୍ଠଙ୍କର ଶତପୁତ୍ରଙ୍କୁ ନିମନ୍ତ୍ରଣ କଲେ । ସେମାନେ ସମସ୍ତେ କହିଲେ—"ଯେଉଁ ଯଜ୍ଞର ଯଜମାନ ଚଣ୍ଡାଳ, ଆଚାର୍ଯ୍ୟ କ୍ଷତ୍ରିୟ, ସେପରି ଯଜ୍ଞକୁ ଆମେ ଯିବା ସମ୍ଭବ ନୁହେଁ ।"

ଏହାଶୁଣି ବିଶ୍ୱାମିତ୍ରଙ୍କର କ୍ରୋଧର ସୀମା ରହିଲା ନାହିଁ । ରାଗିଯାଇ ସେ ହାତରେ ପାଣି ନେଇ ସେମାନଙ୍କୁ ଅଭିଶାପ ଦେଲେ—"ବଶିଷ୍ଠଙ୍କର ସମସ୍ତ ପୁତ୍ର ବର୍ତ୍ତମାନ ଭସ୍ମ ହୋଇଯାଆନ୍ତୁ ଏବଂ ପରଜନ୍ମରେ କୁକୁର ମାଂସ ଖାଉଥିବା ଚଣ୍ଡାଳ ହୁଅନ୍ତୁ ।" ସେମାନଙ୍କୁ ଏହିପରି ଅଭିଶାପ ଦେଇ, ଯେଉଁ ମୁନିମାନେ ଯଜ୍ଞକୁ ନିମନ୍ତ୍ରଣ ସତ୍ତ୍ୱେ ଆସି ନଥିଲେ ସେମାନଙ୍କୁ ମଧ୍ୟ ସେ ଅଭିଶାପ ଦେଲେ । ବାକି ଯେଉଁ ମୁନିମାନେ ରହିଯାଇଥିଲେ ସେମାନେ ଭୟରେ ଯଜ୍ଞକୁ ଚାଲିଆସିଲେ । ଯଜ୍ଞ ହେଲା । ନିଜ ତପସ୍ୟା ପ୍ରଭାବରେ ବିଶ୍ୱାମିତ୍ର ତ୍ରିଶଙ୍କୁଙ୍କୁ ସଶରୀରରେ ସ୍ୱର୍ଗକୁ ପଠାଇଦେଲେ । କିନ୍ତୁ ଦେବତାମାନେ ତାଙ୍କୁ ଗହିତ ନକରି ତଳକୁ ଠେଲିଦେଲେ । ଏହାଦେଖି ତପସ୍ୟାବଳରେ ଅଭିମାନରେ ଅନ୍ଧ ହୋଇଥିବା ମୁନି ଦ୍ୱିତୀୟ ସ୍ୱର୍ଗର ରଚନାରେ ଲାଗିଗଲେ । ଦେବତାମାନେ ବିବ୍ରତ ହୋଇପଡ଼ିଲେ । ଏମାନଙ୍କ ଭିତରେ ଟଣାଓଟରା ହୋଇ ତ୍ରିଶଙ୍କୁ ନା ସ୍ୱର୍ଗକୁ ଗଲେ ନା ପୃଥିବୀକୁ ଫେରି ପାରିଲେ, ମଝିରେ ହିଁ ସେ ଲଟକି ରହିଲେ ।

ବର୍ତ୍ତମାନଯାଏ ବିଶ୍ୱାମିତ୍ର ଯେଉଁ ତପସ୍ୟା କରିଥିଲେ ତାହାର ଫଳ ତାଙ୍କର କ୍ରୋଧ, ଜିଦ ଏବଂ ଅଭିଶାପରେ ସରିଗଲା । ସେ ପୂର୍ବାବସ୍ଥାକୁ ଫେରିଆସିଲେ । ନିଜର ସମସ୍ତ ତପଃଶକ୍ତି ସରିଯିବାପରେ ତାଙ୍କର ବୁଦ୍ଧିବୋଧ ହେଲା । ସେ ଭାବିଲେ— "ଅରେ ! ମୁଁ ତ କ୍ରୋଧର ବଶବର୍ତ୍ତୀ ହୋଇ ମୋର ଏତେ ଦିନର ତପ ନଷ୍ଟ

Digitized by srujanika@gmail.com

କରିଦେଲେ । ଏଥର ମୁଁ ଆଉ କ୍ରୁଦ୍ଧ ହେବିନାହିଁ ।” ଏହିପରି ସିଦ୍ଧାନ୍ତ କରି ସେ ପୁଣି ନୂତନ ଉତ୍ସାହର ସହିତ ତପସ୍ୟାରେ ପ୍ରବୃତ୍ତ ହେଲେ । ସେ ପ୍ରଥମେ ଦକ୍ଷିଣ ଦିଗରେ ତପସ୍ୟା କରିଥିଲେ । ସେତିକିବେଳେ ତ୍ରିଶଙ୍କୁଙ୍କର ସମସ୍ୟା ହେତୁ ତାଙ୍କର ତପସ୍ୟାରେ ବିଘ୍ନ ଆସିଲା । ତେଣୁ ସେ ବର୍ତ୍ତମାନ ସେ ଦିଗକୁ ଛାଡ଼ି ପଶ୍ଚିମ ଦିଗରେ ତପଃ କରିବା ନିମନ୍ତେ ପୁଷ୍କର କ୍ଷେତ୍ରକୁ ଚାଲିଗଲେ । ସେଠାରେ ସେ ନିଜର ଭଣଜା ଶୁନଃଶେପଙ୍କର ଉଦ୍ଧାର କରିଥିଲେ । ତା' ଯୋଗୁ ମଧ୍ୟ ତାଙ୍କର ତପସ୍ୟାରେ ବିଘ୍ନ ହୋଇଥିଲା । ତଥାପି ସେ ପୁଷ୍କରରେ ଏକହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିଥିଲେ । ତାଙ୍କର ତପଃଦ୍ୱାରା ସନ୍ତୁଷ୍ଟ ହୋଇ ବ୍ରହ୍ମା ପୁଣି ଆସିଲେ ଏବଂ ତାଙ୍କୁ ଋଷି ଉପାଧି ଦେଇ ଫେରି ଯାଇଥିଲେ ।

ମୁନିବର ବିଶ୍ୱାମିତ୍ର ସେଥିରେ ମଧ୍ୟ ସନ୍ତୁଷ୍ଟ ହେଲେନାହିଁ । ସେ ତ ବ୍ରହ୍ମର୍ଷି ହେବାପାଇଁ ଇଚ୍ଛା କରିଥିଲେ । ତେଣୁ ସେ ପୁନଶ୍ଚ ଘୋର ତପଃରେ ନିମଗ୍ନ ହୋଇଗଲେ । ମୁନିଙ୍କର ଆଶ୍ରମ ସୁନ୍ଦର ବୃକ୍ଷ ଏବଂ ସଦାନ ଲତା ଦ୍ୱାରା ପରିବେଷ୍ଟିତ ଅତ୍ୟନ୍ତ ମନୋହର ଆଶ୍ରମ ଥିଲା । ତାହା ପୁଷ୍କର କୁଣ୍ଡ ନିକଟରେ ହିଁ ଥିଲା । ଦିନେ ମୁନି ପୁଷ୍କର କୁଣ୍ଡରେ ସ୍ନାନ କରୁଥିଲେ । ସେହିଠାରେ ହିଁ ସେ ସ୍ୱର୍ଗର ସର୍ବଶ୍ରେଷ୍ଠ ସୁନ୍ଦରୀ ମେନକାକୁ ଦେଖିଲେ । ସେ ନିଜର ଅଙ୍ଗରେ ଦିବ୍ୟ ଅଙ୍ଗରାଗ ଲଗାଇଥିଲା । ତା'ଦେହରୁ ପଦ୍ମଫୁଲର ଗନ୍ଧ ବାହାରୁଥିଲା । ସେ ଅତ୍ୟନ୍ତ ହାଲ୍‌କା ନୀଳ ରଙ୍ଗର ରେଶମୀ ଶାଢ଼ୀ ପିନ୍ଧିଥିଲା । ତା'ର କଳା କଳା କୁଞ୍ଚିତ କେଶରାଶିରେ ସ୍ୱର୍ଗୀୟ ଫୁଲର ମାଳ ଗୁନ୍ଥା ହୋଇଥିଲା, ଯାହା ଉପରେ ମଧୁଲୋଭୀ ଭ୍ରମର ଗୁଞ୍ଜନ କରୁଥିଲେ, ଯାହାର ସୁଗନ୍ଧ ଯୋଜନ ଯାଏ ବ୍ୟାପ୍ତ ଥିଲା । ତା'ର ଶରୀର ତଥା ପାରିଜାତ ଫୁଲର ସୁରଭିରେ ମୁନିଙ୍କର ହୃଦୟ ତା' ଆଡ଼କୁ ଆକୃଷ୍ଟ ହେଲା । ନୀଳ ଶାଢ଼ୀ ଭିତରୁ ତା'ର ସୁବର୍ଣ୍ଣ ବର୍ଣ୍ଣର ଦେହ ବିଜୁଳି ପରି ଚମକୁ ଥିଲା । ତାଙ୍କର ଦୃଷ୍ଟି ତା' ଉପରକୁ ଯିବାମାତ୍ରେ ସେଇଠି ସ୍ଥିର ହୋଇ ରହିଗଲା । ଏବେ ମୁନି ସନ୍ଧ୍ୟା ବନ୍ଦନାଦି କରିବା ସବୁକିଛି ଭୁଲିଗଲେ । ମନ୍ତ୍ର କ'ଣ ପଢ଼ୁଥିଲେ ତ କାର୍ଯ୍ୟ ଆଉ କିଛି କରୁଥିଲେ ।

କିନ୍ତୁ ଦୃଷ୍ଟି ତାଙ୍କର ସେହି ସୁରସୁନ୍ଦରୀର ଶରୀରରେ ଲାଗି ଯାଇଥିଲା । ସେ ପରମ ପବିତ୍ର ପୁଷ୍କର କୁଣ୍ଡରେ ସ୍ନାନ କଲା । ସ୍ନାନ କରିବା ଦ୍ୱାରା ତା'ର ଶାଢ଼ୀ ତା' ଦେହରେ ଲାଗି ରହିଗଲା । ଫଳରେ ତା' ଦେହର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସ୍ପଷ୍ଟ ଦେଖାଗଲା । ସେ ବାରମ୍ବାର ନିଜ ଦେହର ଶାଢ଼ୀକୁ ଚିପୁଡ଼ି ପବନରେ ଝାଡ଼ି ଦେଉଥିଲା ତଥା ବିଭିନ୍ନ ପ୍ରକାର ମୁଖଭଙ୍ଗୀ କରୁଥିଲା । ସେ ସମୟରେ ତା'ର ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋମୁଗ୍ଧକର ଥିଲା । ସେ କୌଣସିମତେ ତା'ର ଶାଢ଼ୀ ପାଲଟିଲା । ସ୍ନାନ

Digitized by srujanika@gmail.com

ଂଗବାଦ୍ୱାରା ତା'ର ଅଙ୍ଗରାଗ ଆହୁରି ଅଧିକ ସୁଗନ୍ଧ ଦେବାକୁ ଆରମ୍ଭ କରିଦେଲା । ସେ ବସ୍ତ୍ର ପରିଧାନ ପରେ ଅତ୍ୟନ୍ତ ସଙ୍କୋଚରେ ମୁନିଙ୍କ ଚରଣରେ ପ୍ରଣାମ କଲା । ମୁନି ତ ମନେ ମନେ ଏହା ହିଁ ଚିନ୍ତୁ ଥିଲେ । ତେଣୁ ସେ ମୁଗ୍‌ଧ ହୋଇଗଲେ । ସେ ଅତ୍ୟନ୍ତ ସ୍ନେହ ପ୍ରଦର୍ଶନ କରି କହିଲେ—"ସୁର-ସୁନ୍ଦରୀ ! ତୁମେ କେଉଁଠାକୁ ଯାଉଛ ?"

ଲଜ୍ଜା ଅବନ୍ନତ ମୁଖରେ ହାତ ଯୋଡ଼ି ତଳକୁ ଅନାଇ ମେନକା କହିଲା—"ଭଗବନ୍ ! ମୁଁ ଏଇ ପରମ ପବିତ୍ର ପୁଣ୍ୟତୀର୍ଥ ପୁଷ୍କରରେ ସ୍ନାନ କରିବା ନିମନ୍ତେ ଆସିଥିଲି ।"

ବିଶ୍ୱାମିତ୍ର କହିଲେ—"ବର୍ତ୍ତମାନ ତୁମେ କେଉଁଠାକୁ ଯିବ ?"

ମେନକା କହିଲା—"ମହାରାଜ ! ଏବେ ଯେଉଁଠାକୁ ଭାଗ୍ୟ ନେଇଯିବ ସେଇଠାକୁ ଯିବ ।"

ମୁନି କହିଲେ—"ନିକଟରେ ମୋର ଆଶ୍ରମ । ଯଦି ତୁମେ ଚାହଁ ଆଜି ସେଠାକୁ ଯାଇ ମୋର ଆତିଥ୍ୟ ଗ୍ରହଣ କର ।"

ଅପ୍‌ସରା ମେନକା ଉତ୍ତର ଦେଲା—"ମୋର ଅତ୍ୟନ୍ତ ସୌଭାଗ୍ୟ ଯେ ପ୍ରଭୁ ମୋତେ ନିଜର ଆଶ୍ରମକୁ ଯିବାପାଇଁ ଆମନ୍ତ୍ରିତ କଲେ ।"

ମୁନି ଏହା ଶୁଣି ଅତ୍ୟନ୍ତ ଆନନ୍ଦରେ ତାକୁ ନିଜ ଆଶ୍ରମକୁ ନେଇଗଲେ । ଏବେ ତ ମୁନି ଭଜନ-ପୂଜନ ପୂଜାପାଠ ସବୁକିଛି ଭୁଲିଗଲେ । ଅଚ୍ୟୁତଙ୍କର ଧ୍ୟାନମଗ୍ନ ନ ହୋଇ ସେ ଅପ୍‌ସରାର ଧ୍ୟାନମଗ୍ନ ହୋଇ ରହିଲେ । ମେନକା ବାରମ୍ବାର ଯିବାପାଇଁ ଅନୁମତି ମାଗୁଥିଲା, କିନ୍ତୁ ମୁନି ତାକୁ ପୁଣି କିଛିଦିନ ରହିଯିବାପାଇଁ ନିର୍ଦ୍ଦେଶ ଦେଉଥିଲେ । ସେ ତ ଦେବତାମାନଙ୍କ ପ୍ରରୋଚନାରେ ହିଁ ଏହି କାର୍ଯ୍ୟ କରିବା ପାଇଁ ଆସିଥିଲା । ମୁନିମାନେ ! ତପସ୍ୱୀଙ୍କର ତପସ୍ୟାରେ ଦେବତାମାନେ ସଦାବେଳେ ବିଘ୍ନ ଦିଅନ୍ତି । ପ୍ରଥମେ ସେମାନେ ସାଧାରଣ ସ୍ତ୍ରୀମାନଙ୍କୁ ପଠାନ୍ତି । ତପସ୍ୱୀ ଯଦି ସେମାନଙ୍କ ଜାଲରେ ପଶିଗଲେ ତ ଗଲା, ଯଦି ସେଥିରୁ ବାହାରି ଯାଆନ୍ତି, ତେବେ ସ୍ୱର୍ଗୀୟ ଅପ୍‌ସରାମାନଙ୍କୁ ପଠାଯାଏ । ସୌନ୍ଦର୍ଯ୍ୟର ଜାଲ ଏପରି ଯେ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ଅବିଲମ୍ବରେ ସେ ଜାଲରେ ପଶି ଯାଆନ୍ତି । ମୁନି ବିଶ୍ୱାମିତ୍ରଙ୍କୁ ମେନକା ସାଥିରେ ରହିବାର ଦଶବର୍ଷ ବିତିଗଲା । ସେହି ଦଶବର୍ଷ ତାଙ୍କୁ ଦଶଟି ମୁହୂର୍ତ୍ତପରି ମଧ୍ୟ ଲାଗିଲା ନାହିଁ । ଧିରେ ସେ ସଚେତନ ହୋଇଗଲେ । ମନେ ମନେ ଚିନ୍ତାକଲେ—ଆରେ ! ମୁଁ ବ୍ରାହ୍ମଣ ହେବା ନିମନ୍ତେ ତପସ୍ୟା କରୁ କରୁ ଏ କାମିନୀରୂପୀ ମାୟା ମୋତେ କିପରି ଛନ୍ଦିଦେଲା ! ଏ ସବୁ ନିଶ୍ଚେ ଦେବତାମାନଙ୍କର କାର୍ଯ୍ୟ ।

Digitized by srujanika@gmail.com

ମୁନି ପ୍ରକୃତିସ୍ଥ ହେବା ଜାଣି ତାଙ୍କ ଶାପରେ ଭସ୍ମ ହୋଇଯିବା ଡରରେ ମେନକା ଥରିବାକୁ ଲାଗିଲେ । ମୁନି ତାଙ୍କୁ ଅଭୟ ଦେଇ କହିଲେ—"ଦେବି ! ତୁମେ ଭୟ କର ନାହିଁ । ତୁମର କୌଣସି ଅପରାଧ ନାହିଁ । ଦୋଷ ତ ମୋ ନିଜର । ମୁଁ ନିଜେ ତୁମକୁ ଏଠାକୁ ନେଇଆସିଥିଲି । ତୁମେ ବର୍ତ୍ତମାନ ତୁମ ଇଚ୍ଛାନୁସାରେ ଯେଉଁଠାକୁ ଚାହିଁ ଯାଇପାର ।"

ଏହା ଶୁଣି ମେନକା ଦେହରେ ପ୍ରାଣ ପଶିଲା । ସେ ତତ୍କ୍ଷଣାତ୍ ମୁନିଙ୍କୁ ପ୍ରଣାମ କରି ସ୍ୱର୍ଗକୁ ପ୍ରସ୍ଥାନ କଲା । ଯିବା ସମୟରେ ସେ ଗର୍ଭବତୀ ଥିଲା । ତା'ର ଏକ କନ୍ୟା ସନ୍ତାନ ଜାତ ହେଲା ଯାହାକୁ ସେ ଯିବା ସମୟରେ ଜଙ୍ଗଲରେ ଛାଡ଼ିଦେଇ ଚାଲିଗଲା । ସେ କନ୍ୟାର ଲାଳନପାଳନ ଭଗବାନ କେଶବ ଋଷିଙ୍କ ଦ୍ୱାରା ହୋଇଥିଲା । ବଡ଼ ହେବାପରେ ସେ ଚକ୍ରବର୍ତ୍ତୀ ରାଜା ଦୁଷ୍ମନ୍ତଙ୍କର ପତ୍ନୀ ହୋଇଥିଲା ଏବଂ ବିଶ୍ୱବିଜୟୀ ସମ୍ରାଟ ମହାରାଜ ଭରତଙ୍କର ଜନନୀ ହେବାର ଭାଗ୍ୟ ପାଇଥିଲା । ତା'ର ବୃତ୍ତାନ୍ତ ମହାରାଜ ଦୁଷ୍ମନ୍ତଙ୍କର ପ୍ରସଙ୍ଗବେଳେ କୁହାଯିବ ।"

ସୂତମୁନି କହୁଛନ୍ତି—"ମୁନିମାନେ ! ବର୍ତ୍ତମାନ ବିଶ୍ୱାମିତ୍ର ମୁନି ପଶ୍ଚିମ ଦିଗ ମଧ୍ୟ ଛାଡ଼ିଦେଲେ ଏବଂ ପରମ ପବିତ୍ର ଉତ୍ତର ଦିଗକୁ ଯାଇ କୌଶିକୀ ନଦୀ ତୀରରେ ରହି, ଉଗ୍ର ତପସ୍ୟା କରିବାକୁ ଲାଗିଲେ ।"

ତାଙ୍କ ତପସ୍ୟାରେ ଭୟଭୀତ ହୋଇ ଦେବଗଣ ଲୋକପିତାମହଙ୍କ ପାଖକୁ ଗଲେ ଏବଂ କହିଲେ—"ଭଗବାନ୍ ! ମହାମୁନି ବିଶ୍ୱାମିତ୍ର ଅତ୍ୟନ୍ତ ଉଗ୍ରତପସ୍ୟା କରୁଛନ୍ତି । ତାଙ୍କୁ ଆପଣ ବ୍ରହ୍ମର୍ଷି ପଦ ଦେଇଦିଅନ୍ତୁ ।"

ଏହାଶୁଣି ବ୍ରହ୍ମା କହିଲେ—"ହଁ, ମୁଁ ମଧ୍ୟ ସେଇଆ ଭାବୁଥିଲି । ହଉତେବେ ମୁଁ ମୁନି ବିଶ୍ୱାମିତ୍ରଙ୍କ ନିକଟକୁ ଯାଉଛି ।"

ଲୋକପିତାମହ ବ୍ରହ୍ମା ହଂସ ଉପରେ ଚଢ଼ି ବିଶ୍ୱାମିତ୍ରଙ୍କ ନିକଟକୁ ଆସିଲେ ଏବଂ କହିଲେ—"ମୁନିବର ! ତୁମର ତପସ୍ୟା ଅତି ଉତ୍ତମ, ମୁଁ ତୁମକୁ ମହର୍ଷି ଉପାଧି ଦେଉଛି ।"

ଏହା ଶୁଣି ବିଶ୍ୱାମିତ୍ର ଯୋଡ଼ହସ୍ତ ହୋଇ କହିଲେ—"ଭଗବାନ୍ ! ମୋର ଅତ୍ୟନ୍ତ ସୌଭାଗ୍ୟ ଯେ ମୁଁ ଆପଣଙ୍କର ଦର୍ଶନ ପାଇଲି । ହେ ପ୍ରଭୋ ! ମୁଁ ତ ବ୍ରହ୍ମର୍ଷି ପଦ ପାଇଁ ତପସ୍ୟା କରୁଥିଲି । ଆପଣ ମୋତେ ବ୍ରହ୍ମର୍ଷି ନ କହି ମହର୍ଷି ହିଁ କହୁଛନ୍ତି । ଏହାଦ୍ୱାରା ମୁଁ ଭାବୁଛି ଯେ ମୁଁ ବର୍ତ୍ତମାନ ସୁଦ୍ଧା ଇନ୍ଦ୍ରିୟଜିତ୍ ହୋଇପାରି ନାହିଁ ।"

Digitized by srujanika@gmail.com

ଏହାଶୁଣି ବ୍ରହ୍ମା ଉତ୍ତର ଦେଲେ—"ହଁ ମୁନି ! ବିଶ୍ୱାମିତ୍ର ! ବର୍ତ୍ତମାନଯାଏଁ ତୁମର ଇନ୍ଦ୍ରିୟମାନେ ବଶ ହୋଇଯାଇ ନାହାନ୍ତି । ଦେଖ ! ମୌନ, ବ୍ରତ, ତପସ୍ୟା, ବେଦାଧ୍ୟୟନ, ସ୍ୱଧର୍ମ ପାଳନ, ଜପ, ବ୍ୟାଖ୍ୟା, ଏକାନ୍ତବାସ, ଶାସ୍ତ୍ର-ଶ୍ରବଣ, ସମାଧି-ଏ ସବୁ ଉପାୟ ମୁକ୍ତି ଦେବାପାଇଁ ସକ୍ଷମ । କିନ୍ତୁ ଯାହାର ଇନ୍ଦ୍ରିୟ ବଶୀଭୂତ ନୁହେଁ ତା'ପାଇଁ ଏମାନେ ମୁକ୍ତିର ଉପାୟ ନ ହୋଇ କେବଳ ବିଷୟଭୋଗ ପାଇଁ ସାଧନ ହୋଇଯାନ୍ତି । ବର୍ତ୍ତମାନ ସୁଦ୍ଧା ତୁମେ କାମ ଏବଂ କ୍ରୋଧ ଉପରେ ବିଜୟ ଲାଭ କରିପାରି ନାହିଁ ।"

ଏହା ଶୁଣି ବିଶ୍ୱାମିତ୍ର କହିଲେ—"ପ୍ରଭୋ ! ବର୍ତ୍ତମାନ ମୁଁ ପୁଣି ତପସ୍ୟା କରିବି ଏବଂ ବ୍ରହ୍ମର୍ଷି ପଦ ପ୍ରାପ୍ତି ହେବି । ବର୍ତ୍ତମାନ ମୁଁ ସେହି ତପସ୍ୟା କରିବି ଯେଉଁଥିରେ ମୁଁ ପୁନଶ୍ଚ କାମର ବଶୀଭୂତ ହୋଇ ପାରିବି ନାହିଁ ।"

ବ୍ରହ୍ମା କହିଲେ—"ବତ୍ସ ! ତୁମେ ତାହା ହିଁ କର । ତପସ୍ୟାରେ କାମ ହିଁ ସବୁଠାରୁ ବଡ଼ ଶତ୍ରୁ । ଏକାନ୍ତରେ କାମ ଅଧିକ ପ୍ରବଳ ହୋଇଉଠେ । ତେଣୁ ଏକାନ୍ତରେ କୌଣସି କାମିନୀର ଅନୁରାଗ ପ୍ରଦର୍ଶନ, ଦେବତାଙ୍କ ଦ୍ୱାରା ପ୍ରସ୍ତୁତ ବିଘ୍ନ ବୋଲି ସଚେତନ ହୋଇ ସେଥିରେ ଆସକ୍ତ ହେବନାହିଁ । ତା' ଦ୍ୱାରା ତୁମର କଲ୍ୟାଣ ହିଁ ହେବ ।" ଏହା କହି ବ୍ରହ୍ମା ତତ୍‌କ୍ଷଣାତ୍ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ବିଶ୍ୱାମିତ୍ର ପୁଣି କଠୋର ତପସ୍ୟାରେ ନିମଗ୍ନ ହୋଇଗଲେ ।

ସେ ଗୋଟିଏ ପାଦର ବୁଢ଼ାଆଙ୍ଗୁଠି ଉପରେ ଛିଡ଼ାହୋଇ ହାତ ଉପରକୁ କରି ତପସ୍ୟା କରୁଥିଲେ । ଭୋଜନ ସେ ସମ୍ପୂର୍ଣ୍ଣରୂପେ ତ୍ୟାଗ କରି ଦେଇଥିଲେ । ବାୟୁର ଆଧାର ନେଇ ହିଁ ସେ ରହୁଥିଲେ । ସମସ୍ତ ଇନ୍ଦ୍ରିୟଙ୍କୁ ସେ ନିଜ ଆୟତ୍ତରେ ରଖିଥିଲେ । ଗରମ ଦିନରେ ମଧ୍ୟ ପଞ୍ଚାଗ୍ନି ହୋମ କରି ତନ୍ମଧ୍ୟରେ ତପସ୍ୟା କରୁଥିଲେ । ଥଣ୍ଡା ଦିନରେ ସେ ଆକଣ୍ଠ ଜଳରେ ବୁଡ଼ି ତପସ୍ୟା କରୁଥିଲେ ଏବଂ ବର୍ଷା ଦିନରେ ସେ ବାହାର ପ୍ରାନ୍ତରରେ ଛିଡ଼ାହୋଇ ବର୍ଷାରେ ଭିଜି ଭିଜି ତପସ୍ୟାରେ ମଗ୍ନ ରହୁଥିଲେ ।

ତାଙ୍କର ତପସ୍ୟା ଦେଖି ଇନ୍ଦ୍ରଙ୍କ ମନରେ ସନ୍ଦେହ ହେଲା । ସେ ଭାବିଲେ— "ମୁନି ଯଦି ଏପରି ଘୋର ତପସ୍ୟା କରନ୍ତି, ମୋ ସିଂହାସନ ମଧ୍ୟ ଦିନେ ସେ ମୋ'ଠାରୁ ଛଡ଼େଇ ନେବେ । ଯେଉଁ ଉପାୟରେ ହେଉ ତାଙ୍କ ତପସ୍ୟାରେ ବିଘ୍ନ ଆଣିବା ହିଁ ଆବଶ୍ୟକ । ଏହା ଭାବି ସେ ସ୍ୱର୍ଗର ସବୁଠାରୁ ସୁନ୍ଦରୀ ଅପ୍ସରା ରମ୍ଭାକୁ ଡାକିଲେ ଏବଂ କହିଲେ—"ସୁନ୍ଦରୀ ! ତୁମ ସୌନ୍ଦର୍ଯ୍ୟ ଦେଖି ବଡ଼ ବଡ଼ ତପସ୍ୱୀ ମଧ୍ୟ ସମ୍ମୋହିତ

Digitized by srujanika@gmail.com

ନିୟୋଜିତଯାଆନ୍ତି । ତୁମେ ଯେମିତି ହେଉ, ଯାଇ ବିଶ୍ୱାମିତ୍ରଙ୍କର ତପସ୍ୟାରେ ବିଘ୍ନ ସୃଷ୍ଟି କର ।"

ରମ୍ଭା କହିଲା—"ଦେବେନ୍ଦ୍ର ! ବିଶ୍ୱାମିତ୍ର ଅତ୍ୟନ୍ତ କ୍ରୋଧୀ ଋଷି । ସେ ନିଜର କ୍ରୋଧ ବଳରେ ଆମ ସମସ୍ତଙ୍କୁ ଭସ୍ମ କରିଦେବ ।"

ରମ୍ଭାକୁ ଭୟରେ ଥରିବାର ଦେଖି ଦେବରାଜ ଇନ୍ଦ୍ର କହିଲେ—"ରମ୍ଭା ! ଡରୁଛ କାହିଁକି ? ଦେଖ ବସନ୍ତ, କାମଦେବ, ମଳୟାନିଳ ଏମାନେ ସମସ୍ତେ ତୁମ ସାଥିରେ ରହିବେ । ମୁଁ ସ୍ୱୟଂ କୋକିଳ ରୂପରେ ଆମ୍ବଡାଳରେ ବସି କୁହୁତାନ କରିବି । ଭୟ ନ କରି ମୋ କଥା ମାନି ଆଗେଇ ଯାଅ ।"

ଦେବରାଜଙ୍କର ଏହିପରି ଆଶ୍ୱାସନା ଦ୍ୱାରା ରମ୍ଭା ବିଶ୍ୱାମିତ୍ରଙ୍କ ପାଖକୁ ଯିବାପାଇଁ ସ୍ୱୀକୃତ ହେଲା । ସର୍ବପ୍ରଥମେ ବସନ୍ତ ଋତୁ ନିଜର ପ୍ରସାର କଲା । ସର୍ବଶ୍ରେଷ୍ଠ ସୁଗନ୍ଧ ଧରି ମଳୟାନିଳ ବହିବାକୁ ଲାଗିଲା । କାମଦେବ ନିଜ ବାଣ ଟାଣି ସମ୍ଭାଳି ରହିଲେ । ଆମ୍ବ ବଉଳ ଭିତରେ ଇନ୍ଦ୍ର କୋକିଳ ହୋଇ କୁହୁତାନ କରିବାରେ ଲାଗିଲେ । ରମ୍ଭା ନିଜର ହାବଭାବ ଦେଖାଇ ନୃତ୍ୟ ପ୍ରଦର୍ଶନ କରିବା ଆରମ୍ଭ କରିଦେଲା । କୋକିଳର କୁହୁତାନ ତଥା ନୂପୁରର ସୁମଧୁର ଧ୍ୱନି ଶୁଣି ମୁନିଙ୍କର ମନ ଆନନ୍ଦରେ ଉଦ୍‌ବେଳିତ ହେବାକୁ ଲାଗିଲା । ଆଖି ଖୋଲି ସେ ବସନ୍ତ ଋତୁର ପ୍ରଭାବ ଦର୍ଶନ କରି ଅତ୍ୟନ୍ତ ପ୍ରୀତହେଲେ । କୋକିଳର ମାଦକ ସ୍ୱର, ରମ୍ଭାର ମେନକାଠାରୁ ବି ବଳି ଅପରୂପ ସୌନ୍ଦର୍ଯ୍ୟ ! ବିଶ୍ୱାମିତ୍ର ଏସବୁ ଦେଖି ବୁଝିଗଲେ ଯେ ଏ ହେଉଛି ଦେବତାଙ୍କର ହିଁ ମାୟା ।" ମୋତେ ପୁଣିଥରେ ତପଃଭ୍ରଷ୍ଟ କରାଇବା ପାଇଁ ଏ ଜାଲ ବିଛା ଯାଇଛି ।" କାମନାର ବଶବର୍ତ୍ତୀ ନ ହେବାପାଇଁ ସେ ମନେ ମନେ ଦୃଢ଼ନିଶ୍ଚିତ ହେଲେ । ସେ କାମନାର ତ ବଶ ହେଲେନାହିଁ କିନ୍ତୁ ରମ୍ଭାର ହାବଭାବ ଦେଖି ସେ କ୍ରୁଦ୍ଧ ହେଲେ ।

ସେ କହିଲେ—"ଦୁଷ୍ଟା ! ତୁ ମୋତେ ତପଃଭ୍ରଷ୍ଟ କରିବାପାଇଁ ଚାହୁଁଛୁ । ତୋର ଏ ପ୍ରକାର କାର୍ଯ୍ୟ ଅତ୍ୟନ୍ତ ନିନ୍ଦନୀୟ । ମୁଁ ତୋତେ ଅଭିଶାପ ଦେଉଛି—ତୁ ଦଶସହସ୍ର ବର୍ଷ ପର୍ଯ୍ୟନ୍ତ ପଥରଶିଳା ହୋଇ ପଡ଼ିରହ ।" ମୁନିଙ୍କର କ୍ରୋଧ ଦେଖି ବସନ୍ତ, କାମଦେବ, ତଥା ମଳୟାନିଳ ସମସ୍ତେ ଚାଲିଗଲେ, କିନ୍ତୁ ବିଚାରୀ ରମ୍ଭା ଉପରେ ହିଁ ମୁନି ବିଶ୍ୱାମିତ୍ରଙ୍କର ସମସ୍ତ କ୍ରୋଧ ପୁଞ୍ଜିଭୂତ ହେଲା । ତା'ପରେ ମୁନି ପୁଣି ଚିନ୍ତାକଲେ—"ଆରେ ! ମୁଁ କ'ଣ କଲି ? କାମନାକୁ ଜିଣିଲି କିନ୍ତୁ କ୍ରୋଧ ଦ୍ୱାରା ! କ୍ରୋଧ ତ କାମର ପୁତ୍ର ! ପୁଅ ଯାହାକୁ ଜିତିଗଲା ସେ ବାପ ଦ୍ୱାରା ମଧ୍ୟ ପରାଜିତ ବୋଲି ଜାଣିବାକୁ ପଡ଼ିବ । ହାୟ ! ମୋର ସମସ୍ତ ତପଃ କ୍ରୋଧ ଦ୍ୱାରା

Digitized by srujanika@gmail.com

ନଷ୍ଟ ହୋଇଗଲା । ଆଉ ମୁଁ କାହା ଉପରେ କ୍ରୋଧ କରିବି ନାହିଁ କିମ୍ବା କାମନାର ମଧ୍ୟ ବଶବର୍ତ୍ତୀ ହେବିନାହିଁ । ମୁଁ ଏବେ କାହା ସହିତ କଥାବାର୍ତ୍ତା କରିବି ନାହିଁ କିମ୍ବା ଶ୍ୱାସ ମଧ୍ୟ ନେବିନାହିଁ । ଭଗବାନ ମୋର ରକ୍ଷା କରିବେ । ଯେତେବେଳଯାଏ ମୋତେ ମହର୍ଷିପଦ ପ୍ରାପ୍ତ ନ ହୋଇଛି ସେତେବେଳଯାଏ ମୁଁ ଶ୍ୱାସରୋଧ କରି ରହିବି ।" ଏହାପରେ ନିଶ୍ଚେଷ୍ଟ କରି ମୁନି ଉତ୍ତର ଦିଗ ମଧ୍ୟ ଛାଡ଼ିଦେଲେ । ସେ ପୂର୍ବଦିଗକୁ ଆସି ସିଦ୍ଧାଶ୍ରମରେ ରହିବାକୁ ଲାଗିଲେ । ସେ ଏକ ହଜାର ବର୍ଷ ପାଇଁ ମୌନବ୍ରତ ଧାରଣ କରି ରହିଲେ । ମଝିରେ ମଝିରେ ଯଦିଓ ଅନେକ ବାଧାବିଘ୍ନ ଆସିଥିଲା ତଥାପି ସେ ଏକ ସହସ୍ର ବର୍ଷର ବ୍ରତ ସଫଳତାପୂର୍ବକ ସମାପ୍ତ କଲେ । ଏ ସମୟରେ ତାଙ୍କର ଶରୀରର କଙ୍କାଳମାତ୍ର ହିଁ ରହିଯାଇଥିଲା ।

ବ୍ରତ ସମାପ୍ତ କରି ମୁନି ବିଶ୍ୱାମିତ୍ର ବ୍ରତାନ୍ତ ସ୍ନାନ କଲେ ଏବଂ ପାରଣ ନିମନ୍ତେ ଯେମିତି ଅନ୍ନ ଭୋଜନ ପାଇଁ ବସିଛନ୍ତି ସେମିତି ବ୍ରାହ୍ମଣ ବେଶ ହୋଇ ଦେବରାଜ ଇନ୍ଦ୍ର ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ କହିଲେ—"ମୁନିବର ! ମୁଁ କ୍ଷୁଧାର୍ତ୍ତ । ମୋତେ କିଛି ଅନ୍ନ ଦିଅନ୍ତୁ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମନୁଷ୍ୟ ନିଜର ସର୍ବସ୍ୱ ଦାନ କରି ଦେଇପାରେ ମାତ୍ର କ୍ଷୁଧାର୍ତ୍ତ ନିଜର ଭୋଜନ ଦାନ କରିବା—ଏହା ଅତ୍ୟନ୍ତ କଠିନ କାର୍ଯ୍ୟ । କ୍ଷୁଧା ଅତ୍ୟନ୍ତ କଷ୍ଟଦାୟକ ବୋଲି କୁହାଯାଇଛି । କିନ୍ତୁ ମୁନି ବିଶ୍ୱାମିତ୍ର ସେଥିରେ ମଧ୍ୟ ଜୟଲାଭ କଲେ । ବିନା ବାକ୍ୟବ୍ୟୟରେ ସେ ନିଜର ସମ୍ପୂର୍ଣ୍ଣ ଖାଦ୍ୟ ବ୍ରାହ୍ମଣ ବେଶଧାରୀ ଇନ୍ଦ୍ରଙ୍କୁ ଦେଇଦେଲେ ତଥା ପୁନଶ୍ଚ ଏକ ସହସ୍ର ବର୍ଷପାଇଁ ସଂକଳ୍ପ କରି ତପସ୍ୟାରେ ବସିଗଲେ ।"

ବର୍ତ୍ତମାନ ମୁନି ଏପରି କଠିନ ତପସ୍ୟା କଲେ ଯେ ତାଙ୍କର ମସ୍ତକରୁ ଧୂଆଁ ନିର୍ଗତ ହେବାକୁ ଲାଗିଲା । ତିନି ଲୋକ ତାଙ୍କର ତପସ୍ୟାରେ ବିସ୍ମୟାଭିଭୂତ ହେଲେ । ଦେବତାମାନେ ସମସ୍ତେ ମିଶି ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ କହିଲେ—"ପ୍ରଭୋ ! ବିଶ୍ୱାମିତ୍ରଙ୍କଠାରେ ବର୍ତ୍ତମାନ ଅଣୁ ଚିହ୍ନଏ ହେଲେ ମଧ୍ୟ ପାପ ନାହିଁ । ଆମେ ସବୁ ପ୍ରକାରର ପରୀକ୍ଷା କରି ତାଙ୍କୁ ଜାଣିପାରିଲୁଣି । ବର୍ତ୍ତମାନ ସେ ମହର୍ଷି ପଦ ପାଇଁ ଉପଯୁକ୍ତ ହୋଇ ସାରିଲେଣି । ତାଙ୍କୁ ମହର୍ଷି ପଦ ପ୍ରଦାନ କରନ୍ତୁ ।"

ଦେବତାମାନଙ୍କର କଥା ଶୁଣି ଲୋକପିତାମହ ବ୍ରହ୍ମା ସେମାନଙ୍କର ମନ୍ତବ୍ୟକୁ ସ୍ୱାଗତ ଜଣାଇଲେ ଏବଂ ସେମାନଙ୍କୁ ସଙ୍ଗରେ ନେଇ ବିଶ୍ୱାମିତ୍ରଙ୍କ ସମୀପରେ ପହଞ୍ଚି କହିଲେ—"ମୁନିବର ! ଉଠ, ଉଠ, ତୁମର ମନସ୍କାମନା ପୂରଣ ହେଲା । ତୁମେ ଧର୍ମିଷ୍ଠ ବ୍ରାହ୍ମଣ ହୋଇଗଲ । ମୁଁ ତୁମକୁ ବ୍ରହ୍ମର୍ଷି ପଦ ପ୍ରଦାନ କରୁଛି । ଏ ସମସ୍ତ

Digitized by srujanika@gmail.com

ଦେବତାଗଣ ମଧ୍ୟ ତାହା ସହର୍ଷ ସ୍ୱୀକାର କରୁଛନ୍ତି । ଆଜିଠାରୁ ତୁମେ ମହର୍ଷି ହୋଇଗଲ ।"

ଦେବତାମାନଙ୍କ ସହିତ ବ୍ରହ୍ମର୍ଷିଙ୍କୁ ଦେଖି ମୁନିବର ବିଶ୍ୱାମିତ୍ର କହିଲେ— "ପ୍ରଭୋ ! ଯଦି ଆପଣ ମୋତେ ବ୍ରହ୍ମର୍ଷି ପଦ ପାଇଁ ଯୋଗ୍ୟ ବିବେଚିତ କରୁଛନ୍ତି ତେବେ ସମସ୍ତ ବେଦ ମୋର ହୃଦ୍‌ଗତ ହେଉ ଏବଂ ବ୍ରହ୍ମପୁତ୍ର ବଶିଷ୍ଠ ମଧ୍ୟ ମୋତେ ବ୍ରହ୍ମର୍ଷି ବୋଲି ସ୍ୱୀକାର କରନ୍ତୁ । ତା'ହେଲେ ମୋର ମନୋରଥ ପୂର୍ଣ୍ଣ ହେବ ।"

ଏହା ଶୁଣି ଦେବତାମାନେ ବଶିଷ୍ଠଙ୍କ ନିକଟକୁ ଗଲେ ଏବଂ ତାଙ୍କ ନିକଟରେ ନିବେଦନ କରି କହିଲେ—"ବ୍ରହ୍ମପୁତ୍ର ! ବର୍ତ୍ତମାନ ବିଶ୍ୱାମିତ୍ର ସମ୍ପୂର୍ଣ୍ଣ ନିଷ୍କାମ ହୋଇ ଯାଇଛନ୍ତି । ତାଙ୍କ ଶରୀରରେ କାମ କ୍ରୋଧର ଲେଶମାତ୍ର ଚିହ୍ନ ନାହିଁ । ଆପଣ ତାଙ୍କୁ ବ୍ରହ୍ମର୍ଷି ରୂପେ ସ୍ୱୀକାର କରନ୍ତୁ ।"

ବଶିଷ୍ଠ ମୁନି ତ ବ୍ରହ୍ମର୍ଷି ଥିଲେ । ତାଙ୍କୁ ବା କାହିଁକି କାମ କ୍ରୋଧ ଆସିଥାଆନ୍ତା ! ତେଣୁ ସେ ଖୁସିରେ ତାହା ସ୍ୱୀକାର କଲେ । ମୁନି ବିଶ୍ୱାମିତ୍ର ତାଙ୍କର ଚରଣ ବନ୍ଦନା କରିବା ନିମିତ୍ତ ତାଙ୍କ ନିକଟକୁ ଆସିବା ସମୟରେ ଅତ୍ୟନ୍ତ ସ୍ନେହଶୀଳ ହୋଇ କହିଲେ—"ଆସନ୍ତୁ ବ୍ରହ୍ମର୍ଷି ବିଶ୍ୱାମିତ୍ର !"

ବଶିଷ୍ଠଙ୍କ ମୁଖରୁ ବ୍ରହ୍ମର୍ଷି ଶବ୍ଦ ଶୁଣିବାକ୍ଷଣି ବିଶ୍ୱାମିତ୍ର ନିଜକୁ କୃତାର୍ଥ ମନେକଲେ । ବର୍ତ୍ତମାନ ହିଁ ତାଙ୍କୁ ବ୍ରହ୍ମର୍ଷି ପଦର ମହତ୍ତ୍ୱ ଜଣାଗଲା । ବର୍ତ୍ତମାନ ସେ ଜାଣିପାରିଲେ ଯେ କେତେ କଷ୍ଟ କଲେ ବ୍ରାହ୍ମବଳ ପ୍ରାପ୍ତି ହୁଏ ।

ଦୁଇ ବ୍ରହ୍ମର୍ଷି ବଶିଷ୍ଠ ତଥା ବିଶ୍ୱାମିତ୍ର ରାଗ-ଦ୍ୱେଷ-ଈର୍ଷା ତ୍ୟାଗକରି ଅତ୍ୟନ୍ତ ଶ୍ରଦ୍ଧାରେ ପରସ୍ପରସହ ବନ୍ଧୁ ହେଲେ । ସେ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତା ସ୍ଥାପନ ହେଲା । ଦେବତାମାନେ ସେମାନଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ । ମୁନି ବିଶ୍ୱାମିତ୍ର ସପ୍ତର୍ଷି ମଣ୍ଡଳରେ ପୂଜିତ ହୋଇ ଅଦ୍ୟାବଧି ସପ୍ତର୍ଷି ଲୋକରେ ବିଦ୍ୟମାନ ତଥା ଋଷି ରୂପରେ ସେ ପୃଥିବୀ ପାଇଁ କାର୍ଯ୍ୟ କରୁଛନ୍ତି ।

ସୂତମୁନି କହୁଛନ୍ତି—ମୁନିମାନେ ! ଏହି ପ୍ରକାର ଗାଧି-ନନ୍ଦନ ଭଗବାନ ବିଶ୍ୱାମିତ୍ର ଏ ଜନ୍ମରେ କ୍ଷତ୍ରିୟରୁ ବ୍ରାହ୍ମଣ ହୋଇଗଲେ । ତାଙ୍କର ଚରିତ୍ର ଅସୀମ ଅପର୍ଯ୍ୟାପ୍ତ । ମୁଁ ସଂକ୍ଷେପରେ କେବଳ ତାଙ୍କର କ୍ଷତ୍ରିୟରୁ ବ୍ରାହ୍ମଣ ହେବାର ବୃତ୍ତାନ୍ତ କହିଲି । ବର୍ତ୍ତମାନ ଆପଣ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?"

ଏହା ଶୁଣି ଶୌନକ ଋଷି ପଚାରିଲେ—"ସୂତ ମୁନି ! ଆପଣ ମଝିରେ କଥା ପ୍ରସଙ୍ଗରେ କହିଥିଲେ, ବିଶ୍ୱାମିତ୍ର ମୁନି ଶୁନଃଶେପର ଉଦ୍ଧାର କରିଛନ୍ତି । ଏହି

Digitized by srujanika@gmail.com

ଶୁନଃଶେପ କିଏ ଏବଂ ତାଙ୍କୁ ବିଶ୍ୱାମିତ୍ରଙ୍କର ପୁତ୍ରରୂପେ କାହିଁକି ଗଣନା କରାଯାଏ ? କୃପାକରି ଏହି ବିଷୟଟି ଆମକୁ ଶୁଣାନ୍ତୁ ।”

ଏହା ଶୁଣି ସୂତ ମୁନି କହିଲେ—“ଭଲ କଥା ମହାତ୍ମନ ! ମୁଁ ଆପଣଙ୍କୁ ଶୁନଃଶେପର ବୃତ୍ତାନ୍ତ ଶୁଣାଉଛି । ଆପଣ ମନଦେଇ ତାହା ଶୁଣନ୍ତୁ ।”

## ଛପ୍‌ପୟ

ଭୟୋ ପରସ୍ପର ଯୁଦ୍ଧ ଗାଧି-ସୁତ ରନ ମହିଁ ହାରେ ।
ବ୍ରହ୍ମ ତେଜ-ହିତ କରନ ତପସ୍ୟା ବନହିଁ ସିଧାରେ ॥
କାମ କ୍ରୋଧ ନେ ଆଇ ତପସ୍ୟା ନଷ୍ଟ କରାଇ ।
ଆଇ ରମ୍ଭା କବହୁଁ, ମେନକା କବହୁଁ ଆୟି ॥
ପୁନି ପୁନି ଆୟେ ବିଘ୍ନ ବହୁ, କିନ୍ତୁ ନିରାଶା ନହିଁ ଭୟି ।
ହେ ପ୍ରସନ୍ନ ବିଧି ବ୍ରହ୍ମ ଋଷି, କି ପଦବୀ ତବଇ ଦଈ ॥

Digitized by srujanika@gmail.com

# ବିଶ୍ୱାମିତ୍ରଙ୍କ ଦ୍ୱାରା
# ଶୁନଃଶେପର ଉଦ୍ଧାର

ଯୋ ରାତୋ ଦେବଯଜନେ ଦେବୈର୍ଗାଧିଷୁ ତାପସଃ ।
ଦେବରାତ ଇତି ଖ୍ୟାତଃ ଶୁନଃଶେପଃ ସ ଭାର୍ଗବଃ ॥

( ଶ୍ରୀ ଭା ୯ମ ସ୍କ-୧୬ଅ-୩୨ ଶ୍ଳୋକ )

**ଛପ୍‌ପୟ**

ମୁନିବର ବିଶ୍ୱାମିତ୍ର କରେ ତପ ପୁଷ୍କର ମାହୀଂ ।
ଶୁନଃଶେପ କୁଁ ଭୂପ ଯଜ୍ଞ-ବଳି ହିତ ଲୈ ଜାହୀଂ ॥
ମାମା ବିଶ୍ୱାମିତ୍ର ବିନୟ କେ ମନ୍ତ୍ର ଶିଖାୟେ ।
ଅତି ପ୍ରସନ୍ନ ସୁର ଭୟେ ଯଜ୍ଞ ମହଁ ପ୍ରାଣ ବଚାୟେ ॥
ମାତୁ ପିତା ତଙ୍ଗ ପୁନି ନହି, ଶୁନଃଶେପ କବହୁଁ ଗୟେ ।
ଗାଧି-ତନୟ ସୁତ ସମକରେ, ଭାର୍ଗବ ତେ କୌଶିକ ଭୟେ ।

ଶାସ୍ତ୍ରରେ ପିତା କେତେ ପ୍ରକାରର ତା'ର ବ୍ୟାଖ୍ୟା କରାଯାଇଛି । ସୃଷ୍ଟି କରିଥିବା ବ୍ୟକ୍ତି, ଲାଳନପାଳନ କରିଥିବା ବ୍ୟକ୍ତି, ବିଦ୍ୟାଦାନ କରିଥିବା ବ୍ୟକ୍ତି ତଥା ଅଭୟ ଦାନ କରିଥିବା ବ୍ୟକ୍ତି, ଏହିପରି ଅନେକ ପ୍ରକାରର ପିତା ଅଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରାଣରକ୍ଷା କରୁଥିବା ବ୍ୟକ୍ତି ସର୍ବୋତ୍ତମ ଓ ସର୍ବଶ୍ରେଷ୍ଠ । ଜଣେ ମୃତ୍ୟୁ ମୁଖରେ ଥିବାବେଳେ ତା'ର ଜୀବନରକ୍ଷା କରିବା ବ୍ୟକ୍ତି ମଧ୍ୟ ସର୍ବୋତ୍ତମ ପିତା ଅଟନ୍ତି । ନିଜର ମୃତ୍ୟୁ ତ ଆସି ହିଁ ଯାଇଥିଲା । ସେ ମୋତେ ମୃତ୍ୟୁ ମୁଖରୁ ମୁକୁଳାଇ ପୁନର୍ଜନ୍ମ ଦେଲେ । ତେଣୁ ସେ ଜନ୍ମଦାତାଙ୍କଠାରୁ ମଧ୍ୟ ଶ୍ରେଷ୍ଠ ପିତା ଅଟନ୍ତି । ଏପରି ପିତାଙ୍କ

---

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଦେବତାମାନଙ୍କ ଦ୍ୱାରା ଯଜ୍ଞରେ ଦିଆଯିବା ହେତୁ ଶୁନଃଶେପ ଗାଧିକୁଳରେ "ଦେବରାତ" ନାମରେ ପ୍ରସିଦ୍ଧ ତପସ୍ୱୀ ହୋଇଥିଲି । ତାହାଙ୍କୁ ଭୃଗୁବଂଶୀୟ ବୋଲି ମଧ୍ୟ କୁହାଗଲା ।"

Digitized by srujanika@gmail.com

ପାଖରେ ଯେ କୃତଘ୍ନତା ଦେଖାନ୍ତି, ତାଙ୍କର ଉପକାରକୁ ସ୍ୱୀକାର କରନ୍ତି ନାହିଁ ସେ ସବୁଠାରୁ ପାପୀ ବୋଲି ଗଣନା ହୁଅନ୍ତି । ବିପରୀତରେ ଯେ ତାଙ୍କ ପ୍ରତି କୃତଜ୍ଞତା ପ୍ରକଟ କରନ୍ତି, ପିତାଙ୍କ ସଦୃଶ ତାଙ୍କର ଆଦର କରନ୍ତି, ତାଙ୍କୁ ଏ ଜନ୍ମରେ ଯଶ ଏବଂ ବୈଭବ ପ୍ରାପ୍ତ ହୋଇଥାଏ ତଥା ମୃତ୍ୟୁପରେ ତାଙ୍କର ଅକ୍ଷୟ ଲୋକ ପ୍ରାପ୍ତି ହୋଇଥାଏ ।

ସୂତମୁନି କହୁଛନ୍ତି—"ମୁନିମାନେ ! ଆପଣମାନେ ମୋତେ ଶୁନଃଶେପର ଉଦ୍ଧାର କଥା ପଚାରିଛନ୍ତି । ମୁଁ ତାହା ଆପଣଙ୍କୁ ଶୁଣାଉଛି । ପ୍ରାଚୀନ କାଳରେ ବଡ଼ ବଡ଼ ଯଜ୍ଞରେ ବଳିଦାନ ହେଉଥିଲା । କଳିଯୁଗ ପାଇଁ ଯଜ୍ଞରେ ପଶୁ ହିଂସା ନିଷେଧ କରାଯାଇଛି । ଦେବତାମାନଙ୍କର ପ୍ରସନ୍ନତା ନିମନ୍ତେ ପଶୁମାନଙ୍କର ବଳି ଦିଆଯାଉଥିଲା । କେବେ କେବେ ନରବଳି ମଧ୍ୟ ହେଉଥିଲା । ସୂର୍ଯ୍ୟ ବଂଶର ପରମ ପରାକ୍ରମୀ ଧର୍ମାତ୍ମା ରାଜା ହରିଶ୍ଚନ୍ଦ୍ର ବରୁଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ନିଜ ପୁତ୍ରର ବଳିଦାନ ଦେବାପାଇଁ ଚାହୁଁଥିଲେ । ଇନ୍ଦ୍ରଙ୍କ କହିବା ଦ୍ୱାରା ରାଜପୁତ୍ର ରୋହିତ ବଣକୁ ଚାଲିଗଲେ । ତେଣୁ ରାଜା ଯେତେବେଳେ ବରୁଣ-ଯଜ୍ଞ କରିବାରେ ଅସମର୍ଥ ହେଲେ ତାଙ୍କୁ ଶାରୀରିକ ତଥା ମାନସିକ କଷ୍ଟ ହେଲା । ଏହି କଥା ରୋହିତ ବଣରେ ଥାଇ ଜାଣିବାକୁ ପାଇଲେ । ବର୍ତ୍ତମାନ ସେ ଗୋଟିଏ ଉପାୟ ଚିନ୍ତାକଲେ । ନିଜ ବଦଳରେ ଅନ୍ୟ ଏକ ପୁରୁଷକୁ କ୍ରୟ କରି ଯଦି ବଳି ଦିଆଯାଏ, ତାହାହେଲେ ବରୁଣ ପ୍ରସନ୍ନ ହେବା ସଙ୍ଗେ ସଙ୍ଗେ ପିତା ମଧ୍ୟ ସୁସ୍ଥ ହୋଇ ଉଠିବେ । ଖୋଜି ଖୋଜି ରୋହିତ ମହର୍ଷି ଅଜୀଗର୍ତ୍ତଙ୍କ ନିକଟରେ ପହଞ୍ଚିଲେ । ସେ ନିର୍ଦ୍ଧନ ଥିଲେ । ଧନାଭାବ ଯୋଗୁଁ ସେ ଅତ୍ୟନ୍ତ ଦୁଃଖୀ ଥିଲେ । ତାଙ୍କର ତିନିପୁତ୍ର ଥିଲେ । ରାଜପୁତ୍ର ରୋହିତ କହିଲେ—"ବ୍ରାହ୍ମଣ ! ମୋର ଗୋଟିଏ ସଙ୍କଟରୁ ଆପଣ ମୋତେ ରକ୍ଷା କରନ୍ତୁ । ମୋତେ ବରୁଣଙ୍କୁ ସନ୍ତୁଷ୍ଟ କରିବାପାଇଁ ପଡ଼ିବ । ସେଥିନିମନ୍ତେ ଗୋଟିଏ ବଳି-ପଶୁ ଆବଶ୍ୟକ । ଆପଣଙ୍କର ତିନିପୁତ୍ର ଅଛନ୍ତି । ସେମାନଙ୍କ ଭିତରୁ ଆପଣ ଜଣକୁ ମୋତେ ଦେଇ ଦିଅନ୍ତୁ । ମୁଁ ଆପଣଙ୍କୁ ଏହାର ପ୍ରତି ବଦଳରେ ଲକ୍ଷେ ଗାଈ ଏବଂ ଅସଂଖ୍ୟ ସୁବର୍ଣ୍ଣ-ମୁଦ୍ରା ଦେବି । ଆପଣଙ୍କ ଦାରିଦ୍ର୍ୟ ଦୁଃଖ ଦୂର ହୋଇଯିବ । ମୋର ମଧ୍ୟ କାର୍ଯ୍ୟ ସଫଳ ହେବ । ଆପଣଙ୍କର ବଂଶ ବିନାଶ ମଧ୍ୟ ହେବନାହିଁ । କାରଣ ବଂଶବୃଦ୍ଧି ନିମନ୍ତେ କୁଳର ପରମ୍ପରା ଅକ୍ଷୁଣ୍ଣ ରଖିବା ନିମନ୍ତେ ଆପଣଙ୍କର ଦୁଇପୁତ୍ର ଯଥେଷ୍ଟ ।

ରାଜପୁତ୍ର ରୋହିତଙ୍କର କଥା ଶୁଣି ଋଷି ଧର୍ମସଙ୍କଟରେ ପଡ଼ିଗଲେ । ଏକ ଦିଗରେ ଧନର ଲୋଭ, ଅନ୍ୟ ପକ୍ଷରେ ପୁତ୍ର ସ୍ନେହ । ପୁଣି ସେ ଚିନ୍ତାକଲେ—"ଧନହୀନ ହୋଇ ଆମେ ସମସ୍ତେ ଦୁଃଖ ପାଉଛୁ । ଇହ ଲୌକିକ ପାର ଲୌକିକ କୌଣସି କାର୍ଯ୍ୟ ଅମେ ଧନ ନଥାଇ କରିପାରୁ ନାହିଁ । ଯଦି ମୁଁ ମୋର ପୁତ୍ରମାନଙ୍କ ମଧ୍ୟରୁ ଜଣକୁ ଦେଇଦିଏ

Digitized by srujanika@gmail.com

ତେବେ ଚିରଦିନପାଇଁ ଦାରିଦ୍ର୍ୟ ମୋ'ଠାରୁ ଦୂର ହୋଇଯିବ । ଯଜ୍ଞରେ ବଳି-ପଶୁ ହେବାଦ୍ୱାରା ସେ ପୁତ୍ରର ନିଶ୍ଚୟ ସ୍ୱର୍ଗ ପ୍ରାପ୍ତି ହେବ ।" ଏଇ ସବୁ ଚିନ୍ତାକରି ଋଷି କହିଲେ—"ରାଜକୁମାର ! ଆପଣଙ୍କର କଥା ସତ୍ୟ, କିନ୍ତୁ ମୋତେ ମୋର ସବୁଠାରୁ ବଡ଼ପୁତ୍ର ଅତ୍ୟନ୍ତ ପ୍ରିୟ ତେଣୁ କୌଣସି ପ୍ରକାରରେ ମୁଁ ତା'କୁ ଦେଇପାରିବ ନାହିଁ ।"

ସମୀପରେ ମାତା ବସିଥିଲେ; ସେ କହିଲେ—"ସବୁଠାରୁ ଶ୍ରେଷ୍ଠ ମୋର ଅଧିକ ପ୍ରିୟପୁତ୍ର । ତେଣୁ ମୁଁ ତାକୁ ଦେବି ନାହିଁ ।"

ମାତା ପିତାଙ୍କର ଏହିସବୁ କଥା ଶୁଣି ଋଷିଙ୍କର ମଧ୍ୟମ ପୁତ୍ର ଶୁନଃଶେପ, ଯେକି ପରମ ବିଦ୍ୱାନ୍ ତଥା ତପସ୍ୱୀ ଥିଲେ । ସେ ବୁଝିଗଲେ ଯେ ମାତାପିତା ମୋତେ ହିଁ ଦେବାକୁ ଚାହୁଁଛନ୍ତି । ତେଣୁ ସେ କହିଲେ—"ରାଜପୁତ୍ର ! ମୋର ବଡ଼ଭାଇ ପିତାଙ୍କର ଅତ୍ୟନ୍ତ ପ୍ରିୟ ତଥା ଶ୍ରେଷ୍ଠଭାଇ ମୋର ମାତାଙ୍କର । ବାକି ରହିଗଲି ମୁଁ । ତେଣୁ ଆପଣ ମୋତେ ହିଁ ଆପଣଙ୍କର ଯଜ୍ଞର ବଳି ନିମନ୍ତେ ନେଇ ଚାଲନ୍ତୁ । ଆପଣ ମୋର ପିତାମାତାଙ୍କୁ ଯେଉଁ ଧନ ଦେବାପାଇଁ ଚାହୁଁଛନ୍ତି ଦେଇଦିଅନ୍ତୁ ।"

ଏହାଶୁଣି ରାଜପୁତ୍ର ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଏକ ହଜାର ଗାଈ, ସୁବର୍ଣ୍ଣ ମୁଦ୍ରା, ତଥା ଅନ୍ୟାନ୍ୟ ଯେଉଁ ସବୁ ବସ୍ତୁ ଋଷି ଚାହିଁଲେ ସବୁ ତାଙ୍କୁ ଦେଲେ । ସେ ସବୁ ଦେଇ ଶୁନଃଶେପଙ୍କୁ ରଥରେ ବସାଇ ପୁଷ୍କର କ୍ଷେତ୍ରକୁ ଆସିଲେ । ନିଜ ଜୀବନ ସମସ୍ତଙ୍କର ପ୍ରିୟ । ଶୁନଃଶେପ ବର୍ତ୍ତମାନ ନିଜ ଜୀବନ ବଞ୍ଚାଇବାର ଉପାୟ ଚିନ୍ତା କରିବାକୁ ଲାଗିଲେ । ସେ ଶୁଣିବାକୁ ପାଇଲେ ଯେ ଏଠାରେ ତାଙ୍କର ମାମୁଁ ବିଶ୍ୱାମିତ୍ର ତପସ୍ୟା କରୁଛନ୍ତି । ସେ ଚାଣ୍ଡାଳ ତ୍ରିଶଙ୍କୁଙ୍କୁ ମଧ୍ୟ ନିଜର ତପୋବଳରେ ସଶରୀର ସ୍ୱର୍ଗରେ ପହଞ୍ଚାଇ ଥିଲେ । ସେ ଚାହିଁଲେ ମୋର ପ୍ରାଣରକ୍ଷା କରିପାରିବେ । ଏହା ଚିନ୍ତାକରି ସେ ବିଶ୍ୱାମିତ୍ରଙ୍କ ନିକଟକୁ ଗଲେ ଏବଂ ତାଙ୍କ ସମ୍ମୁଖରେ ପଡ଼ିଗଲେ ।

ଦରିଦ୍ର ତଥା ଦୁଃଖୀ ଶୁନଃଶେପଙ୍କୁ ଦେଖି ବିଶ୍ୱାମିତ୍ର ଅତ୍ୟନ୍ତ ଦୟାପରବଶ ହୋଇ କହିଲେ—"କ'ଣ ଚାହୁଁଛୁ, ପିଲା ତୁ ! ତୋ'ର କଷ୍ଟ କଅଣ ? କେଉଁଥିପାଇଁ ତୁ ଏତେ ଦୀନହୀନ ହୋଇ ରହିଛୁ ?"

ଶୁନଃଶେପ କହିଲେ—"ମାମୁଁ ! ମୋର ପିତାମାତା ମୋତେ ତ୍ୟାଗ କରିଛନ୍ତି । ବର୍ତ୍ତମାନ ମୋର ସଂସାରରେ କେହି ନାହାନ୍ତି । ମୁଁ ଆପଣଙ୍କର ଶରଣ ନେଲି । ଆପଣ ଏପରି କରନ୍ତୁ ଯେ ମୋର ପ୍ରାଣରକ୍ଷା ମଧ୍ୟ ହେବ ତଥା ରାଜା ହରିଶ୍ଚନ୍ଦ୍ରଙ୍କର ମଧ୍ୟ କଲ୍ୟାଣ ହେବ ।"

Digitized by srujanika@gmail.com

ମୁନି ବିଶ୍ୱାମିତ୍ରଙ୍କର ତା' ଉପରେ ଅତ୍ୟନ୍ତ ଦୟା ଆସିଲା । ସେ ନିଜ ପୁତ୍ରମାନଙ୍କୁ ଡାକି କହିଲେ—"ତୁମମାନଙ୍କ ଭିତରୁ କେହି ଜଣେ ବଦଳରେ ବଳି-ପଶୁ ହେବାପାଇଁ ଯାଇ ପାରିବ କି ?"

ଏହା ଶୁଣି ସେମାନେ ସମସ୍ତେ କହିଲେ—"ପିତା ! ଅନ୍ୟର ପୁତ୍ରପାଇଁ ଆପଣ ଆମମାନଙ୍କୁ ବଳି-ପଶୁ କରିବାପାଇଁ ଚାହୁଁଛନ୍ତି । ଏହା କେଉଁ ପ୍ରକାରର ନ୍ୟାୟ ? ଆପଣଙ୍କର ଏପରି କଥା ଚିନ୍ତା ବି କରିବା ଅନାବଶ୍ୟକ ।"

ଏହା ଶୁଣି ବିଶ୍ୱାମିତ୍ରଙ୍କର ଅତ୍ୟନ୍ତ କ୍ରୋଧଜାତ ହେଲା କିନ୍ତୁ ସେ କିଛି କହିଲେ ନାହିଁ । ଏହା ଦେଖି ଶୁନଃଶେପ ହିଁ କହିଲେ—"ମାମୁଁ ! ଆପଣ ହିଁ ଆପଣଙ୍କ ମନ୍ତ୍ର ବଳରେ ମୋତେ ରକ୍ଷା କରନ୍ତୁ ।"

ଏହାଶୁଣି ବିଶ୍ୱାମିତ୍ର କହିଲେ—"ଭଲ କଥା । ଚାଲ ତେବେ ମୁଁ ବି ତୋ ସହିତ ଯାଉଛି ।" ଏହା କହି ବିଶ୍ୱାମିତ୍ର ମଧ୍ୟ ରୋହିତ ସହିତ ଗଲେ । ରୋହିତ ଅତ୍ୟନ୍ତ ପ୍ରସନ୍ନ ହେଲେ । ହରିଶ୍ଚନ୍ଦ୍ର ଯେତେବେଳେ ଶୁଣିଲେ ଯେ ତାଙ୍କର ପୁତ୍ର ପୁରୁଷ-ପଶୁ ଏବଂ ମହର୍ଷି ବିଶ୍ୱାମିତ୍ରଙ୍କ ସାଥିରେ ବଣରୁ ଫେରିଆସିଛି, ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ମୁନିଙ୍କର ଯଥୋଚିତ ସ୍ୱାଗତ କଲେ ତଥା ତାଙ୍କୁ ଯଜ୍ଞରେ ସମ୍ମିଳିତ ହେବାପାଇଁ ପ୍ରାର୍ଥନା କଲେ । ଅନ୍ୟାନ୍ୟ ବଡ଼ ବଡ଼ ମୁନିଋଷିମାନଙ୍କୁ ମଧ୍ୟ ନିମନ୍ତ୍ରଣ କଲେ । ସେହି ଯଜ୍ଞରେ ବ୍ରହ୍ମର୍ଷି ବଶିଷ୍ଠ ବ୍ରହ୍ମାଙ୍କର କାର୍ଯ୍ୟ କରିଥିଲେ । ଆତ୍ମବାନ୍ ଯଶସ୍ୱୀ ଜମଦଗ୍ନି ଅଧ୍ୱର୍ଯ୍ୟୁ ହୋଇଥିଲେ, ଅଯାସ୍ୟ ମୁନି ଉଦ୍‌ଗାତା, ଏବଂ ମହର୍ଷି ବିଶ୍ୱାମିତ୍ରଙ୍କୁ ହୋତା କରାଯାଇଥିଲା । ମୁନି ବିଶ୍ୱାମିତ୍ର ଶୁନଃଶେପକୁ ଏପରି ଦୁଇଟି ମନ୍ତ୍ର ଶିଖାଇ ଦେଇଥିଲେ ଯାହାକୁ ଶୁଣି ଦେବରାଜ ଇନ୍ଦ୍ର ମଧ୍ୟ ପ୍ରସନ୍ନ ହୋଇଯିବେ ।

ନର୍ତ୍ତକୀଙ୍କୁ ସମୟରେ ଲାଲ ବସ୍ତ୍ର ତଥା ମନ୍ଦାର ଫୁଲର ମାଳା ପିନ୍ଧାଇ ଶୁନଃଶେପକୁ ବଳି-ପଶୁର ଯୂପରେ ବାନ୍ଧି ଦିଆଗଲା । ସେ ଅତ୍ୟନ୍ତ ସୁନ୍ଦର କଣ୍ଠରେ ବିଶ୍ୱାମିତ୍ରଙ୍କଠାରୁ ଶିଖିଥିବା ମନ୍ତ୍ର ଦେବତାମାନଙ୍କ ସମ୍ମୁଖରେ ଗାନ କରିବାକୁ ଲାଗିଲା । ସେହି ମନ୍ତ୍ର ଶୁଣି ଦେବରାଜ ଇନ୍ଦ୍ର ଅତ୍ୟନ୍ତ ସନ୍ତୋଷ ଲାଭ କଲେ । ସେ ଶୁନଃଶେପକୁ ବର ମାଗିବାପାଇଁ କହିଲେ ।

ଶୁନଃଶେପ କହିଲା—"ଦେବରାଜ ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ଏହି ବର ଦିଅନ୍ତୁ ଯେ ମୋର ବଳିଦାନ ବିନା ହିଁ ରାଜାଙ୍କର ଯଜ୍ଞ ସଫଳ-ଭାବେ ସମାପ୍ତ ହୋଇଯାଉ ।" ଏହା ଶୁଣି ସବୁଦେବତାମାନେ ତା'ର ସମର୍ଥନ

Digitized by srujanika@gmail.com

କଲେ । ଦେବତାମାନେ ତାକୁ ବିଶ୍ୱାମିତ୍ରଙ୍କୁ ଦେଇଦେଲେ । ତେଣୁ ତା'ର ନାମ "ଦେବରାତ" ବୋଲି ମଧ୍ୟ ପ୍ରସିଦ୍ଧ ହେଲା ।

ବିଶ୍ୱାମିତ୍ର ମୁନି କହିଲେ—"ବର୍ତ୍ତମାନ ତୁ ନିଶ୍ଚିନ୍ତରେ ତୋ ନିଜ ଘରକୁ ଫେରି ଯାଇପାରୁ ।"

ଶୁନଃଶେପ କହିଲା—"ମାମୁଁ ! ମୋର ପିତାମାତା ଧନଲୋଭରେ ମୋତେ ତ୍ୟାଗ କରିଛନ୍ତି । ସେମାନଙ୍କ ଦୃଷ୍ଟିରେ ତ ମୁଁ ମରିଯାଇଛି । ଆପଣ ମୋର ପ୍ରାଣରକ୍ଷା କରିଛନ୍ତି । ତେଣୁ ଆପଣ ହିଁ ମୋର ପିତାମାତା ତଥା ସର୍ବସ୍ୱ ଅଟନ୍ତି । ମୁଁ ଆପଣଙ୍କର ଶରଣାଗତ ହୋଇଛି ।"

ତା'ର ଏ ପ୍ରକାର ଭକ୍ତିରେ ବିଶ୍ୱାମିତ୍ର ପରମ ଆନନ୍ଦ ଲାଭ କଲେ ଏବଂ କହିଲେ—"ଭଲ କଥା, ତୁ ହିଁ ମୋର ସର୍ବଶ୍ରେଷ୍ଠ ପୁତ୍ର ହେଲୁ ।"

ବିଶ୍ୱାମିତ୍ରଙ୍କର ଏକଶହ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଏକାବନତମ ପୁତ୍ରର ନାମ ମଧୁଚ୍ଛନ୍ଦା ଥିଲା ତଥା ସେ ସମସ୍ତଙ୍କଠାରୁ ଅଧିକ ବୁଦ୍ଧିମାନ ଓ ଯଶସ୍ୱୀ ଥିଲା । ତେଣୁ ତା'ର ନାମ ଅନୁସାରେ ସବୁ ପୁତ୍ରଙ୍କୁ ମଧୁଚ୍ଛନ୍ଦମ୍ କୁହାଯାଉଥିଲା । ଯେଉଁ ପଚାଶଜଣ ମଧୁଚ୍ଛନ୍ଦାଠାରୁ ବଡ଼ ଥିଲେ ସେମାନଙ୍କୁ ଜ୍ୟେଷ୍ଠ ମଧୁଚ୍ଛନ୍ଦମ୍ ଏବଂ ଯେଉଁ ପଚାଶଜଣ ତା'ଠାରୁ ସାନ ଥିଲେ ସେମାନଙ୍କୁ କନିଷ୍ଠ ମଧୁଚ୍ଛନ୍ଦମ୍ କୁହାଯାଉଥିଲା । ବିଶ୍ୱାମିତ୍ର ମୁନି ସର୍ବପ୍ରଥମେ ନିଜର ଜ୍ୟେଷ୍ଠ ମଧୁଚ୍ଛନ୍ଦମ୍ ପୁତ୍ରମାନଙ୍କୁ କହିଲେ—"ଦେଖ, ଏ ଦେବରାତ ତୁମ ସମସ୍ତଙ୍କ ମଧ୍ୟରେ ଜ୍ୟେଷ୍ଠ । ଏହାକୁ ତୁମେ ସମସ୍ତେ ନିଜର ବଡ଼ ଭାଇ ବୋଲି ସ୍ୱୀକାର କର ।"

ସେମାନେ ସମସ୍ତେ କହିଲେ—"ପିତା ! ଇଏ ତ ଆପଣ ଅନ୍ୟାୟ କରୁଛନ୍ତି । ନିଜର ପୁତ୍ରମାନଙ୍କୁ ଛାଡ଼ି ଅନ୍ୟର ପୁତ୍ରକୁ ସର୍ବଶ୍ରେଷ୍ଠ ବୋଲି କହୁଛନ୍ତି । ଆମେ ତାକୁ କୌଣସି ପ୍ରକାରରେ ନିଜର ବଡ଼ଭାଇ ବୋଲି ସ୍ୱୀକାର କରିବୁ ନାହିଁ ।"

ପୁତ୍ରମାନଙ୍କ ଦ୍ୱାରା ନିଜ ଆଜ୍ଞାର ଉଲ୍ଲଂଘନ ହେବାର ଦେଖି ବିଶ୍ୱାମିତ୍ରଙ୍କର ଅତ୍ୟନ୍ତ କ୍ରୋଧଜାତ ହେଲା । ସେ ସମସ୍ତଙ୍କୁ ଅଭିଶାପ ଦେଲେ—"ତୁମେ ସବୁ ମ୍ଲେଛ ହୋଇଯାଅ । ତୁମେମାନେ ଆର୍ଯ୍ୟଧର୍ମର ବିରୁଦ୍ଧାଚରଣ କରିଛ । ତେଣୁ ତୁମର ଗଣନା ଆର୍ଯ୍ୟମାନଙ୍କ ମଧ୍ୟରେ ନ ହୋଇ ସେମାନଙ୍କଠାରୁ ନିକୃଷ୍ଟ ମନୁଷ୍ୟମାନଙ୍କ ମଧ୍ୟରେ ହେବ ।"

ଏହି ପ୍ରକାର ଅଭିଶାପ ଦେଇ ସେ ପୁଣି କନିଷ୍ଠ ମଧୁଚ୍ଛନ୍ଦମ୍‌ମାନଙ୍କୁ ଡାକି କହିଲେ—"ବର୍ତ୍ତମାନ ତୁମେମାନେ କ'ଣ କହୁଛ କୁହ, ତୁମମାନଙ୍କର ମତ କଅଣ ?"

Digitized by srujanika@gmail.com

ମଧୁଚ୍ଛନ୍ଦା ତ ବୁଦ୍ଧିମାନ୍ ଥିଲେ । ସେ ହାତ ଯୋଡ଼ି କହିଲେ—"ପିତା ! ପୁତ୍ରମାନଙ୍କର ତ ସର୍ବସ୍ୱ ପିତା । ଦାସମାନଙ୍କର, ସ୍ତ୍ରୀମାନଙ୍କର ଓ ପୁତ୍ରମାନଙ୍କର ସ୍ୱାମୀ ତଥା ପିତାଙ୍କର ଉପସ୍ଥିତରେ କୌଣସି ପ୍ରକାରର ସ୍ୱାଧୀନ ଅଧିକାର ନାହିଁ । ଏ ସମସ୍ତଙ୍କୁ ପୋଷ୍ୟ ହିଁ କୁହାଯାଉଛି । ଆପଣ ଆମ୍ଭମାନଙ୍କର ସ୍ୱାମୀ, ଜନକ । ତେଣୁ ଆପଣ ଆମ୍ଭମାନଙ୍କୁ ଯେପରି ଆଜ୍ଞା ଦେବେ ଆମେ ସେହି ପ୍ରକାରରେ କାର୍ଯ୍ୟ କରିବୁ ।"

ନିଜର କନିଷ୍ଠ ପୁତ୍ରମାନଙ୍କ ପାଖରୁ ଏପରି ଯୁକ୍ତିଯୁକ୍ତ କଥା ଶୁଣି ବିଶ୍ୱାମିତ୍ର ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସେମାନଙ୍କୁ ଆଶୀର୍ବାଦ ଦେଇ କହିଲେ—"ତୁମେ ସବୁ ମୋ ପାଖରେ ଗୌରବ ତଥା ମୋର ଆଜ୍ଞା ପ୍ରତି ସମ୍ମାନ ପ୍ରଦର୍ଶନ କରିଛ । ତେଣୁ ମୁଁ ତୁମମାନଙ୍କୁ ଆଶୀର୍ବାଦ ଦେଉଛି ଯେ ତୁମେ ସମସ୍ତେ ପୁତ୍ରବାନ୍ ହୁଅ । ସଂସାରରେ ତୁମର ବଂଶ ପ୍ରସିଦ୍ଧି ଲାଭକରୁ । ଏଇ ଦେବରାତ ମଧ୍ୟ ଭାର୍ଗବ ନ ରହି କୌଶିକ ଗୋତ୍ରୀୟ ହୋଇ ରହିଲା । ତୁମେ ସମସ୍ତେ ଏହାକୁ ବଡ଼ ବୋଲି ମାନି ତା'ର ଆଜ୍ଞା ପାଳନ କର ।" ସମସ୍ତେ ଏହା ସ୍ୱୀକାର କଲେ ।

ସୂତମୁନି କହୁଛନ୍ତି—"ମୁନିମାନେ ! ବିଶ୍ୱାମିତ୍ରଙ୍କର ଏମାନେ ଶହେପୁତ୍ର ଥିଲେ । ଏମାନଙ୍କୁ ଛାଡ଼ି ଅଷ୍ଟକ, ହାରୀତ, ଜୟ, କ୍ରତୁମାନ ଆଦି ଅନେକ ପୁତ୍ର ଥିଲେ । ଦେବରାତର ଗଣନା ବିଶ୍ୱାମିତ୍ରଙ୍କ ବରଦାନ ଫଳରେ କୌଶିକ ଗୋତ୍ରରେ ହୋଇଗଲା । କିନ୍ତୁ ସେ ତାଙ୍କ ନିଜ ଗୋତ୍ରରେ ଶ୍ରେଷ୍ଠ ପ୍ରତିପାଦିତ ହୋଇଥିଲା । ତେଣୁ ତାକୁ ପ୍ରବର-ପ୍ରବର୍ତ୍ତକ ବୋଲି ମଧ୍ୟ କୁହାଯାଇଛି । କାରଣ ତା'ର ଦ୍ୱିତୀୟ ପ୍ରବର ହୋଇଥିଲା । ବିଶ୍ୱାମିତ୍ର ବ୍ରହ୍ମର୍ଷି ହେବା ପୂର୍ବରୁ ତାଙ୍କର ଯେଉଁ ପୁତ୍ରମାନେ ଜନ୍ମ ହୋଇଥିଲେ ସେମାନେ ସମସ୍ତେ କ୍ଷତ୍ରିୟ ବୋଲି ଧରି ନିଆଯାଇଥିଲା । ପରେ ଯେଉଁମାନେ ଜନ୍ମ ହେଲେ ସେମାନେ ବ୍ରାହ୍ମଣ ହୋଇଥିଲେ । ଯେଉଁମାନେ ଶାପ ପାଇ ମ୍ଲେଚ୍ଛ ହୋଇଥିଲେ ସେମାନେ ବୈଶ୍ୟ ଏବଂ ଶୂଦ୍ରରେ ପରିଗଣିତ ହୋଇଥିଲେ । ଏହିପରି କୌଶିକ ଗୋତ୍ରରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ତଥା ଶୂଦ୍ର—ସବୁ ଜାତି ମିଳିଥାଅନ୍ତି । ଏହି ପ୍ରକାର ବିଶ୍ୱାମିତ୍ରଙ୍କ ସନ୍ତାନମାନଙ୍କ ଦ୍ୱାରା କୌଶିକ ଗୋତ୍ରର ଅନେକ ଭାଗ ହୋଇଗଲା ।" ଏହା ମୁଁ ଅତି ସଂକ୍ଷେପରେ ବିଶ୍ୱାମିତ୍ରଙ୍କର ବଂଶପ୍ରସଙ୍ଗ ବର୍ଣ୍ଣନା କଲି । ବର୍ତ୍ତମାନ କୁହନ୍ତୁ "କେଉଁ ବିଷୟରେ କହିବି ?"

ଶୌନକ ମୁନି କହିଲେ—"ସୂତ ମୁନି ! ମନ ଭିତରେ ଗୋଟିଏ ସନ୍ଦେହ ରହିଗଲା । ଇଏ ଯେଉଁ ଶୁନଃଶେପ ଓ ବିଶ୍ୱାମିତ୍ରଙ୍କର ବୃତ୍ତାନ୍ତ ଆପଣ ଶୁଣାଇଲେ ପୂର୍ବାନ୍ତର ଏହି ପ୍ରସଙ୍ଗ ଆମେ ମହାରାଜ ମାନ୍ଧାତାଙ୍କର ଯଜ୍ଞ ସମ୍ବନ୍ଧରେ ମଧ୍ୟ ଶୁଣିଛୁ ।

Digitized by srujanika@gmail.com

ସେଠାରେ କୁହାଯାଇଛି ଯେ, ମହାରାଜ ମାନ୍ଧାତା ଶୁନଃଶେପଙ୍କୁ ନେଇ ଯାଇଥିଲେ। କିନ୍ତୁ ଆପଣ କହୁଛନ୍ତି ତାଙ୍କୁ ହରିଶ୍ଚନ୍ଦ୍ରଙ୍କର ପୁତ୍ର ରୋହିତ ନେଇ ଯାଇଥିଲେ। ଏଥିରେ ତ ବହୁତ ପ୍ରଭେଦ ଆସୁଛି । ଏହାଦ୍ୱାରା ମନେହେଉଛି ଯେପରିକି ଏ ସବୁ କାହାଣୀ କପୋଳକଳ୍ପିତ । ଯାହାକୁ ଯେତେବେଳେ ଯେଉଁ ରାଜାଙ୍କର ନାଁ ମନେପଡ଼ିଲା ସେ ସେଇ ନାମ ନେଇ ଗୋଟିଏ କଥା ଲେଖିଦେଲା। ନ ହେଲେ ରୋହିତ ଏବଂ ମାନ୍ଧାତା ଭିତରେ ଅନେକ ପୁରୁଷର ଅନ୍ତର ।"

ଏହାଶୁଣି ସୂତମୁନି ହସି ପକାଇଲେ ଏବଂ କହିଲେ—"ମହାରାଜ ! ବେଳେ ବେଳେ ଆପଣ କଳିଯୁଗବାସୀଙ୍କ ପରି ଶଙ୍କା ପ୍ରକଟ କରୁଛନ୍ତି। ହେ ବ୍ରାହ୍ମଣ ! ଏ ପ୍ରବାହ ରୂପେ ବହୁଥିବା ସଂସାର ସାଗରରେ କେଉଁ ଲହରି କେତେବେଳେ ଆସିଲା ତାହାର ଗଣନା କିଏ କରିପାରିବ ? ଆପଣ ତ ପ୍ରତିବର୍ଷ କଳ୍ପବାସ ନିମନ୍ତେ ତୀର୍ଥରାଜ ପ୍ରୟାଗ ଯାଉଛନ୍ତି। ଆପଣଙ୍କ ପରି ଅନେକ ମୁନିଋଷି ସେଠାକୁ ପ୍ରତିବର୍ଷ ଆସୁଛନ୍ତି। ସାଧାରଣତଃ ସେଠାରେ ମେଳା ପ୍ରତିବର୍ଷ ଏକାପରି ହୋଇଥାଏ। ରାଜ୍ୟ ତରଫରୁ କଳ୍ପବାସୀ ତଥା ଅଧିକାରୀମାନଙ୍କର ରହିବାର ବ୍ୟବସ୍ଥା ହୋଇଥାଏ। ସଙ୍ଗମ କେବେ ଆଗକୁ ମାଡ଼ିଯାଏ ତ କେବେ ପଛକୁ ଫେରିଯାଇଥାଏ। ତେଣୁ ସେହି ଅନୁସାରେ ମେଳାରେ ପରିବର୍ତ୍ତନ ମଧ୍ୟ ହୋଇଥାଏ । ମେଳାରେ ପ୍ରାୟ ସବୁ ଶ୍ରେଣୀର ସାଧୁମାନଙ୍କପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ଥାଏ । ଅଧିକାରୀମାନଙ୍କ ସ୍ଥାନ ମଧ୍ୟ ଯଥାରୀତି ରହିଥାଏ । ତଥାପି ବି ପ୍ରତିବର୍ଷ ଗଙ୍ଗା ଯମୁନା ଏଇ ଭୂମିର କଳ୍ପ କରିଥାଆନ୍ତି । ଏହାକୁ ନୂତନ କରନ୍ତି, ଏଥିରେ କିଛି ନା କିଛି ପରିବର୍ତ୍ତନ ହୋଇଥାଏ। କୌଣସି ମାଘରେ ଆମେ ପ୍ରତିଷ୍ଠାନପୁରର ନିକଟ ସଙ୍ଗମରେ ସ୍ନାନ କଲେ ଅନ୍ୟ ବର୍ଷ ସଙ୍ଗମ ସୋମେଶ୍ୱର ନିକଟରେ ପହଞ୍ଚିଗଲା। ତୃତୀୟ ବର୍ଷ ଆଦି-ମାଧବଙ୍କ ନିକଟରେ ଏବଂ ଚତୁର୍ଥ ବର୍ଷ ଅକ୍ଷୟବଟର ମୂଳରେ ପହଞ୍ଚିଗଲା। ବର୍ଣ୍ଣନା କରୁଥିବା ବ୍ୟକ୍ତି ଗ୍ରନ୍ଥିଯାକ ସ୍ଥାନରେ ଋଷିଙ୍କୁ ସ୍ନାନ କରିଥିବାର ଦେଖିଛି। ଯେତେବେଳେ ତା'ର ଯେଉଁ ଦୃଶ୍ୟଗୋଚର ହୋଇଛି; ତାହା ସେ ବର୍ଣ୍ଣନା କରିଛି। ବର୍ତ୍ତମାନ ଯଦି କେହି ଦ୍ୱିତୀୟ କୁତର୍କୀ କହେ ଯେ, ଏଥିରେ ତ ସାମ୍ୟ ରହୁନି, ତେବେ ତାହା ତା'ର ବୁଦ୍ଧିହୀନତା । ସଙ୍ଗମ ପ୍ରତିବର୍ଷ କ'ଣ ପ୍ରତିଦିନ ବି ବଦଳିବାରେ ଲାଗିଛି— ଆଜି ଏଠି ତ କାଲି ଅନ୍ୟ କେଉଁଠି। ଏହି ପ୍ରକାରେ କିଛି ଅଦଳ ବଦଳ ହୋଇ ଏହି ଘଟଣା ପ୍ରତ୍ୟେକ କଳ୍ପରେ ଘଟୁଛି। କେଉଁ କଳ୍ପରେ ମହାରାଜ ମାନ୍ଧାତା ଶୁନଃଶେପର ମୂଲ୍ୟ କରି ନେଇ ଯାଇଥିବେ । ଋଷିଙ୍କର ବର୍ଣ୍ଣନାବେଳେ ସେ ଘଟଣା ମନେ ପଡ଼ିଥିବ । କେଉଁ କଳ୍ପରେ ରୋହିତ ବି ତା'ର ମୂଲ୍ୟାଙ୍କନ କରିଥିବ। ଏଥିରେ ଅସଙ୍ଗତ କିଛି ନାହିଁ ।"

Digitized by srujanika@gmail.com

ଶୌନକ ଋଷି ହସି କହିଲେ—"ସୂତ ମୁନି ! ଆପଣ ଏ କଳ୍ପଭେଦ କଥା କହି ହିଁ ମୋତେ ଚମତ୍କୃତ କରି ଦେଉଛନ୍ତି । ଭାବନ୍ତୁ, ଯେତେବେଳେ ଆପଣ ଏଇ କଳ୍ପ ବିଷୟରେ କହୁଛନ୍ତି ସେତେବେଳେ ସବୁ ଗ୍ରନ୍ଥରେ ଏଇ ଗୋଟିଏ କଳ୍ପରେ ଏକ ପ୍ରକାର ଘଟଣା ରହିବା ଉଚିତ ।"

ସୂତ ମୁନି କହିଲେ—"ନା ମହାରାଜ ! ଏହା ଆବଶ୍ୟକ ନୁହେଁ । ବର୍ଣ୍ଣନା କରୁଥିବା ମୁନି ତ ନିର୍ଦ୍ଦିଷ୍ଟ ଜଣେ କେହି ନୁହନ୍ତି । ସମାଧିରେ ଯେଉଁ କଳ୍ପର ସ୍ମୃତି ଆସିଗଲା, ତାହାର ବର୍ଣ୍ଣନା ସେ କରିଥିଲେ । ଯେପରି ଭିନ୍ନ ଭିନ୍ନ କଳ୍ପରେ ଭିନ୍ନ ଭିନ୍ନ କଥା ଅଛି ସେହିପରି ଭିନ୍ନ ଭିନ୍ନ ମୁନିଙ୍କର କଳ୍ପନା ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ, ଆମକୁ ସେଇ ରାଜର୍ଷି ତଥା ବ୍ରହ୍ମର୍ଷିଙ୍କର ଚରିତ୍ର ବର୍ଣ୍ଣନାରୁ କେବଳ ଶିକ୍ଷା ଗ୍ରହଣ କରିବା ଉଚିତ—ସେ ବି କେବଳ ଅନୁକୂଳ ଶିକ୍ଷା । ଏପରି ନୁହେଁ ଯେ ବିଶ୍ୱାମିତ୍ରଙ୍କ ପରି ଋଷି ମେନକାର ଫାନ୍ଦରେ ପଡ଼ିଗଲେ, ତେଣୁ ଆମକୁ ମଧ୍ୟ ଜାଣିଶୁଣି କାମନାର ବଶହେବା ଆବଶ୍ୟକ । ତାଙ୍କ ଜୀବନୀରୁ ଆମେ ଏହି ଶିକ୍ଷା ନେବା ଯେ କାମନା ଅତ୍ୟନ୍ତ ପ୍ରବଳ । ସାଧକକୁ ପ୍ରତି ପଦକ୍ଷେପରେ ସାବଧାନ ରହିବା ଉଚିତ । ମାପିଚୁପି ପାଦ ପକାଇବା ଆବଶ୍ୟକ । ବାରମ୍ବାର ବିଘ୍ନ ଆସିଲେ ମଧ୍ୟ ନିରାଶ ନ ହୋଇ ଯେତେବେଳଯାଏ ସିଦ୍ଧି ନ ଆସିଛି, ସେତେବେଳଯାଏ ପ୍ରବଳ ପ୍ରଯତ୍ନ କରିବା ଆବଶ୍ୟକ । ଏଥିପାଇଁ ରାଜର୍ଷି, ବ୍ରହ୍ମର୍ଷି ତଥା ଭକ୍ତମାନଙ୍କ ଜୀବନୀରୁ ଅନୁକୂଳ ଶିକ୍ଷାର ଅନ୍ୱେଷଣ ଦରକାର ତଥା ଭଗବାନଙ୍କର ଚରିତ୍ରକୁ ତାଙ୍କର ହିଁ ଖେଳ ବୋଲି ମନେକରି ବିନା ତର୍କରେ ଶୁଣି ଆମୋଦିତ ହେବା ଆବଶ୍ୟକ ।"

ଶୌନକ କହିଲେ—"ହଁ ସୂତ ମୁନି ! ଆପଣଙ୍କ କଥା ସତ୍ୟ । ବର୍ତ୍ତମାନ ଆପଣ ମୁଖ୍ୟ କଥା ହିଁ ଶୁଣାନ୍ତୁ ।"

ଏହା ଶୁଣି ସୂତ ମୁନି କହିଲେ—"ମୁଖ୍ୟ କଥା କେଉଁ ପ୍ରକାରର ମହାରାଜ ?"

ଏହା ଶୁଣି ହସ ହସ ମୁହଁରେ ଶୌନକ କହିଲେ—"ସୂତ ମୁନି ! ଆପଣ ଶୀଘ୍ର ଭୁଲି ଯାଉଛନ୍ତି । ମୁଖ୍ୟ କଥା ତ ଆପଣ ଆହୁରି ବାକି ରଖିଛନ୍ତି, । ଆପଣ ଆମକୁ ଚନ୍ଦ୍ରବଂଶର ବର୍ଣ୍ଣନା ଶୁଣାଉଥିଲେ । ଚନ୍ଦ୍ରଙ୍କ ପୁତ୍ର ବୁଧ ଏବଂ ବୁଧଙ୍କ ପୁତ୍ର ପୁରୁରବା ହେଲେ । ପୁରୁରବାଙ୍କ ଉର୍ବଶୀଙ୍କ ଗର୍ଭରୁ ଆୟୁ, ଶ୍ରୁତାୟୁ, ସତ୍ୟାୟୁ, ରୟ, ବିଜୟ ଏବଂ ଜୟ—ଏଇ ଛଅ ପୁତ୍ର ହେବା କଥା ଆପଣ କହିଥିଲେ । ସର୍ବପ୍ରଥମେ ଆପଣଙ୍କୁ ପୁରୁରବାଙ୍କର ଜ୍ୟେଷ୍ଠ ପୁତ୍ର ଆୟୁଙ୍କ ବଂଶର ବର୍ଣ୍ଣନା କ୍ରମାନୁସାରେ କରିବା ଉଚିତ ଥିଲା । ଆପଣ ତାହା ନ କରି "ସୂଚୀ-କଟାହ ନ୍ୟାୟ"ରୁ ଶ୍ରୁତାୟୁ,

Digitized by srujanika@gmail.com

ସତ୍ୟାନ୍ତ ଆଦିଙ୍କର ବଂଶର ବର୍ଣ୍ଣନା କଲେ । ସେଇ ପ୍ରସଙ୍ଗରେ ବିଜୟ ବଂଶର ବର୍ଣ୍ଣନା କରୁଥିବାବେଳେ ପର୍ଶୁରାମ ଏବଂ ବିଶ୍ୱାମିତ୍ରଙ୍କ କଥା କହିଲେ । ଏଥର ଆପଣ ମୁଖ୍ୟ କଥା ଉପରକୁ ଆସନ୍ତୁ—ଆମ୍ଭଙ୍କ ବଂଶର ବର୍ଣ୍ଣନା କରନ୍ତୁ ।"

ଏହାଶୁଣି ସୂତ ମୁନି କହିଲେ—"ହଁ ମହାରାଜ ! କଥାର ସ୍ରୋତ ମୁଁ ତ ଭୁଲି ହିଁ ଯାଇଥିଲି । ଆପଣ ମନେପକାଇ ବହୁତ ଭଲ କଲେ ! ବର୍ତ୍ତମାନ ଆପଣ ଆମ୍ଭଙ୍କ ବଂଶର ବର୍ଣ୍ଣନା ଶୁଣନ୍ତୁ ।"

## ଛପ୍ପୟ

ଜନ ସୁତ ବିଶ୍ୱାମିତ୍ର ପ୍ରେମ ତେ ପାସ ବୁଲାୟେ ।<br>
ଦେବରାତହିଁ ଜ୍ୟେଷ୍ଠ କରେ ବନ୍ଧୁ ବିଧି ସମୁଝାୟେ ।।<br>
ଆଧେ ମାନେ ନହିଁ ଶାପ ଦେ ମ୍ଲେଛ ବନାୟେ ।<br>
ଶେଷନ କର ସ୍ୱୀକାର ମନୋବାଂଛିତ ବର ପାୟେ ।।<br>
ବ୍ରାହ୍ମଣ କ୍ଷତ୍ରିୟ ମ୍ଲେଛ ହୁଁ, କୌଶିକ ଗୋତ୍ରୀ ହ୍ୱୈ ରହେ ।<br>
ବିମଲ ଚରିତ ସଂକ୍ଷେପ ମହଁ, ଗାଧି-ତନୟ କେ କଛୁ କହେ ।।



Digitized by srujanika@gmail.com

# ପୁରୁରବାଙ୍କର ଜ୍ୟେଷ୍ଠ ସୁତ ଆୟୁଙ୍କର ବଂଶ

ଯଃ ପୁରୁରବସଃ ପୁତ୍ର ଆୟୁସ୍ତସ୍ୟାଭବନ୍ ସୁତାଃ ।
ନହୁଷଃ କ୍ଷତ୍ରବୃଦ୍ଧଶ୍ଚ ରଜୀ ରମ୍ଭଶ୍ଚ ବୀର୍ଯ୍ୟବାନ୍ ॥
ଅନେନା ଇତି ରାଜେନ୍ଦ୍ର ଶୃଣୁ କ୍ଷତ୍ରବୃଧୋଽନ୍ୱୟମ୍ ।

( ଶ୍ରୀ ଭା-୯ସ୍କ-୧୭-ଅ,୧ଶ୍ଳୋ )

## ଛପ୍ପୟ

ଅବ ପୁରୁରବା-ପୁତ୍ର ଆୟୁ କ ବରନୌ ସନ୍ତତ ।
ନହୁଷ, ରମ୍ଭ, ରଜି ଔର ଅନେନା କ୍ଷତ୍ରବୃଦ୍ଧ ଅତ ॥
ବୀର ପାଞ୍ଚ ସୁତ ଭୟେ ତାଁନ୍ହୁ ପରମ ଯଶସ୍ୱୀ ।
କ୍ଷତ୍ରବୃଦ୍ଧ କେ କାଶି, କାଶି କେ ରାଷ୍ଟ୍ର, ତପସ୍ୱୀ ॥
ଧନ୍ୱନ୍ତରୀ ତନ ସୁତ ତନୟ, ବନ ହର ପ୍ରକଟିତ ହ୍ୱୈ ଗୟେ ।
କୁବଳୟାଶ୍ୱ ଜ୍ଞାନୀ ନୃପତ, ପଞ୍ଚମ ପୀଡ ମହଁ ଭୟେ ।

ଯେତେବେଳେ ଯେଉଁ ଅବତାରର ଆବଶ୍ୟକତା ଆସେ ସେତେବେଳେ ଭଗବାନ ସେହି ଅବତାର ହୋଇ ସଂସାର ଉଦ୍ଧାର କରନ୍ତି । ସଂସାରରେ ଆଧି ବ୍ୟାଧିକୁ ହିଁ ଦୁଃଖର କାରଣ କୁହାଯାଇଛି । ମାନସିକ ଦୁଃଖର ନାମ ଆଧି ତଥା

---

ଶ୍ରୀ ଶୁକଦେବ କହୁଛନ୍ତି—"ରାଜେନ୍ଦ୍ର ! ମହାରାଜ ପୁରୁରବାଙ୍କର ଯେଉଁ ଜ୍ୟେଷ୍ଠ ପୁତ୍ର ଆୟୁ ଥିଲେ, ତାଙ୍କର, ନହୁଷ କ୍ଷତ୍ରବୃଦ୍ଧ, ରଜି, ବୀର୍ଯ୍ୟବାନ୍, ରମ୍ଭ ଏବଂ ଅନେନା ଏପରି ପାଞ୍ଚ ପୁତ୍ର ହେଲେ । ବର୍ତ୍ତମାନ ତୁମେ କ୍ଷତ୍ରବୃଦ୍ଧଙ୍କ ବଂଶର ବର୍ଣ୍ଣନା ଶ୍ରବଣ କର ।"

Digitized by srujanika@gmail.com

ଶାରୀରିକ ଦୁଃଖକୁ ବ୍ୟାଧି କୁହାଯାଏ । ଜ୍ଞାନ ଦ୍ୱାରା ଆଧିର ନାଶ ଏବଂ ଔଷଧ ଦ୍ୱାରା ବ୍ୟାଧିର ନାଶ ହୋଇଥାଏ । ଭଗବାନ ଜ୍ଞାନର ପ୍ରସାର କରିବା ନିମନ୍ତେ କପିଳ ଆଦି ରୂପରେ ଅବତରିତ ହୁଅନ୍ତି ଏବଂ ବ୍ୟାଧିର ନାଶ କରନ୍ତି ଧନ୍ୱନ୍ତରି ରୂପରେ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ବର୍ତ୍ତମାନ ମୁଁ ଆପଣଙ୍କୁ ବୁଧ-ପୁତ୍ର ପ୍ରତିଷ୍ଠାନପୁରାଧୀଶ ମହାରାଜ ପୁରୁରବାଙ୍କର ଜ୍ୟେଷ୍ଠପୁତ୍ର ଆୟୁଙ୍କ ବଂଶ ବୃତ୍ତାନ୍ତ ଶୁଣାଉଛି । ଧର୍ମାତ୍ମା ମହାରାଜ ଆୟୁଙ୍କର ନହୁଷ, କ୍ଷତ୍ରବୃଦ୍ଧ, ରଜୀ, ରମ୍ଭ ଏବଂ ଅନେନା—ଏ ପାଞ୍ଚ ପୁତ୍ର ହେଲେ । ଏମାନଙ୍କ ମଧ୍ୟରେ ନହୁଷ ଜ୍ୟେଷ୍ଠ ତଥା ଶ୍ରେଷ୍ଠ ଥିଲେ । ରାଜର୍ଷି ନହୁଷଙ୍କର ଚରିତ ଅତ୍ୟନ୍ତ ଅଦ୍ଭୁତ ଥିଲା । ତା'ର ବର୍ଣ୍ଣନା ମୁଁ ପରେ କରିବି । ପ୍ରଥମେ ଆପଣମାନେ ଅତ୍ୟନ୍ତ ସଂକ୍ଷେପରେ ତାଙ୍କର କନିଷ୍ଠ ଭ୍ରାତାଙ୍କର ବଂଶଚରିତ ଶୁଣନ୍ତୁ । ମହାରାଜ ଆୟୁଙ୍କର ଦ୍ୱିତୀୟ ପୁତ୍ର କ୍ଷତ୍ରବୃଦ୍ଧଙ୍କର ସୁହୋତ୍ର ନାମକ ପୁତ୍ର ହେଲା । ସୁହୋତ୍ରଙ୍କର କାଶ୍ୟପ, କୁଶ ଏବଂ ଗୃତ୍ସମଦ—ଏପରି ତିନି ପୁତ୍ର ହେଲେ । ଗୃତ୍ସମଦଙ୍କର ପୁତ୍ର ମହାରାଜ ଶୁନକ ହେଲେ ଏବଂ ଶୁନକଙ୍କର ହିଁ ପୁତ୍ର ଋଗ୍‌ବେଦୀୟ ମୁନିବର ଶୌନକ ହେଲେ । କି'ଣ ଶୌନକ ମୁନି ! ସେହି ଶୌନକ ଆପଣଙ୍କଠାରୁ ପୃଥକ୍ ଅନ୍ୟ ଏକ ରାଜର୍ଷି ଅଟନ୍ତି । ଆପଣଙ୍କ ଜନ୍ମ ତ ଭୃଗୁବଂଶରେ ହୋଇଛି ।"

ମହାରାଜ ସୁହୋତ୍ରଙ୍କର ପ୍ରଥମ ପୁତ୍ର କାଶ୍ୟପଙ୍କର କାଶିନାମକ ପୁତ୍ର ହେଲା । ସେ କାଶୀରେ ନିଜର ରାଜଧାନୀ ନିର୍ମାଣ କଲେ । ମହାରାଜ କାଶିଙ୍କର ରାଷ୍ଟ୍ର ନାମକ ପୁତ୍ର ହେଲା । ରାଷ୍ଟ୍ରଙ୍କର ପୁତ୍ର ହେଲେ ଦୀର୍ଘତମା । ସେ ମହାରାଜ ଦୀର୍ଘତମା ମୁନିବର ଦୀର୍ଘତମାଙ୍କଠାରୁ ପୃଥକ୍ ଅଟନ୍ତି । ଏହି ଦୀର୍ଘତମାଙ୍କର ପୁତ୍ର ହିଁ ଆୟୁର୍ବେଦର ପ୍ରବର୍ତ୍ତକ ଭଗବାନ ଧନ୍ୱନ୍ତରି ହେଲେ, ଯେ ସଂସାରରେ ଆୟୁର୍ବେଦ ପ୍ରଚାର କଲେ । ସେ ଭଗବାନଙ୍କର ଅଂଶାବତାର, ତାଙ୍କର ନାମ ନେଲେ ସମସ୍ତ ରୋଗର ନାଶ ହୋଇଥାଏ ।

ଏହାଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ଆପଣ ଆଗରୁ କହିଛନ୍ତି ଯେ ଯେତେବେଳେ ଦେବତା ଏବଂ ଅସୁରମାନେ ମିଶି ସମୁଦ୍ର ମନ୍ଥନ କରିଥିଲେ ସେତେବେଳେ ଭଗବାନଙ୍କର ଅଂଶାବତାର ଭଗବାନ ଧନ୍ୱନ୍ତରି ଅମୃତ କଳସ ସହିତ ପ୍ରକଟ ହୋଇଥିଲେ, ଯାହାଙ୍କ ହାତରୁ ଅସୁରଗଣ ଅମୃତ କଳସ ଛଡ଼େଇ ନେଲେ । ଏହିପରି ଆପଣ ପ୍ରଥମେ ଧନ୍ୱନ୍ତରିଙ୍କର ଉତ୍ପତ୍ତି କ୍ଷୀରସାଗରରେ ହୋଇଥିଲା ବୋଲି କହିଥିଲେ । ବର୍ତ୍ତମାନ ଆପଣ କହୁଛନ୍ତି ଯେ ଧନ୍ୱନ୍ତରି କାଶିରାଜ ମହାରାଜ ଦୀର୍ଘତମାଙ୍କର ପୁତ୍ର ଥିଲେ । ଏହିପରି ବିରୋଧ ମତପ୍ରକାଶ କାହିଁକି ହେଉଛି ?"

Digitized by srujanika@gmail.com

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ଭଗବାନ ଧନ୍ୱନ୍ତରୀ ତ ନିତ୍ୟ ଅଟନ୍ତି । ତାଙ୍କର ପ୍ରାଦୁର୍ଭାବ-ତିରୋଭାବ ସଦାସର୍ବଦା ଲାଗିରହିଛି । ଥରେ ସେ ସମୁଦ୍ରରେ ଉପସ୍ଥିତ ହୋଇ ସେଠାରେ ହିଁ ତିରୋହିତ ହୋଇଯାଇଥିଲେ । ପୁନଶ୍ଚ ସେ କାଶୀରାଜଙ୍କ ନିକଟରେ ରାଜାରୂପରେ ଅବତୀର୍ଣ୍ଣ ହେଲେ ଏବଂ ସୁଶ୍ରୁତ-ସଂହିତା ଆଦି ବିସ୍ତାର କଲେ । ପୃଥିବୀରେ ସେ ହିଁ ଆୟୁର୍ବେଦ ଶାସ୍ତ୍ରର ପ୍ରଚାର କରିଥିଲେ । ପ୍ରଥମେ ବୈଦ୍ୟମାନଙ୍କୁ ଯଜ୍ଞରେ ଭାଗନେବାପାଇଁ ଅନୁମତି ଦିଆଯାଉ ନଥିଲା । କିନ୍ତୁ ଏହି ଭଗବାନ ଅବତାର ନେଇ ଯଜ୍ଞରେ ଅଂଶ ଗ୍ରହଣ କଲେ । ତାଙ୍କର ନାମ-ସଂକୀର୍ତ୍ତନରେ ହିଁ ସମସ୍ତ ରୋଗର ନାଶ ହୋଇଥାଏ । ଭଗବାନ୍ ଧନ୍ୱନ୍ତରୀ ଏହି ସିଦ୍ଧାନ୍ତ ପ୍ରଚାରିତ କଲେ ଯେ ସଂସାରରେ ଏପରି କୌଣସି ବସ୍ତୁ ନାହିଁ ଯାହାର କି ଔଷଧୀୟ ଗୁଣ ନାହିଁ । କେବଳ ସେଗୁଡ଼ିକର ଗୁଣ ଜାଣି ତା'ର ପ୍ରକୃତ ପ୍ରୟୋଗ କରିବାର ବ୍ୟକ୍ତି ହିଁ ଦୁର୍ଲଭ । ହରିଡ଼ା ପ୍ରଥମେ ମଧ୍ୟ ଥିଲା, କିନ୍ତୁ ଲୋକେ ତା'ର ଗୁଣ ବିଷୟରେ ପରିଚିତ ନ ଥିଲେ । ଭଗବାନ୍ ଧନ୍ୱନ୍ତରୀ ହିଁ କହିଲେ ଯେ ହରିଡ଼ା ସଦାସର୍ବଦା ପଥ୍ୟରୂପେ ବ୍ୟବହାର କରାଯାଇପାରେ । ଏହା ରସାୟନ ଅଟେ ।"

ଏକଦା ସଂସାରରେ ଏ ମିଛକଥା କିଏ ପ୍ରଚାର କରିଦେଲା ଯେ ଭଗବାନ ଧନ୍ୱନ୍ତରୀ ପୃଥିବୀ ଛାଡ଼ି ଚାଲିଗଲେ । ସମସ୍ତ ଲୋକେ ଏହାଶୁଣି କାନ୍ଦିବାକୁ ଲାଗିଲେ । ସମସ୍ତଙ୍କୁ କାନ୍ଦିବାର ଦେଖି ହରିଡ଼ା ବଡ଼ ଗର୍ବର ସହିତ କହିଲା—"ଧନ୍ୱନ୍ତରୀ ଯଦି ପୃଥିବୀ ଛାଡ଼ି ଚାଲିଗଲେ ତେବେ କିଛି ଚିନ୍ତାନାହିଁ । ଯାହା ହେବାର ଥିଲା ହୋଇଗଲା । ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ ।"

ଲୋକମାନେ କହିଲେ—"ସଂସାରରେ ନିତିଦିନ ନୂଆ ନୂଆ ରୋଗ ସୃଷ୍ଟି ହେଉଛି । ତା'ର ନାଶ କିଏ କରିବ ?"

ହରିତକୀ କହିଲା—"ଯେତେଦିନ ଯାଏ ମୁଁ ପୃଥିବୀ ଉପରେ ଅଛି ସେତେ-ଦିନଯାଏ କିଛି ଚିନ୍ତା କରିବାର ଆବଶ୍ୟକତା ନାହିଁ । ମୁଁ ସବୁରୋଗ ନାଶ କରିପାରିବି ।" ହରିତକୀଠାରୁ ଏପରି କଥା ଶୁଣି ଜଣେ ଋଷି, ରାଜର୍ଷି ଧନ୍ୱନ୍ତରୀଙ୍କ ତାଙ୍କ ନିକଟକୁ ଗଲେ, ଏବଂ କହିଲେ—"ମହାରାଜ ହରିତକୀ ତ ବଡ଼ ଗର୍ବରେ କହୁଛି ଯେ ତା'ର ପ୍ରୟୋଗ ଦ୍ୱାରା ସବୁ ରୋଗରୁ ମୁକ୍ତି ମିଳିବ । ସେ ସମସ୍ତ ରୋଗନାଶ କରିବାପାଇଁ ସମର୍ଥ ।"

ଧନ୍ୱନ୍ତରୀ କହିଲେ—"ଅଚ୍ଛା, ତୁମେ ଯାଇ ତାକୁ ପଚାର ହାଲୁକା ଜ୍ୱରରେ ତୋର ଉପଯୋଗ କିପରି ହେବ ?"

Digitized by srujanika@gmail.com

ଋଷି ଯାଇ ହରଡ଼ାକୁ ସେଇଠା କହିଲେ—"ତୁ ତ କହୁଛୁ ଯେ ତୁ ସବୁ ରୋଗ ନାଶ କରିବାରେ ସମର୍ଥ, ତେବେ କହ ହାଲୁକା ଜ୍ୱର ହେଲେ ତୋ'ର କି ପ୍ରକାର ଉପଯୋଗ ହୋଇପାରିବ ?"

ଏହା ଶୁଣି ହରିତକୀ ଖିଲ ଖିଲ ହୋଇ ହସିଦେଲା ଏବଂ କହିଲା—"ଏ କଥା ମିଛ ଯେ ଧନ୍ୱନ୍ତରୀ ଏଇ ପୃଥିବୀକୁ ପରିତ୍ୟାଗ କରି ଚାଲି ଯାଇଛନ୍ତି । ସେ ପୃଥିବୀ ଉପରେ ହିଁ ଅଛନ୍ତି ।"

ଋଷି କହିଲେ—"ଏ କଥା ତୁ କେମିତି ଜାଣିଲୁ ?"

ହରିତକୀ କହିଲା—"ଏ କଥା ଧନ୍ୱନ୍ତରୀଙ୍କ ଛଡ଼ା ଅନ୍ୟ କେହି ହିଁ ଜାଣନ୍ତି ନାହିଁ ଯେ ହାଲୁକା ଜ୍ୱରରେ ମୋର କୌଣସି ପ୍ରକାର ଉପଯୋଗ ହୋଇପାରିବ ନାହିଁ । ତାଙ୍କଠାରୁ ଶୁଣି ହିଁ ଆପଣ କହୁଛନ୍ତି ।" ମୁନି ଏହା ଶୁଣି ହସିଦେଲେ ଏବଂ ହରିତକୀ କଥାକୁ ସମର୍ଥନ ଜଣାଇଲେ ।

ଏହାପରେ ଧନ୍ୱନ୍ତରୀଙ୍କର ମହତ୍ତ୍ୱକୁ ଚରାଚର ସବୁ ପ୍ରକାରର ପ୍ରାଣୀ ଜାଣନ୍ତି । ବହୁତ ବଡ଼ ବଡ଼ ଲୋକ ତାଙ୍କଠାରୁ ଆୟୁର୍ବେଦ ଶିକ୍ଷା କରିବା ନିମନ୍ତେ ଆସୁଥିଲେ । ଏଇ ଅବତାର କାର୍ତ୍ତିକ କୃଷ୍ଣ ତ୍ରୟୋଦଶୀ (ଧନତେରସ) ଦିନ ଅବତୀର୍ଣ୍ଣ ହୋଇଥିଲା । ଆଜି ପର୍ଯ୍ୟନ୍ତ ଏଇ ତ୍ରୟୋଦଶୀକୁ ଧନ୍ୱନ୍ତରୀ ଜୟନ୍ତୀ ବୋଲି ପାଳନ କରାଯାଉଛି । ତାଙ୍କର ପୁତ୍ର ହେଉଛନ୍ତି କେତୁବାନ ।

କେତୁବାନଙ୍କର ପୁତ୍ର ହେଉଛନ୍ତି ଭୀମରଥ । ଭୀମରଥଙ୍କର ପୁତ୍ର ଦିବୋଦାସ ହେଲେ । ଦିବୋଦାସଙ୍କର ପୁତ୍ର ଦ୍ୟୁମାନ୍ ହେଲେ ଯାହାଙ୍କୁ ପ୍ରତର୍ଦ୍ଦନ କୁହାଯାଉଥିଲା । ସେହି ଶତ୍ରୁଜିତ୍‌ଙ୍କ ପୁତ୍ର ଋତଧ୍ୱଜ କୁବଳୟାଶ୍ୱ ନାମରେ ମଧ୍ୟ ପ୍ରସିଦ୍ଧ ହୋଇଥିଲେ ।

ଏହାଶୁଣି ଶୌନକ ଋଷି ପଚାରିଲେ—"ସୂତ ମୁନି ! ମହାରାଜ ଶତ୍ରୁଜିତ୍ ଦ୍ୟୁମାନଙ୍କ ପୁତ୍ର ଋତଧ୍ୱଜଙ୍କର ନାମ କୁବଳୟାଶ୍ୱ କାହିଁକି ହେଲା ? କୃପା କରି ଆମକୁ ଏହାର କାରଣ କହନ୍ତୁ ।"

ଏହାଶୁଣି ସୂତ କହିଲେ—ମହାରାଜ ! ଶତ୍ରୁଜିତ୍ ପୁତ୍ର ଋତଧ୍ୱଜ ଅତ୍ୟନ୍ତ ଧର୍ମାତ୍ମା ତଥା ବ୍ରାହ୍ମଣ-ଭକ୍ତ ଥିଲେ । ଯେତେବେଳେ ସେ କୁମାର ଥିଲେ, ମହର୍ଷି ଗାଲବ ତାଙ୍କୁ ଏକ ଘୋଡ଼ା ଆଣି ଦେଇଥିଲେ ଯାହାର ନାମ ଥିଲା 'କୁବଳୟ' ଯେଉଁ ସମଗ୍ର ପୃଥିବୀ-ମଣ୍ଡଳ ପରିକ୍ରମା କରି ଆସିପାରୁଥିଲା । ସେଇ ଘୋଡ଼ା ଉପରେ ସବାର ହୋଇଥିବା ହେତୁ ମହାରାଜ ଋତୁଧ୍ୱଜଙ୍କର ନାମ କୁବଳୟାଶ୍ୱ ହୋଇଥିଲା । ଏ

Digitized by srujanika@gmail.com

ବିଷୟରେ ଅତିସୁନ୍ଦର କାହାଣୀଟିଏ ଅଛି•ଯାହାକି ଅନ୍ୟ କୌଣସି ରାଜାଙ୍କ ବିଷୟରେ ଶୁଣାଯାଏନି । ତାଙ୍କ ଧର୍ମପତ୍ନୀଙ୍କ ନାମ ଥିଲା ମଦାଲସା ଯେ ଅତ୍ୟନ୍ତ ବ୍ରହ୍ମବାଦିନୀ ତଥା ଜ୍ଞାନ ପାରଙ୍ଗତା ଥିଲେ । ତାଙ୍କର ଚରିତ୍ର ମଧ୍ୟ ଅଲୌକିକ ।"

ଏହାଶୁଣି ଅତ୍ୟନ୍ତ ଉତ୍ସୁକ ହୋଇ ଶୌନକ ପଚାରିଲେ—"ସୂତ ମୁନି ! ଆମେ ରାଜର୍ଷି କୁବଳୟାଶ୍ୱଙ୍କର ସମ୍ପୂର୍ଣ୍ଣ ଚରିତ ଶୁଣିବାକୁ ଚାହୁଁଛୁ । ମହର୍ଷି ଗାଲବ ତାଙ୍କୁ ଏପରି ଅଦ୍ଭୁତ ଘୋଡ଼ା କାହିଁକି ଦେଲେ ? ମୁନିଙ୍କ ପାଖକୁ କୁବଳୟ ନାମକ ଏହି ଅଶ୍ୱ ଆସିଲା କେଉଁଠୁ, ଯେ କି ଅଳ୍ପସମୟ ମଧ୍ୟରେ ସମ୍ପୂର୍ଣ୍ଣ ପୃଥିବୀ ପରିକ୍ରମା କରିପାରୁଥିଲା ? ମହାରାଜଙ୍କ ପତ୍ନୀ ମହାରାଣୀ ମଦାଲସା କାହାର କନ୍ୟା ଥିଲେ ? ତାଙ୍କର ଚରିତ କିପରି ଅଦ୍ଭୁତ ? ଏହି ସବୁ ବୃତ୍ତାନ୍ତ ଆମକୁ ଶୁଣାନ୍ତୁ ।"

ଏହାଶୁଣି ସୂତ କହିଲେ—"ଭଲ କଥା ମହାରାଜ ! ବର୍ତ୍ତମାନ ମୁଁ ମହାରାଜ ଋତଧ୍ୱଜ ଅଥବା କୁବଳୟାଶ୍ୱଙ୍କର ଚରିତ ଶୁଣାଉଛି । ଆପଣମାନେ ସାବଧାନରେ ଶୁଣନ୍ତୁ ।"

## ଛପ୍ପୟ

ଭୂପ ଶତ୍ରୁଜିତ୍ ବତ୍ସ ଋତଧ୍ୱଜ ଶୂର-ବୀର ଅତି ।
ପାଳନ୍ତି ପିତୃ-ସମ ପ୍ରଜା ଧର୍ମ ମହିଁ ରଖନ୍ତି ସଦା ମତି ।।
ଗାଲବ ଦେନ୍ହୋ ଅଶ୍ୱ ପବନ-ମନ ତେଁ ଦ୍ରୁତଗାମୀ ।।
ତା ପୈ ଚଢ଼ି ପତାଲ କେତୁ ମାରୟୋ ଖଲନାମୀ ।।
କୁବଲୟାଶ୍ୱ କ କୃପା ତେଁ, ନୃପ ପତାଲ ତଲ ମହଁ ଗୟୋ ।
ବିଶ୍ୱାବସୁ ତନୟା ତହାଁ, ମିଲି ପାଇ ପ୍ରମୁଦିତ ଭୟୋ ।।



Digitized by srujanika@gmail.com

# ମହାରାଜ ଋତଧ୍ୱଜ ବା କୁବଳୟାଶ୍ୱ

**ସ ଏବ ଶତ୍ରୁଜିଦ୍ ବତ୍ସ ଋତଧ୍ୱଜ ଇତୀରିତଃ ।**
**ତଥା କୁବଳୟାଶ୍ୱେତି ପ୍ରୋକ୍ତୋଽଲର୍କାଦୟସ୍ତତଃ ॥**

- (ଶ୍ରୀ ଭା-୯ସ୍କ-୧୭ଅ-୬ ଶ୍ଳୋକ)

## ଛପ୍‌ପୟ

ସଙ୍ଗ ମଦାଳସା ଲଇ ଋତଧ୍ୱଜ ପିତୃ-ପୁର ଆୟେ ।
ଜନନୀ-ପିତୁ ଅତ ସୁଧର ବଧୂ ଲଖି ଅଙ୍ଗ ନା ସମାୟେ ॥
ଅତ ପ୍ରଗାଢ଼ତର ପ୍ରେମ ପରସ୍ପର କୁଁଅର-କୁଁଅର ମହଁ ।
ଜନ-ରକ୍ଷା ହିତ ଗୟେ ଅଶ୍ୱ ଚଢ଼ି ନୃପ-ସୁତ ବନ ମହଁ ॥
ତାଲ କେତୁ ପାତାଲ କୋ, ବନ୍ଧୁ କପଟ ତେ ବନେଯା ମୁନି ।
ଛଳ ମଦାଳସା ତେ କରୟୋ, ମରୀ ପ୍ରାଣପତ ମୃତ୍ୟୁ ସୁନି ॥

ପ୍ରେମର ଆଧାର ଉପରେ ହିଁ ପ୍ରାଣୀ ବଞ୍ଚିରହେ । ପ୍ରେମ ବିନା ଜୀବନ ନାହିଁ, ରସ ନାହିଁ, ସ୍ଫୁର୍ତ୍ତି ନାହିଁ । ପ୍ରେମ ହିଁ ପ୍ରାଣୀମାନଙ୍କର ପରିଷ୍କୃତ ପୁଣ୍ୟପଥ । ଜଳ ଏବଂ ବାୟୁ ବିନା ପ୍ରାଣୀମାନଙ୍କର ବଞ୍ଚିରହିବା ସମ୍ଭବ ହୋଇପାରେ କିନ୍ତୁ ପ୍ରେମ ବିନା ଜୀବନ ଧାରଣ କରିବା ଅସମ୍ଭବ । ଯେ ଯେତେ ମହାନ୍ ତଥା ଉତ୍ତମ ତା'ର ପ୍ରେମ ମଧ୍ୟ ସେତିକି ବିଶାଳ ଏବଂ ବିସ୍ତୃତ । ଅନେକଙ୍କର ଧନପ୍ରତି ପ୍ରେମ ଥାଏ । ଧନପାଇଁ ସେମାନେ ଦେହକୁ ତୁଚ୍ଛ ମଣନ୍ତି । ଅନେକଙ୍କର ପ୍ରାଣ ପ୍ରତି ପ୍ରଗାଢ଼ ପ୍ରେମ ଥାଏ ।

---

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଦ୍ୟୁମାନ୍‌ଙ୍କର ନାମ ହିଁ ଶତ୍ରୁଜିତ୍ ଥିଲା । ତାଙ୍କର ପୁତ୍ର ଋତଧ୍ୱଜ ନାମରେ ବିଖ୍ୟାତ ଥିଲେ, ଯାହାଙ୍କର ଅନ୍ୟନାମ କୁବଳୟାଶ୍ୱ ମଧ୍ୟ ଥିଲା । ତାଙ୍କର ଅଲର୍କ ପ୍ରଭୃତି ଅନେକ ପୁତ୍ର ହୋଇଥିଲେ ।"

Digitized by srujanika@gmail.com

ପ୍ରାଣରକ୍ଷା ନିମନ୍ତେ ସେମାନେ ଗୁରୁତର ଅପରାଧ ମଧ୍ୟ କରିପାରନ୍ତି । ଅନେକଙ୍କର ସ୍ୱଧର୍ମ ପ୍ରେମ ଥାଏ । ସ୍ୱଧର୍ମ ନିମନ୍ତେ ହସି ହସି ସେମାନେ ପ୍ରାଣ ବିସର୍ଜନ କରିଦିଅନ୍ତି । ଅନେକଙ୍କର ମାତା, ପିତା, ଗୁରୁ, ଭାଇ, ପତ୍ନୀ, ଇତ୍ୟାଦି ତଥା ଅନ୍ୟ କେଉଁ ଆତ୍ମୀୟ-ସ୍ୱଜନଙ୍କ ସହିତ ଏପରି ପ୍ରେମ ହୋଇଯାଏ ଯେ ସେମାନଙ୍କର ବିୟୋଗରେ ପ୍ରାଣ ରଖିବା ମଧ୍ୟ ଅସମ୍ଭବ ହୋଇପଡ଼େ ! ଯେଉଁମାନେ ଏହି ଅନିତ୍ୟ ଶରୀରକୁ ତୁଚ୍ଛ ମନେକରି ପ୍ରିୟତମଙ୍କ ନିମନ୍ତେ ପ୍ରାଣକୁ ପରିତ୍ୟାଗ କରିଦିଅନ୍ତି ସେମାନେ ସଂସାରରେ ଯଶସ୍ୱୀ ହୁଅନ୍ତି । ସେମାନଙ୍କର ଜୀବନ ସାର୍ଥକ ହୋଇଥାଏ । ନ ହେଲେ ଏହି ଦେହପ୍ରତି ମୋହ କରି, ଏହାକୁ ଆହାର ଦ୍ୱାରା ପୁଷ୍ଟ କରି, କାଉ, କୁକୁର ପ୍ରଭୃତି ଜୀବ ମଧ୍ୟ ଅନେକ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହୁଛନ୍ତି ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଆପଣମାନେ ମୋତେ ପ୍ରଶ୍ନ କରିଥିଲେ ଯେ ମହାରାଜ ଋତଧ୍ୱଜଙ୍କର ନାମ କାହିଁକି କୁବଳୟାଶ୍ୱ ହୋଇଥିଲା ମୁଁ ଏହା ଆପଣମାନଙ୍କୁ ଏବେ ଶୁଣାଉଛି ।"

ମହାରାଜ ଦ୍ୟୁମାନ ପ୍ରତର୍ଦ୍ଦନ ତଥା ଶତ୍ରୁଜିତ୍ ଏହି ନାମରେ ସଂସାରରେ ପ୍ରସିଦ୍ଧ ଥିଲେ । ଯଥାର୍ଥରେ ସେ ସମସ୍ତ ଶତ୍ରୁଙ୍କୁ ନିଜ ପ୍ରଭାବରେ ଜିଣି ଯାଇଥିଲେ । ସେଥିନିମନ୍ତେ ତାଙ୍କର ଶତ୍ରୁଜିତ୍ ନାମ ସାର୍ଥକ ଥିଲା । ସେ ବହୁତ ବଡ଼ ବଡ଼ ଯଜ୍ଞ କରିଥିଲେ, ଅନେକ ପ୍ରକାରର ଉତ୍ତମ ଦାନ ଦେଇଥିଲେ । ସଂସାରରେ ତାଙ୍କର ଅପାର ଐଶ୍ୱର୍ଯ୍ୟ ଥିଲା । ଦେବରାଜ ଇନ୍ଦ୍ରଙ୍କ ପରି ସେ ପୃଥିବୀ ଉପରେ ହିଁ ସବୁପ୍ରକାର ସୁଖ ଉପଭୋଗ କରୁଥିଲେ । ତାଙ୍କ ନିକଟରେ ଅନ୍ନ, ପାନ, ମଣି, ମାଣିକ୍ୟ, ବାହନ, ବସ୍ତ୍ର ଆଭୂଷଣ ଆଦି କୌଣସି ବସ୍ତୁର ଅଭାବ ନ ଥିଲା । ମହାରାଜଙ୍କର ଋତଧ୍ୱଜ ନାମରେ ପରମନନ୍ଦନୀ, ଶୂରବୀର ବିଦ୍ୱାନ୍ ପ୍ରିୟଦର୍ଶନ ଏବଂ ଚରିତ୍ରବାନ୍ ସୁନ୍ଦର ପୁତ୍ରଟିଏ ଥିଲା । ସେ ବୁଦ୍ଧିରେ ବୃହସ୍ପତିଙ୍କ ସମାନ, ପରାକ୍ରମରେ ଦେବରାଜ ଇନ୍ଦ୍ରଙ୍କ ସମାନ, ରୂପ ସୌନ୍ଦର୍ଯ୍ୟରେ ଅଶ୍ୱିନୀକୁମାର ଏବଂ କାମଦେବଙ୍କ ସମାନ ଥିଲେ । ଐଶ୍ୱର୍ଯ୍ୟରେ କୁବେର ସମ, ଦୃଢ଼ତାରେ ଯମ ସମ, ସତ୍ୟରେ ଧର୍ମସମ ତଥା ସୌନ୍ଦର୍ଯ୍ୟରେ ଚନ୍ଦ୍ରମାସମ ଥିଲେ । ଏପରି ପୁତ୍ରପାଇ ପୃଥ୍ୱୀପତି ଶତ୍ରୁଜିତ୍ ସର୍ବଦା ନିଜ ଭାଗ୍ୟର ପ୍ରଶଂସା କରୁଥିଲେ । ରାଜକୁମାରଙ୍କର ସହୃଦୟତା, ସହନଶୀଳତା, ମୃଦୁଳତା, ସର୍ବପ୍ରିୟତା, କାର୍ଯ୍ୟକୁଶଳତା, ଗୁଣଗ୍ରାହକତା ଆଦି ସଦ୍‌ଗୁଣ ନିମନ୍ତେ ସମସ୍ତ ପ୍ରଜା ଆବାଳବୃଦ୍ଧ ନରନାରୀ ତାଙ୍କୁ ପ୍ରାଣଠାରୁ ମଧ୍ୟ ଅଧିକ ଶ୍ରଦ୍ଧା କରୁଥିଲେ । ରାଜକୁମାର ସମସ୍ତଙ୍କ ସହିତ ଅତ୍ୟନ୍ତ ଉଦାର ସହିତ ମିଶୁଥିଲେ ତଥା ଅଳ୍ପସମୟ ମଧ୍ୟରେ ମିଶୁଥିବା ବ୍ୟକ୍ତିଙ୍କ ସହିତ ଆତ୍ମୀୟତା ସ୍ଥାପନ କରି ଦେଉଥିଲେ ।

Digitized by srujanika@gmail.com

ଏକଦା ମହାରାଜ ସଭାରେ ମନ୍ତ୍ରିମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବସିଥିଲେ । ରାଜକୁମାର ଋତଧ୍ୱଜ ମଧ୍ୟ ତାଙ୍କ ନିକଟରେ ଥିଲେ । ଏହି ସମୟରେ ଦ୍ୱାରପାଳ ଆସି କହିଲା—"ପୃଥ୍ୱୀନାଥ ! ମହର୍ଷି ଗାଲବ ଏକ ଅତ୍ୟନ୍ତ ସୁନ୍ଦର ଅଶ୍ୱ ନେଇ ଦ୍ୱାରଦେଶରେ ଅପେକ୍ଷାରତ । ସେ ଆପଣଙ୍କର ଦର୍ଶନ ପାଇଁ ଇଚ୍ଛୁକ ।"

ମହର୍ଷି ଗାଲବଙ୍କର ଆଗମନ ଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ଅଶ୍ୱଟିଏ ନେଇ ଆସିବା ବିଷୟ ରାଜାଙ୍କର କୌତୂହଳ ବଢ଼ାଇ ଦେଇଥିଲା । ତତ୍‌କ୍ଷଣାତ୍ ରାଜା, ମନ୍ତ୍ରୀ, ପୁରୋହିତ ତଥା ରାଜକୁମାରଙ୍କୁ ନେଇ ଗାଲବ ଋଷିଙ୍କର ସ୍ୱାଗତ ନିମନ୍ତେ ବାହାରିଲେ । ଦ୍ୱାରଦେଶକୁ ଆସି ସେ ବିଧିବତ୍ ଭାବରେ ମହର୍ଷିଙ୍କର ପୂଜା କଲେ ଏବଂ ତାଙ୍କୁ କୁଶଳ ପ୍ରଶ୍ନ ପଚାରିଲେ । ମୁନି ମଧ୍ୟ ରାଜାଙ୍କର ସମସ୍ତ ପରିବାର ଏବଂ ଆଶ୍ରିତମାନଙ୍କ କୁଶଳପ୍ରଶ୍ନ କଲେ । ତାହାପରେ ରାଜା ଅଶ୍ୱସହ ମୁନିଙ୍କୁ ଭିତରକୁ ନେଇଗଲେ । ଅଶ୍ୱକୁ ରାଜସଭା ସମ୍ମୁଖରେ ବାନ୍ଧି ଦିଆଗଲା ତଥା ମୁନି ସ୍ୱର୍ଣ୍ଣ ସିଂହାସନରେ ବସିଲେ । ରାଜା, ରାଜକୁମାର ତଥା ସମସ୍ତ ଉପସ୍ଥିତ ବ୍ୟକ୍ତି ଅତ୍ୟନ୍ତ ଉତ୍ସୁକତାର ସହିତ ଅଶ୍ୱକୁ ଦେଖୁଥିଲେ । ସେମାନେ ସମସ୍ତେ ଏହି ଅଦ୍ଭୁତ ଅଶ୍ୱ ସମ୍ବନ୍ଧରେ ଜାଣିବାକୁ ଇଚ୍ଛୁକ ଥିଲେ ।

ସମସ୍ତଙ୍କର ଉତ୍ସୁକତାକୁ ଲକ୍ଷକରି ରାଜା ଶେଷରେ ମୁନିଙ୍କୁ ପଚାରି ଦେଲେ—"ବ୍ରହ୍ମନ୍ ! ଅତ୍ୟନ୍ତ ସୁନ୍ଦର ଏହି ଅଶ୍ୱକୁ ଆପଣ କେଉଁଠୁ ପାଇଲେ ? ଆପଣ ଏହାକୁ ସାଥୀରେ ଧରି ବୁଲୁଛନ୍ତି କାହିଁକି ? ଏହି ଅଶ୍ୱ ବିଷୟରେ କୌଣସି ବିଶେଷ ଇତିହାସ ଯଦି ଥାଏ ତାହା ଜାଣିବା ନିମନ୍ତେ ଆମେ ସମସ୍ତେ ଅତ୍ୟନ୍ତ ଉତ୍ସୁକ ।"

ମୁନି କହିଲେ—"ହଁ ରାଜା ! ଏହି ଅଶ୍ୱ ସାଧାରଣ ଅଶ୍ୱ ନୁହେଁ ଏହାର ଇତିହାସ ମଧ୍ୟ ଅତି ବିଚିତ୍ର ।"

ରାଜା କହିଲେ—"ବ୍ରହ୍ମନ୍ ! ଯଦି ଆମଠାରୁ ଗୁପ୍ତ ରଖିବା ଆବଶ୍ୟକ ନ ଥାଏ କୃପାକରି ଏହି ବିଷୟ ଆମକୁ ଅବଶ୍ୟ ଶୁଣାନ୍ତୁ ।"

ମହର୍ଷି ଗାଲବ କହିଲେ—"ରାଜା ! ଆପଣଙ୍କଠାରୁ କ'ଣ ବା ଗୁପ୍ତ ରଖିବି ! ଆପଣଙ୍କୁ ତ ଶୁଣାଇବା ନିମନ୍ତେ ହିଁ ଆସିଛି । କଥା ହେଉଛି ମୁଁ ମୋର ନିଜ ଆଶ୍ରମରେ ମୌନରହି, ଫଳାହାର କରି ତପସ୍ୟା କରୁଛି । କିନ୍ତୁ ଗୋଟିଏ ରାକ୍ଷସ ଆସି ମୋର ତପସ୍ୟାରେ ବିଘ୍ନ ସୃଷ୍ଟି କରୁଛି ।"

Digitized by srujanika@gmail.com

ରାଜା ପଚାରିଲେ—"ଭଗବନ୍ ! ଏଇ ରାକ୍ଷସ କିଏ ଏବଂ ସେ ଆପଣଙ୍କ ତପସ୍ୟାରେ କେଉଁଭଳି ବିଘ୍ନ କରୁଛି ?"

ମୁନି ଗାଲବ କହିଲେ—"ରାଜା ! ଏ ଦୁଷ୍ଟ ଦୈତ୍ୟର ନାମ ପାତାଳକେତୁ ; ସେ ପାତାଳରେ ରହେ । ପ୍ରତିଦିନ ପାତାଳବମ୍ମ ଦେଇ ବାହାରି ମୋର ଆଶ୍ରମ ଆକ୍ରମଣ କରୁଛି । ସେହି ଦୁଷ୍ଟ ଦୈତ୍ୟ କେବେ ହାତୀ, କେବେ ସିଂହ, କେବେ ଶୂକର, କେବେ ବାଘ, କେବେ ଅନ୍ୟ ହିଂସ୍ର ଜନ୍ତୁର ରୂପଧରି ଆସି ଆଶ୍ରମକୁ ନଷ୍ଟ ଭ୍ରଷ୍ଟ କରୁଛି ଏବଂ ଆଶ୍ରମବାସୀଙ୍କୁ ପୀଡ଼ା ଦେଉଛି ।"

ରାଜା କହିଲେ—"ମହର୍ଷି ! ଆପଣ ଏତେବଡ଼ ତପସ୍ୱୀ ? ଆପଣଙ୍କ ସମ୍ମୁଖରେ ଏହି ନୀଚ ଦୈତ୍ୟ ଏପରି ଅଶିଷ୍ଟତା କାହିଁକି କରୁଛି ? ଆପଣଙ୍କର ଗୋଟିଏ ମାତ୍ର ହୁଙ୍କାରରେ ତ ସେ ଭସ୍ମ ହୋଇଯିବ ।"

ମୁନି କହିଲେ—"ରାଜା ! ଆପଣଙ୍କ କଥା ସତ । ମୁଁ ତପ ବଳରେ ତାକୁ ଭସ୍ମ କରି ଦେଇପାରେ । କିନ୍ତୁ ଶାପ ଦେବାଦ୍ୱାରା ତପ ନଷ୍ଟ ହୋଇଥାଏ । ସେଥିପାଇଁ ମୁଁ ତାକୁ ଶାପ ଦେବାପାଇଁ ଚାହୁଁ ନାହିଁ । ବଡ଼ କଷ୍ଟରେ ଉପାର୍ଜିତ ତପସ୍ୟାରେ ଅପବ୍ୟୟ କରିବା ଉଚିତ ନୁହଁ ।"

ରାଜା ପଚାରିଲେ—"ତା'ହେଲେ ଆପଣ କ'ଣ ଚାହୁଁଛନ୍ତି ?"

ମୁନି କହିଲେ—"ହଁ ରାଜା ! ସେଇକଥା ତ ମୁଁ ଆପଣଙ୍କୁ ଶୁଣାଇବାକୁ ଆସିଥିଲି । ଗୋଟିଏ ଦିନର କଥା, ମୁଁ ମୋର ଆଶ୍ରମରେ ବସିଥାଏ । ସେଇ ରାକ୍ଷସ ଅତ୍ୟାଚାରର ଯୋଗୁଁ ମୋର ମନ ଭଲ ନଥାଏ । ଏହି ସମୟରେ ଅକସ୍ମାତ୍ ଆକାଶରୁ ଏଇ ଅଶ୍ୱ ଖସି ମୋର ଆଶ୍ରମରେ ଛିଡ଼ା ହୋଇଗଲା । ପ୍ରଥମେ ତ ମୁଁ ଭାବିଲି ଯେ ସେଇ ଦୈତ୍ୟ ଅଶ୍ୱରୂପ ନେଇ ଆସିଛି । କିନ୍ତୁ କିଛି ସମୟପରେ ଆକାଶବାଣୀ ହେଲା—"ଗାଲବ ! ତୁମେ ଚିନ୍ତାକର ନାହିଁ । ଏଇ ଅଦ୍ଭୁତ ଅଶ୍ୱ ଭଗବାନ ଆଦିତ୍ୟ ତୁମ ପାଖକୁ ପଠାଇଛନ୍ତି । ଏହାର ଗତି ଅବ୍ୟାହତ ରହିବ । ଏ ଆକାଶ-ପାତାଳ ସବୁଠି ଗତିକରି ପାରିବ । ଏ କ୍ଲାନ୍ତ ନ ହୋଇ ସମଗ୍ର ଭୂମଣ୍ଡଳର ପରିକ୍ରମା କରିପାରିବ । ଏ ସମୁଦ୍ର ଜଳ ଉପରେ ଚାଲିପାରିବ, ପର୍ବତ ଚଢ଼ିପାରିବ । ସଂସାରରେ ଏ 'କୁବଳୟ' ନାମରେ ବିଖ୍ୟାତ ହେବ । ଏହାରି ଉପରେ ଚଢ଼ି ମହାରାଜ ଶତ୍ରୁଜିତଙ୍କ ପୁତ୍ର ଋତଧ୍ୱଜ ତୁମକୁ ପ୍ରତିଦିନ କ୍ଲେଶ ଦେଉଥିବା ଦୁଷ୍ଟ ପାତାଳକେତୁକୁ ବଧ କରିବେ । ଏଇ ଅଶ୍ୱ ଆରୋହଣ ହେତୁ ରାଜକୁମାରଙ୍କ ନାମ ମଧ୍ୟ 'କୁବଳୟାଶ୍ୱ' ରୂପରେ ବିଖ୍ୟାତ ହେବ । ତେଣୁ ହେ ରାଜା ! ଏଇ ଆକାଶବାଣୀ ଶୁଣି ତଥା ଏଇ ଅଶ୍ୱକୁ ନେଇ ମୁଁ ଆପଣଙ୍କ ନିକଟକୁ ଆସିଛି । ଆପଣ ରାଜା,

Digitized by srujanika@gmail.com

ଦୁଃଖିଙ୍କର ଦୁଃଖ ଦୂର କରିପାରୁଥିବା ରାଜା । ଆର୍ତ୍ତିମାନଙ୍କୁ କ୍ଷତ ପାଖରୁ ରକ୍ଷା କରିବା (ତ୍ରାଣ କରିବା) ହିଁ କ୍ଷତ୍ରିୟଙ୍କର ପରମ ଧର୍ମ । ଆପଣ ମୋର କଥା ରକ୍ଷା କରି ରାଜକୁମାର ଋତଧ୍ୱଜଙ୍କୁ ମୋ ସହିତ ପଠାନ୍ତୁ ।"

ରାଜକୁମାର ଋତଧ୍ୱଜ ଅତ୍ୟନ୍ତ ଉତ୍ସୁକତାର ସହିତ ସେଇ ଅଶ୍ୱକୁ ଦେଖୁଥିଲେ । ତା' ଶରୀରର ସୁନ୍ଦର ଗଠନ ଏବଂ ସ୍ଫୁର୍ତ୍ତି ଦେଖି ତାଙ୍କ ମନରେ ଅଶ୍ୱ ପାଇବା ପାଇଁ ଅତ୍ୟନ୍ତ ଆଗ୍ରହ ହେଉଥିଲା । ସେ ଅଶ୍ୱାରୋହଣ ବିଦ୍ୟାରେ ଅତ୍ୟନ୍ତ ପାରଙ୍ଗମ ଥିଲେ । ମୁନିଙ୍କ ମୁଖରୁ ଆକାଶବାଣୀ କଥା' ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସେହି ଅଶ୍ୱ ଉପରକୁ ଯିବା ନିମନ୍ତେ ଉତ୍ସୁକ ହୋଇ ଉଠିଲେ । ମୁନି ତଥା ମହାରାଜ ରାଜକୁମାରଙ୍କର ଉତ୍ସୁକତାକୁ ଲକ୍ଷ କରୁଥିଲେ । ତେଣୁ ରାଜା ମୁନିଙ୍କୁ କହିଲେ—"ମହର୍ଷି ! ଋତଧ୍ୱଜ ଆପଣଙ୍କର ମଧ୍ୟ ସନ୍ତାନ ସଦୃଶ୍ୟ । ଆପଣଙ୍କ ସହିତ ଗଲେ ତା'ର କଲ୍ୟାଣ ହେବ । ଆପଣ ଆନନ୍ଦର ସହିତ ତାକୁ ଆପଣଙ୍କ ଆଶ୍ରମକୁ ନେଇଯାଆନ୍ତୁ । ବର୍ତ୍ତମାନ ସେ ବାଳକ ହିଁ ଅଛି । ଆପଣ ତା'ପ୍ରତି ଲକ୍ଷ୍ୟ ରଖନ୍ତୁ । ଏ ଯେପରି ଅଧିକ ଚଞ୍ଚଳତା କରି ନପାରେ ।"

ମୁନି ଅତ୍ୟନ୍ତ ପ୍ରସନ୍ନତା ଦେଖାଇ କହିଲେ—"ରାଜା ! ଆପଣ କୌଣସି କଥା ଚିନ୍ତା କରନ୍ତୁ ନାହିଁ । କୁମାର ଅତ୍ୟନ୍ତ ବିନୟୀ । ମୁଁ ତାଙ୍କୁ ରକ୍ଷା କରିବି ଓ ଯତ୍ନ ନେବି ।"

ଏହାଶୁଣି ରାଜା, କୁମାରଙ୍କୁ ମୁନିଙ୍କ ସହିତ ଯିବାପାଇଁ ଆଦେଶ ଦେଲେ । ନିଜର ଆନ୍ତରିକ ପ୍ରସନ୍ନତାକୁ ଲୁଚାଇ କୁମାର ମଥାନତ କରି ରାଜାଙ୍କ ଆଦେଶ ଶିରୋଧାର୍ଯ୍ୟ କଲେ । ପିତା ପୁତ୍ରକୁ ଆଶୀର୍ବାଦ ଦେଲେ ତଥା ବ୍ରାହ୍ମଣଙ୍କର ବେଦମନ୍ତ୍ର ଉଚ୍ଚାରଣ ସହ ସେଇ ଅଶ୍ୱରତ୍ନ ପିଠି ଉପରେ କୁମାରଙ୍କୁ ଚଢ଼ାଇଲେ । ସେଇ ଅଶ୍ୱ ଉପରେ ଚଢ଼ି ଯାଉଥିବାବେଳେ କୁମାର ସାକ୍ଷାତ ବୀରରସ ମନୋବେଗ ନାମକ ଅଶ୍ୱ ଉପରେ ଚଢ଼ି ଯାଉଥିବା ପରି ଦେଖାଯାଉଥିଲେ । ସେଇଦିନୁ ରାଜକୁମାର ଋତଧ୍ୱଜଙ୍କ ନାମ କୁବଳୟାଶ୍ୱ ରହିଗଲା । ଇଏତ ମୁଁ ଋତଧ୍ୱଜଙ୍କର ନାମ କୁବଳୟାଶ୍ୱ ହେବାର କାହାଣୀ ଶୁଣାଇ ଦେଲି । ବର୍ତ୍ତମାନ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?

ଶୌନକ କହିଲେ—"ସୂତ ମୁନି ! ଆପଣ ଆମକୁ କୁବଳୟାଶ୍ୱର ସମ୍ପୂର୍ଣ୍ଣ ଚରିତ ଶୁଣାଇବେ । ସେ ପାତାଳକେତୁ ଦୈତ୍ୟକୁ ମାରିଲେ କି ନାହିଁ ? ତାଙ୍କର ବିବାହ ହେଲା କି ନାହିଁ ? ତାଙ୍କର ସନ୍ତାନ କେତୋଟି ? ଏସବୁ କଥା ଆପଣ କହିବେ ।"

Digitized by srujanika@gmail.com

ଏହା ଶୁଣି ସୂତ ମୁନି କହିଲେ—"ମହାରାଜ ! କୁମାର କୁବଳୟାଶ୍ୱଙ୍କ କଥା ଅତ୍ୟନ୍ତ କରୁଣାପୂର୍ଣ୍ଣ ତଥା ବିରାଟ ଅଟେ । ଏହାକୁ ମୁଁ ସଂକ୍ଷେପରେ କହୁଛି ।"

ହଁ, କୁମାର ଋତଧ୍ୱଜଙ୍କୁ ନେଇ ମହାମୁନି ଗାଲବ ନିଜ ଆଶ୍ରମକୁ ଆସିଲେ । କୁମାର ଅତ୍ୟନ୍ତ ଆନନ୍ଦରେ ଆଶ୍ରମରେ ରହିବାକୁ ଲାଗିଲେ । ସେହି ଦୁଷ୍ଟ ଦୈତ୍ୟକୁ ଜଣା ନଥିଲା ଯେ କୁବଳୟାଶ୍ୱ ତାକୁ ବଧ କରିବା ପାଇଁ ମୁନିଙ୍କ ଆଶ୍ରମରେ ଅପେକ୍ଷା କରି ରହିଛନ୍ତି । ମୁନି ସନ୍ଧ୍ୟା-ବନ୍ଦନାରେ ବ୍ୟସ୍ତ ଥିବା ସମୟରେ ତାଙ୍କୁ ହଇରାଣ କରିବାପାଇଁ ସେଇ ଦୈତ୍ୟ ଶୂକର ରୂପ ହୋଇ ମୁନିଙ୍କ ନିକଟକୁ ଆସିଲା । ତାକୁ ଦେଖିବାମାତ୍ରେ ମୁନିଙ୍କର ସମସ୍ତ ଶିଷ୍ୟ ଏକାସଙ୍ଗେ ଚିତ୍କାର କରି ଉଠିଲେ—"ରାଜକୁମାର ! ଦେଖ ଦେଖ ସେ ରାକ୍ଷସ ଶୂକର ରୂପ ହୋଇ ମୁନିଙ୍କୁ ମାରିବାପାଇଁ ଯାଉଛି । ରାଜକୁମାର ଋତଧ୍ୱଜ ମଧ୍ୟ ବହୁ ରୂପଧାରୀ ଦୈତ୍ୟକୁ ଦେଖି ସାରିଥିଲେ । ତେଣୁ ସେ ତତ୍‌କ୍ଷଣାତ୍ ଧନୁରେ ଶର ସଂଯୋଗ କରି ତାକୁ ଲକ୍ଷ୍ୟକରି ନିଜ ଅଶ୍ୱ ଉପରେ ଚଢ଼ି ତା'ର ପଛେ ପଛେ ଗଲେ । ଧନୁର୍ଦ୍ଧର ଧରି ରାଜକୁମାରଙ୍କୁ ନିଜ ଆଡ଼କୁ ଆସୁଥିବାର ଦେଖି ସେଇ ବରାହରୂପୀ ଦୈତ୍ୟ ଅତ୍ୟନ୍ତ ଦ୍ରୁତଗତିରେ ଯିବାକୁ ଲାଗିଲା । କୁମାର ତାକୁ ଏକ ଅର୍ଦ୍ଧଚନ୍ଦ୍ରାକାର ବାଣ ତା' ଉପରକୁ ନିକ୍ଷେପ କଲେ । ବାଣ ଦ୍ୱାରା ଆହତ ହୋଇ ନିଜ ପ୍ରାଣରକ୍ଷା ନିମନ୍ତେ ସେ ପବନ ବେଗରେ ଧାଇଁବାକୁ ଲାଗିଲା । କିନ୍ତୁ ଅଶ୍ୱାରୋହୀ କୁମାର ତାକୁ ଛାଡ଼ିଥିଲେ କେଉଁଠୁ ? ସେ ମଧ୍ୟ ଶରସନ୍ଧାନ କରି ତା' ପଛେ ପଛେ ଘୋଡ଼ା ଛୁଟାଇଥିଲେ । ଦୈତ୍ୟ ଯେତେବେଳେ ଦେଖିଲା ଯେ ରାଜକୁମାରଙ୍କ ହାତରୁ ଆଉ ରକ୍ଷା ପାଇପାରିବ ନାହିଁ, ତାଙ୍କ ଅଶ୍ୱସହ ତାଳ ଦେଇ ଦୌଡ଼ି ପାରିବନି, ସେ ଏକ ଅତ୍ୟନ୍ତ ଅନ୍ଧକାରପୂର୍ଣ୍ଣ ପାତାଳ-ଗହ୍ୱରକୁ ଡେଇଁ ପଡ଼ିଲା । ତାକୁ ଦେଖି ଅଶ୍ୱାରୋହୀ ରାଜକୁମାର ମଧ୍ୟ ସେଇ ଭୟଙ୍କର ଗହ୍ୱର ଭିତରକୁ ଡେଇଁ ପଡ଼ିଲେ । କାରଣ ତାଙ୍କର ଅଶ୍ୱର ଗତି ଅବ୍ୟାହତ ଥିଲା । ସେ ସମାନ ଗତିରେ ସବୁ ସ୍ଥାନକୁ ଯାଇ ପାରୁଥିଲା ।

ସେଇ ଘୋର ଅନ୍ଧକାରପୂର୍ଣ୍ଣ ବିବରରେ ଯିବାବେଳେ ରାଜକୁମାରଙ୍କୁ କିଛି ଦେଖା ନଥିଲା । ସେଇ ଶୂକର ତ ଅଦୃଶ୍ୟ ହୋଇଯାଇଥିଲା । କିଛି ସମୟ ଯିବାପରେ ତାଙ୍କୁ ଅତ୍ୟନ୍ତ ପ୍ରକାଶମୟୀ ପାତାଳନଗରୀ ଦେଖାଗଲା । ମଣି ପ୍ରକାଶରେ ସବୁଆଡ଼ ଝଲମଲ ହେଉଥିଲା । ତାହା ସ୍ୱର୍ଗର ଅମରାବତୀ ପୁରୀଠାରୁ ମଧ୍ୟ ଅଧିକ ଆକର୍ଷଣୀୟ ଏବଂ ସୁନ୍ଦର ଦେଖାଯାଉଥିଲା । ସେଇ ଅଦ୍ଭୁତ ପୁରୀକୁ ଦେଖି କୁମାରଙ୍କର ଅତ୍ୟନ୍ତ କୌତୁହଳ ଜାତ ହେଲା । ଭୟ ତାଙ୍କର ଆଦୌ ନଥିଲା, ସେ ପାତାଳପୁରୀର ଅନୁପମ ଦୃଶ୍ୟକୁ ଅନିମେଷ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସେଇ ସମୟରେ ତାଙ୍କୁ ଏକ ଅତ୍ୟନ୍ତ ସୁନ୍ଦରୀ ସ୍ତ୍ରୀ ଯାଉଥିବାର ଦେଖାଗଲା । କୁମାର ତା'

Digitized by srujanika@gmail.com

ନିକଟକୁ ଗଲେ ଏବଂ କହିଲେ—"ସୁନ୍ଦରୀ ! ତୁମେ କିଏ ? କାହାର କନ୍ୟା ? କାହାର ପତ୍ନୀ ? ଏତେ ଉତ୍ସୁକତାସହ ତୁମେ କେଉଁଠାକୁ ଯାଉଛ ? ମୋତେ ନିଜର ପରିଚୟ ଦିଅ ।"

କୁମାରଙ୍କର କଥା ଶୁଣିବାପରେ ମଧ୍ୟ ସେଇ ସ୍ତ୍ରୀ ତାଙ୍କୁ କିଛି ଉତ୍ତର ଦେଇଲନାହିଁ । କୁମାରଙ୍କ ଉପରେ ଏକ କୁଟିଳ ଦୃଷ୍ଟି ନିକ୍ଷେପ କରି ଶୀଘ୍ର ଶୀଘ୍ର ସେ ମହଲ ଭିତରକୁ ଚାଲିଗଲା । କୁମାର ଏହାର ରହସ୍ୟ କିଛି ବି ବୁଝି ପାରିଲେନି । ସେ ଶୀଘ୍ର ଶୀଘ୍ର ନିଜ ଅଶ୍ୱକୁ ବାହାରେ ବାନ୍ଧିଦେଇ ନିଜ ଉତ୍ସୁକତା ମେଣ୍ଟାଇବା ନିମନ୍ତେ ସେଇ ସ୍ତ୍ରୀ ପଛେ ପଛେ ମହଲ ଭିତରକୁ ପଶିଗଲେ ।

ଭିତରକୁ ଯାଇ କୁମାର ଯାହା ଦେଖିଲେ, ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲ ନାହିଁ । ସେଇ ସାଜସଜ୍ଜାପୂର୍ଣ୍ଣ ମହଲରେ ଏକ ସୁନ୍ଦର ସୁବର୍ଣ୍ଣ ପଲଙ୍କ ପଡ଼ିଥିଲା । ତା' ଉପରେ ଅତ୍ୟନ୍ତ କୋମଳ ଗଦି ବିଛା ଯାଇଥିଲା ଓ ଦୁଧର ଫେଣ ପରି ସ୍ୱଚ୍ଛ ଧଳା ବସ୍ତ୍ର ଦ୍ୱାରା ଢଙ୍କା ହୋଇଥିଲା । ପଲଙ୍କ ଉପରେ ଶ୍ରେଷ୍ଠ ବଡ଼ ତକିଆମାନ ପଡ଼ିଥିଲା । ତା' ଉପରେ ଜଣେ ଅତ୍ୟନ୍ତ ସୁନ୍ଦରୀ ରମଣୀ ବସିଥିଲା । ତା'ର କଳାକଳା କୁଞ୍ଚ କୁଞ୍ଚ କେଶରାଶି ଅସ୍ତବ୍ୟସ୍ତ ଭାବରେ ମୁହଁ ଉପରେ ଚାଳି ହୋଇ-ଯାଇଥିଲା । ତା'ର ନେତ୍ରଯୁଗଳ ନୀଳପଦ୍ମ ପରି ଥିଲା ଅତ୍ୟନ୍ତ ଆକର୍ଷକ । ଫୁଲର କୋମଳ କଢ଼ ସଦୃଶ୍ୟ ତା'ର ପତଳା ପତଳା ଓଠ ହାଲୁକା ରକ୍ତବର୍ଣ୍ଣ ଥିଲା । ତା'ର ଦନ୍ତପଂକ୍ତି ଚନ୍ଦ୍ରମାର ଜ୍ୟୋତ୍ସ୍ନା ସଦୃଶ୍ୟ ସ୍ୱଚ୍ଛ ଥିଲା । ତା'ର ଅଙ୍ଗ ପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟ ଫୁଟି ବାହାରୁଥିଲା । ସେଇ ସର୍ବାଙ୍ଗସୁନ୍ଦରୀ ରମଣୀ ଲବଙ୍ଗଲତା ସଦୃଶ ହଲିଯାଉଥିଲା । ରାଜକୁମାର ଆଜି ପର୍ଯ୍ୟନ୍ତ ଏଡ଼େ ସୁନ୍ଦରୀ ସ୍ତ୍ରୀ କେବେ ଦେଖି ନଥିଲେ । ସେ କଳ୍ପନା ମଧ୍ୟ କରି ନଥିଲେ ଯେ ବ୍ରହ୍ମାଙ୍କ ସୃଷ୍ଟିରେ ଏଡ଼େ ସୁନ୍ଦରୀ ସ୍ତ୍ରୀ ଥାଇପାରନ୍ତି । ପାତାଳପୁରୀର କୌଣସି ଅଧିଷ୍ଠାତ୍ରୀ ଦେବୀ—ଶୀଳ, ସଙ୍କୋଚ, ଶ୍ରଦ୍ଧା, ତଥା ଲଜ୍ଜା-ସହିତ ମଥାନତ କରି ତା' ସମ୍ମୁଖରେ ଛିଡ଼ା ହୋଇଛନ୍ତି ବୋଲି ସେ ଭାବିଲେ ।

ସାକ୍ଷାତ କାମଦେବଙ୍କର ସମାନ, ମୂର୍ତ୍ତିମାନ ବୀର ବସନ୍ତ ସମାନ, ପ୍ରତ୍ୟକ୍ଷ ମନୋରଥ ସମାନ ସେଇ ସର୍ବାଙ୍ଗସୁନ୍ଦର ସୁକୁମାର ରାଜକୁମାରଙ୍କ ଉପରେ ଦୃଷ୍ଟି ନିକ୍ଷେପ କରିବା ମାତ୍ରେ ସେଇ ସର୍ବାଙ୍ଗସୁନ୍ଦରୀ ରମଣୀ ମୂର୍ଚ୍ଛିତ ହୋଇ ପଲଙ୍କ ଉପରେ ପଡ଼ିଗଲା । ତା'ର ଏପରି ଦଶା ଦେଖି ଆସିଥିବା ସେଇ ଦ୍ୱିତୀୟ ସ୍ତ୍ରୀ ତା'ର ମଥାକୁ ନିଜ କୋଳରେ ଆଣି ରଖିଲା । ଅନେକ ଔଷଧ ଶୁଙ୍ଘାଇଲା ଏବଂ ଆସ୍ତେ ଆସ୍ତେ ତା'ର ମଥା ଚିପିବାକୁ ଲାଗିଲା ତଥା ପଙ୍ଖା କରିବାକୁ ଆରମ୍ଭ କଲା । କୁମାର ସେଇ ସୁକୁମାରୀର ସୌନ୍ଦର୍ଯ୍ୟ ଦେଖୁ ଦେଖୁ ନିଜକୁ ମଧ୍ୟ ଭୁଲିଯାଇଥିଲେ । ସେ

Digitized by srujanika@gmail.com

କ'ଣ କରିବା ଆବଶ୍ୟକ ତାହା ଭାବି ପାରୁ ନଥିଲେ । ପାଖରେ ଥିବା ଏକ ଚଉକିରେ ବସିଗଲେ । କିଛି ସମୟପରେ ସେଇ ସୁନ୍ଦରୀର ମୂର୍ଚ୍ଛାଭଙ୍ଗ ହେଲା । କୁମାର ଅତ୍ୟନ୍ତ ସଙ୍କୋଚ ସ୍ୱରରେ କହିଲେ—"ଦେବି ! ମୁଁ ଆପଣଙ୍କର ପରିଚୟ ଜାଣିବାକୁ ଚାହୁଁଛି । ଆପଣ ଏପରିଭାବେ ମୂର୍ଚ୍ଛିତ ହେଲେ କାହିଁକି ?"

ରାଜକୁମାରଙ୍କଠାରୁ ଏଭଳି ପ୍ରଶ୍ନ ଶୁଣି ସୁନ୍ଦରୀ ଲଜ୍ଜିତା ହେଲା । ସେ ରହସ୍ୟଭରା ଚାହାଣୀରେ ନିଜର ପରିଚାରିକା ସଖୀକୁ ଚାହିଁଲା ।

ତା'ର ଅଭିପ୍ରାୟ ବୁଝି ସଖୀ କହିବାକୁ ଆରମ୍ଭ କଲା—"ରାଜକୁମାର ! ଆପଣତ ଗନ୍ଧର୍ବରାଜା ବିଶ୍ୱାବସୁଙ୍କ ନାମ ଶୁଣିଥିବେ । ଏହି ସୁକୁମାରୀ ରାଜକୁମାରୀ ସେଇ ଗନ୍ଧର୍ବରାଜଙ୍କ ପ୍ରାଣପ୍ରିୟ ପୁତ୍ରୀ । ଏହାର ନାମ ମଦାଳସା । ଏକେ ତ ଗନ୍ଧର୍ବମାନେ ସମସ୍ତ ଉପଦେବଙ୍କ ମଧ୍ୟରେ ସୁନ୍ଦର ହୋଇଥାଆନ୍ତି, ସେଥିରେ ଏଇ କୁମାରୀ ସମସ୍ତ ଗନ୍ଧର୍ବକନ୍ୟାମାନଙ୍କ ଭିତରେ ସୁନ୍ଦରୀ ଥିଲା । ତା'ର ସୌନ୍ଦର୍ଯ୍ୟର ଆଭା ସ୍ୱର୍ଗପର୍ଯ୍ୟନ୍ତ ବ୍ୟାପିଯାଉଥିଲା । ଏହି ସୁନ୍ଦରତା ହିଁ ଏହାର ବନ୍ଧନର କାରଣ ହେଲା ।"

ଆଶ୍ଚର୍ଯ୍ୟ ହୋଇ କୁମାର ପଚାରିଲେ—"କପରି ?"

ସଖୀ ଉତ୍ତର ଦେଲା—"ଶୁଣନ୍ତୁ, ସେ କଥା ବି ମୁଁ କହୁଛି ଆପଣ ତ ଜାଣନ୍ତି ସୁମେରୁରେ ରହୁଥିବା ଗନ୍ଧର୍ବମାନେ କେତେ ସୌନ୍ଦର୍ଯ୍ୟପ୍ରିୟ ତଥା ବିଳାସୀ ହୋଇ-ଥାଆନ୍ତି । ଗୀତବାଦ୍ୟ ବନରେ ବିଚରଣ ତଥା ଭ୍ରମଣ ସେମାନଙ୍କୁ ନିଶାପରି ଘାରି ଥାଏ । ଗନ୍ଧର୍ବରାଜ ବିଶ୍ୱାବସୁଙ୍କର ସବୁ ପ୍ରକାରର ସୁନ୍ଦର ସୁନ୍ଦର ଫୁଲଗଛ ଥିବା ଏକ ସୁନ୍ଦର ବଗିଚା ଥିଲା । ଏହା ଦ୍ୱିତୀୟ ନନ୍ଦନକାନନ ସଦୃଶ୍ୟ ମନୋହର । ସେଇ ବଗିଚାରେ ଏ ଦିନେ ବୁଲୁଥିଲା । ସେହି ସମୟରେ ବ୍ରଜକେତୁ ଦାନବର ପୁତ୍ର ପାତାଳକେତୁ ସେଠାକୁ ଆସିଲା । ସେ ମଦାଳସାର ସୌନ୍ଦର୍ଯ୍ୟର ପ୍ରଶଂସା ଶୁଣି ତା' ପ୍ରତି ଆସକ୍ତ ହୋଇଯାଇଥିଲା । ତେଣୁ ସେ ସୁଯୋଗ ଅପେକ୍ଷାରେ ଥିଲା । ଏକାନ୍ତରେ ମଦାଳସାକୁ ପାଇ ସେଇ ମାୟାବୀ ପରମ ଆନନ୍ଦ ଲାଭ କଲା । ସେ ଭୟଙ୍କର ମାୟା ରଚନା କରି ରାଜକୁମାରୀ ମଦାଳସାକୁ ଅପହରଣ କରିଅଣିଲା ଏବଂ ନିଜ ନିବାସସ୍ଥାନ ଏହି ପାତାଳରେ ଆଣି ରଖିଦେଲା ।"

ସେଇ ଦୁଷ୍ଟ ଏହା ସହିତ ବିବାହ କରିବାକୁ ଇଚ୍ଛା କଲା । କିନ୍ତୁ ଏ ତାହା ସ୍ୱୀକାର କଲାନାହିଁ । ଆପଣ ହିଁ ଭାବନ୍ତୁ, କାହିଁ ସେ ଭୟଙ୍କର ରୂପଧାରୀ କାମାତୁରୀ ଦୁଷ୍ଟ ଦାନବ ଆଉ କାହିଁ ରତି ସମାନ ମୋର ସଖୀ । ସେଇ ଦୁଷ୍ଟ ଦାନବ

Digitized by srujanika@gmail.com

କହିଦେଇଛି—"ଆଗାମୀ ତ୍ରୟୋଦଶୀ ଦିନ ତୋର ମୋର ବିବାହ ସମ୍ପନ୍ନ ହେବ।" ଏହାଶୁଣି ଏ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଛି।

ଗତକାଲି ସେ ଆତ୍ମହତ୍ୟା କରିବାପାଇଁ ନିଶ୍ଚିତ କରିଥିଲା। ସେ ଆତ୍ମହତ୍ୟା ପାଇଁ ଉଦ୍ୟତ ହେଲା ବେଳେ ତତ୍‌କ୍ଷଣାତ୍ ସ୍ୱର୍ଗର ସାକ୍ଷାତ କାମଧେନୁ ତା'ର ସମ୍ମୁଖରେ ପ୍ରକଟ ହେଲି ଏବଂ ସାନ୍ତ୍ୱନା ଦେଇ କହିଲି—"ପ୍ରିୟ ! କୌଣସି ଚିନ୍ତା କର ନାହିଁ ଏ ଦୁଷ୍ଟ ଦାନବ ତୋତେ କେବେ ବି ବିବାହ କରିପାରିବ ନାହିଁ। ସେ ମୃତ୍ୟୁକୁ ଅପେକ୍ଷା କରି ରହିଛି। ଅତି ଶୀଘ୍ର ସେ ଶୂକର ରୂପ ହୋଇ ମର୍ତ୍ତ୍ୟଲୋକକୁ ଯିବ। ସେଠି ଯେଉଁ ପୁରୁଷ ତାକୁ ବାଣାଘାତ କରି ମାରିବ ସେ ହିଁ ତୋର ପତି ହେବ।" ଏତିକ କହି କାମଧେନୁ ସେଇଠାରେ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲା।

ଆଜି ମୁଁ ଶୁଣିଥିଲି ଯେ ସେଇ ଦୈତ୍ୟ ଶୂକର ରୂପ ଧରି ମର୍ତ୍ତ୍ୟଲୋକକୁ ଯାଇଛି। ମୁଁ ଏହା ମଧ୍ୟ ଶୁଣିଛି ଯେ ଆଜି ସେ କାହା ବାଣରେ ଶିକାର ହୋଇ ପଞ୍ଚତତ୍ତ୍ୱର ପ୍ରାପ୍ତ ହୋଇଛି। ସେ କେଉଁ କୁମାରଙ୍କ ଦ୍ୱାରା ନିହତ ହେଲା ତାହା ଜାଣିବା ଉଦ୍ଦେଶ୍ୟରେ ମୁଁ ଯାଇଥିଲି। ସେ ଦୈତ୍ୟ ଯେ ନିହତ ହୋଇଛି ସେ ବିଷୟରେ ନିଶ୍ଚିତ ହେଲି।

ରାଜକୁମାର ପଚାରିଲେ—"ଆଚ୍ଛା, ଆପଣ ନିଜର ପରିଚୟ ତ ଦିଅନ୍ତୁ। ଆପଣ କିଏ ?"

ସୁନ୍ଦରୀର ସଖୀ ଉତ୍ତର ଦେଲା—"ଆରେ, ମୋର ପରିଚୟ କଅଣ ? ମୁଁ ଗନ୍ଧର୍ବ ରାଜକୁମାରୀ ମଦାଳସାର ଅତି ପ୍ରିୟ ସଖୀ। ଏହାଙ୍କୁ ମୁଁ ନିଜ ପ୍ରାଣଠୁ ବଳି ଭଲ ପାଏ।"

କୁମାର କହିଲେ—"ନାଁ, ତଥାପି ବି ଆପଣ ଆପଣଙ୍କର ପରିଚୟ ଦେଲେ ନାହିଁ।"

ଏହାଶୁଣି ସୁନ୍ଦରୀର ସଖୀ କହିଲା—"ମୁଁ ମଧ୍ୟ ବିନ୍ଧ୍ୟବାନ୍ ଗନ୍ଧର୍ବଙ୍କର କନ୍ୟା ଅଟେ। ମୋର ବିବାହ ପୁଷ୍କରମାଳୀ ଗନ୍ଧର୍ବ ସହ ହୋଇଥିଲା। ତାଙ୍କୁ ଶୁମ୍ଭ ନାମକ ଦୈତ୍ୟ ଯୁଦ୍ଧରେ ନିହତ କଲା। ସେଇଦିନଠାରୁ ମୁଁ ମୋର ବୈଧବ୍ୟ ବ୍ରତ ନିୟମାନୁସାରେ ପାଳନ କରି ପୁଣ୍ୟତୀର୍ଥ ସବୁ ଭ୍ରମଣ କରୁଛି। ଯେତେବେଳେ ମୁଁ ମୋର ପ୍ରାଣପ୍ରିୟ ସଖୀର ଅପହରଣ ବିଷୟରେ ଶୁଣିଲି, ସଙ୍ଗେ ସଙ୍ଗେ ଯୋଗ ଦ୍ୱାରା ସବୁ ଜାଣିପାରି, ଏହା ପାଖକୁ ଆସିଲି ଏବଂ ଯେତିକି ପାରୁଛି ଏହାର ସେବା କରୁଛି।"

Digitized by srujanika@gmail.com

ରାଜକୁମାର କହିଲେ—"ଆଚ୍ଛା ! ମୁଁ ଜାଣିବାକୁ ଚାହୁଁଛି ଆପଣଙ୍କ ସଖୀ ବର୍ତ୍ତମାନ ମୂର୍ଚ୍ଛିତ କାହିଁକି ହୋଇ ଯାଇଥିଲେ !"

ଏହି ପ୍ରଶ୍ନ ଶୁଣିବାମାତ୍ରେ ସୁନ୍ଦରୀର ମୁଖ-ମଣ୍ଡଳରେ ଏକ ପ୍ରକାର ରସମୟ ଲଜ୍ଜା ଖେଳି ହୋଇଗଲା ! ତା'ର ସଖୀ ଆରମ୍ଭ କଲା—"ଦେବ ! ଆପଣ କୌଣସି ଧର୍ମାତ୍ମା ଦୟାଳୁ ଦେବତାପରି ମନେ ହେଉଛନ୍ତି । ଆପଣଙ୍କୁ ମୁଁ ସତ ସତ କଥା କହୁଛି । ମୋର ସଖୀ ଆପଣଙ୍କର ସୁନ୍ଦର ରୂପ ଦେଖିବା ମାତ୍ରେ ମୋହିତ ହୋଇଗଲା । ଏହା ତା'ର ଜୀବନରେ ଏକ ଆଶ୍ଚର୍ଯ୍ୟ ଘଟଣା ହେଲା । ନ ହେଲେ ସେ କେବେ କାହାକୁ ଆଖି ଉଠାଇ ଚାହେଁ ନାହିଁ । ଆପଣଙ୍କର କଳା-କୁଞ୍ଚିତ-କେଶ, ସୁଶୋଭିତ ମସ୍ତକ, ବିଶାଳ ଛାତି, ସିଂହସଦୃଶ ସ୍ଥୂଳ ତଥା ମାଂସଳ କାନ୍ଧ ଏବଂ ଆଜାନୁଲମ୍ବିତ ବଡ଼ ବଡ଼ ବିଶାଳ ବାହୁ ଯୁଗଳକୁ ଦେଖି ସେ ନିଜକୁ ମଧ୍ୟ ଭୁଲିଗଲା । ତା'ର ମନମଧୁପ ଆପଣଙ୍କର ସୌନ୍ଦର୍ଯ୍ୟ ରୂପୀ କମଳକୋଷ ମଧ୍ୟରେ ଛନ୍ଦି ହୋଇଗଲା । ତା'ର ବିବାହ ତ ସେହି ବ୍ୟକ୍ତି ସହିତ ହେବ ଯେ ପାତାଳକେତୁକୁ ମାରିବ । ସୁରଭୀର ବଚନ କେବେହେଲେ ମିଥ୍ୟା ହେବନାହିଁ ଅଥଚ ମନ ରହିବ ଆପଣଙ୍କ ସହିତ ଏହି ଅତ୍ୟନ୍ତ ଦୁଃଖଦାୟକ ସମ୍ଭାବନାକୁ ଚିନ୍ତା କରି ତା' ମନ ଦ୍ୱନ୍ଦ୍ୱରେ ପଡ଼ିଯାଇଛି । ସେଥିନିମନ୍ତେ ସଖୀ ମୋର ବ୍ୟାକୁଳ ହୋଇପଡ଼ିଛି । ସେ ତା'ର ସର୍ବସ୍ୱ ଆପଣଙ୍କୁ ସମର୍ପଣ କରି ଦେଇଛି । ମୁଁ ମୋର ତଥା ମୋ ସଖୀର ପରିଚୟ ଦେଲି । ଏବେ ଆମେ ମଧ୍ୟ ଆପଣଙ୍କର ପରିଚୟ ଜାଣିବାକୁ ଚାହୁଁଛୁ । ଆପଣ ଠିକ୍ ଠିକ୍ କହନ୍ତୁ, ଆପଣ କିଏ— ଦେବତା, ଗନ୍ଧର୍ବ, ବିଦ୍ୟାଧର, ଅଥବା କେଉଁ ନାଗରାଜକୁମାର, ଆପଣ ଏଠାକୁ କେଉଁ କାରଣରୁ ତଥା କିପରି ଆସିଲେ ?"

ଏହାଶୁଣି ରାଜକୁମାର ଅତ୍ୟନ୍ତ ସହଜ ଭାବରେ କହିଲେ—"ଦେବ ! ମୁଁ ଦେବତା, କିନ୍ନର, ବିଦ୍ୟାଧର, ନାଗ ବା ଗନ୍ଧର୍ବ ନୁହେଁ । ଏହି ସମସ୍ତେ ଦେବଯୋନିର ଲୋକେ ମୋର ପୂଜନୀୟ । ମୁଁ ତ ମର୍ତ୍ତ୍ୟଲୋକର ଏକ ମନୁଷ୍ୟ । ମହର୍ଷି ଗାଳବଙ୍କର କୃପାରୁ ଏହି ସ୍ୱର୍ଗୀୟ ଅଶ୍ୱର ପ୍ରଭାବରେ ମୁଁ ପାତାଳଲୋକକୁ ଆସି ପାରିଛି । ମହର୍ଷି ଗାଳବ ମୋର ପିତାଙ୍କ ପାଖରୁ ମୋତେ ମାଗି ଆଣିଛନ୍ତି । ପାତାଳକେତୁ ରାକ୍ଷସ ତାଙ୍କୁ ଅନେକ କ୍ଲେଶ ଦେଉଥିଲା । ଆଜି ସେ ଶୂକର ରୂପ ଧରି ଆଶ୍ରମକୁ ଯାଇଥିଲା । ମୁଁ ତା'ର ପଶ୍ଚାଦ୍ଧାବନ କରି ଏଠି ଆସି ପହଞ୍ଚିଯାଇଛି । ସେ ମୋର ବାଣରେ ଆହତ ହୋଇ ଏଇ ବିବର ଭିତରକୁ ଡେଇଁ ପଡ଼ିଲା ।"

ଏହା ଶୁଣିବାମାତ୍ରେ ମଦାଳସାର ମୁଖପଦ୍ମ ଉଜ୍ଜ୍ୱଳ ହୋଇ ଉଠିଲା । ତା' ଆନନ୍ଦର ସୀମା ରହିଲା ନାହିଁ । ସେ ଅତ୍ୟନ୍ତ ପ୍ରୀତ ହୋଇ ନିଜ ସଖୀପ୍ରତି ଦୃଷ୍ଟି ନିକ୍ଷେପ

Digitized by srujanika@gmail.com

କଲା । କିନ୍ତୁ ପ୍ରେମର ଉଦ୍ରେକ ହେବା ହେତୁ ସେ ନାଁ କିଛି କହି ପାରିଲା ନାଁ କିଛି କରି ପାରିଲା । ତା'ର ଏତାଦୃଶ ଅବସ୍ଥା ଦେଖି ମଦାଳସାର ସଖୀ କୁଣ୍ଡଳା କହିଲା—କୁମାର ! ଆପଣଙ୍କ କଥା ସର୍ବଦା ସତ୍ୟ । ମୋର ସଖୀର ମନ କୌଣସି ପୁରୁଷକୁ ଦେଖି ଚଞ୍ଚଳ ହୋଇ ପାରୁ ନଥିଲା । ଏହା ଜନ୍ମାନ୍ତରର ସଂସ୍କାର । ଆପଣଙ୍କର ଓ ତା'ର ସମ୍ବନ୍ଧ ଅନେକ ଜନ୍ମର । ସେଇଥିପାଇଁ ତ ଦେଖିବାମାତ୍ରେ ସେ ଆପଣା ବଶ୍ୟକୁ ଚିହ୍ନି ପାରିଲା । ଏବେ ଆପଣ ଦୁହିଁଙ୍କ ବିବାହ ହୋଇଯିବା ଉଚିତ । ତା ହାତକୁ ଆପଣଙ୍କ ହାତରେ ସମର୍ପଣ କରି ମୁଁ ମଧ୍ୟ ନିଶ୍ଚିନ୍ତ ହୋଇ ତପସ୍ୟାରେ ନିମଗ୍ନ ହୋଇଯିବି ।"

କୁମାର କହିଲେ—"ଦେବି ! ମୁଁ ତ ସ୍ୱତନ୍ତ୍ର ନୁହେଁ । ମୁଁ ତ ନିଜ ପିତାଙ୍କର ଅଧୀନ । ମୋର ପିତା ମୋର ବିବାହ ଯାହା ସହିତ କରିବେ ତା' ସହିତ ହିଁ ମୋତେ ବିବାହ କରିବାକୁ ପଡ଼ିବ !"

ଏହାଶୁଣି କୁଣ୍ଡଳା କହିଲା—"ପ୍ରଭୋ ! ଆପଣ ଉପଯୁକ୍ତ କଥା କହୁଛନ୍ତି । ମୁଁ ଆପଣଙ୍କ ପିତୃଭକ୍ତି ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲି । କିନ୍ତୁ ମୁଁ ଆପଣଙ୍କୁ ବିଶ୍ୱାସ ଦଉଚି ଯେ ଆପଣଙ୍କ ପିତା ମାତା ଏଇ ସମ୍ବନ୍ଧରେ ଅତ୍ୟନ୍ତ ସନ୍ତୁଷ୍ଟ ହେବେ । ଇଏ କୁଳୀନବଂଶର କନ୍ୟା ଗନ୍ଧର୍ବରାଜଙ୍କର ପୁତ୍ରୀ ଆପଣଙ୍କର ସର୍ବଥା ଯୋଗ୍ୟ । ଆପଣଙ୍କ ପିତା ଏଇ ସମ୍ବନ୍ଧକୁ ସ୍ୱାଗତ କରିବେ । ଆପଣ ମନଭିତରେ କୌଣସି ଶଙ୍କା କରନ୍ତୁ ନାହିଁ । ପୁଣି ସୁରଭି ବଚନ କପରି ବା ଅସତ୍ୟ ହେବ ?"

କୁମାର କହିଲେ—"ଭଲ କଥା । ଯଦି ବିଧିର ବିଧାନ ହିଁ ଏହା ତେବେ ଏହାର ବିପରୀତ କିଏ କରିପାରିବ । କୌଣସି ପୁରୋହିତଙ୍କୁ ଡକାନ୍ତୁ । ହୋଇ ଯାଉ ସ୍ୱାହା ସ୍ୱାହା ।"

ରାଜକୁମାରଙ୍କର ସ୍ୱୀକୃତି ମିଳିବାମାତ୍ରେ କୁଣ୍ଡଳା ବିବାହ ସାମଗ୍ରୀ ସବୁ ଏକତ୍ରିତ କଲା । ସେ ନିଜର କୁଳଗୁରୁ ତୁମ୍ବୁରୁଙ୍କୁ ସ୍ମରଣ କଲା । ତୁମ୍ବୁରୁ ସମିଧ-କୁଶ ନେଇ କାଖରେ ପୋଥିପତ୍ର ଯାକ ସେଠି ଉପସ୍ଥିତ ହୋଇଗଲେ । ଆଉ କ'ଣ ବା ରହିଲା, ହୋଇଗଲା ସ୍ୱାହା ସ୍ୱାହା । ମଦାଳସା ଏବଂ କୁମାର ଋତଧ୍ୱଜଙ୍କର ବିଧି ଅନୁସାରେ ବିବାହ ହୋଇଗଲା । ଦୁହେଁ ପତି-ପତ୍ନୀ-ସମ୍ବନ୍ଧରେ ଆବଦ୍ଧ ହୋଇଗଲେ । କୁଣ୍ଡଳା ବରବଧୂଙ୍କୁ ଆଶୀର୍ବାଦ କଲା । ଦୁଇଜଣଙ୍କୁ ଉପଦେଶ ଦେଇ କହିଲା—"ତୁମେ ଦୁଇଜଣ ମିଳିମିଶି ପ୍ରେମପୂର୍ବକ ରହିବ । ଜଣେ ଅପରର କଥା ମାନିବ । ଗୃହସ୍ଥ ରୂପକ ରଥର ସ୍ତ୍ରୀ ଓ ପୁରୁଷ ଦୁଇଟି ଚକ ସଦୃଶ୍ୟ । ଯେତେବେଳଯାଏ ଦୁଇଜଣଯାକ ଯଥା ସ୍ଥାନରେ ରହିବେ, ଗାଡ଼ି ଠିକ୍‌ଭାବରେ ଚାଲିବ । ପତି ପତ୍ନୀଦ୍ୱାରା ହିଁ ଦେବତା,

Digitized by srujanika@gmail.com

ପିତୃପୂରୁଷ, ଭୃତ୍ୟ, ତଥା ଅତିଥିମାନଙ୍କର ସ୍ୱାଗତସତ୍କାର କରିପାରନ୍ତି । ଧର୍ମ, ଅର୍ଥ, କାମ—ଏହି ତ୍ରିବର୍ଗର ପ୍ରାପ୍ତି ପତି ପତ୍ନୀଙ୍କ ସମ୍ମିଳିତ ଉଦ୍ୟୋଗ ଦ୍ୱାରା ହିଁ ହୋଇପାରିଥାଏ । ତୁମେ ନବଦମ୍ପତି ସୁଖରେ ରୁହ, ଦୁଇଜଣଙ୍କ ମଧ୍ୟରେ ଦିନକୁ ଦିନ ଅନୁରାଗ ବଢ଼ୁ । ଏତିକି ମୋର ପ୍ରଭୁଙ୍କ ପାଦପଦ୍ମରେ ପ୍ରାର୍ଥନା ।" ଏହା କହୁ କହୁ କୁଣ୍ଡଳାର କଣ୍ଠ ଅବରୋଧ ହୋଇଗଲା । ତା' ଆଖିରୁ ଟପ ଟପ ହୋଇ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । କାନ୍ଦି କାନ୍ଦି ସେ ମଦାଳସାକୁ ଆଲିଙ୍ଗନ କଲା । ମଦାଳସା ତା'ର କୋଳ ପୋଛି କହିଲା—"ଭଉଣୀ ! ତୁମେ ମୋତେ ଏକୁଟିଆ କାହିଁକି ଛାଡ଼ିଯାଉଛ ? ମୋତେ ତୁମେ ସଙ୍ଗରେ ନେଇ ଚାଲ ।"

କୁଣ୍ଡଳା କହିଲା—"ଏକୁଟିଆ କେଉଁଠି ଛାଡ଼ୁଛି । ମୁଁ ତ ତୋତେ ତୋର ସ୍ୱାମୀଙ୍କ ହାତରେ ସମର୍ପଣ କରି ଯାଉଛି । ବର୍ତ୍ତମାନ ମୁଁ ନିଶ୍ଚିନ୍ତ ହୋଇ ଭଗବାନଙ୍କର ଭଜନ କରିବି । ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରିବି । ତୋର ଶଙ୍ଖା-ସିନ୍ଦୂର ଅକ୍ଷୟ ରହୁ, ତୁ ପୁତ୍ରବତୀ ହୁଅ, ତୋତେ ମୋକ୍ଷର ପୂର୍ଣ୍ଣ ଜ୍ଞାନ ହେଉ । ଆଚ୍ଛା ଯାଅ ।" ଏହା କହି ସେ କାନ୍ଦି କାନ୍ଦି ମଦାଳସାର କେଶଗୁଚ୍ଛ ଭିଡ଼ାଇ ଦେଲା । ମଦାଳସା ମଧ୍ୟ ସ୍ନେହ ଝିଅ ପରି କୁଣ୍ଡଳାକୁ କୁଣ୍ଢାଇ କାନ୍ଦିବାରେ ଲାଗିଲା । ରାଜକୁମାର କୁଣ୍ଡଳାକୁ ପ୍ରଣାମ କରି ତା'ର ଚରଣ ଧୂଳି ନେଲେ । କୁଣ୍ଡଳା କୁମାରଙ୍କ ମଥା ଉପରେ ହାତ ରଖି ତାଙ୍କୁ ଆଶୀର୍ବାଦ ଦେଲା । ଦେଖୁ ଦେଖୁ ସେ ସେଇଠାରେ ଅନ୍ତର୍ଦ୍ଧାନ ହୋଇଗଲା । ତା'ପରେ କୁମାର ତାଙ୍କର ପ୍ରାଣପ୍ରିୟା ମଦାଳସାକୁ ନିଜ ଦିବ୍ୟ ଅଶ୍ୱ ଉପରେ ବସାଇ ପାତାଳ ଲୋକରୁ ଚାଲି ଆସିଲେ ।

ପାତାଳକେତୁର ଆତ୍ମୀୟସ୍ୱଜନ ଯେତେବେଳେ ଏ ସମ୍ବାଦ ଶୁଣିଲେ ଯେ ମର୍ତ୍ତ୍ୟଲୋକର ଏକ କ୍ଷୁଦ୍ର ମନୁଷ୍ୟ ପାତାଳକୁ ଆସି ପାତାଳକେତୁର ବିବାହ ହେବାକୁଥିବା କନ୍ୟାକୁ ଚୋରେଇ ନେଇ ଯାଉଛି, ସେମାନେ ସମସ୍ତେ ଅସ୍ତ୍ର ଶସ୍ତ୍ର ନେଇ ରାଜକୁମାର ଋତଧ୍ୱଜ ଉପରେ ଆକ୍ରମଣ କଲେ । ରାଜକୁମାର ନିଜ ଅଶ୍ୱ ଉପରେ ଥିଲେ । ତେଣୁ ତାଙ୍କର ପରାଜିତ ହେବାର ଭୟ ଆଦୌ ନ ଥିଲା । ସେ ଦାନବମାନଙ୍କ ଉପରେ ଦିବ୍ୟଅସ୍ତ୍ରସବୁ ପ୍ରୟୋଗ କରିବାରେ ଲାଗିଲେ । କୁମାରଙ୍କ ବାଣ ବର୍ଷାରେ ଦାନବମାନେ ଆଉ ରହି ଯୁଦ୍ଧ କରିପାରିଲେ ନାହିଁ । ଅନେକେ ବାଣବିଦ୍ଧ ହୋଇ ପ୍ରାଣତ୍ୟାଗ କଲେ, ଆଉ କେତେକ ଯୁଦ୍ଧ ଭୂମି ଛାଡ଼ି ପ୍ରାଣଭୟରେ ପଳାଇ ଗଲେ, ତଥା ଅନ୍ୟ କେତେକଜଣ କ୍ଷତ ବିକ୍ଷତ ହୋଇ ସେଇଠାରେ ପଡ଼ି ରହିଲେ । ଏହିପରି ଦାନବମାନଙ୍କୁ ପରାଜିତ-କରି କୁମାର ସର୍ବପ୍ରଥମେ ଗାଲବ ମୁନିଙ୍କ ଆଶ୍ରମ ନିକଟକୁ ଆସିଲେ । ଶିଷ୍ୟମାନଙ୍କ

Digitized by srujanika@gmail.com

ସହିତ ମୁନି ଯେତେବେଳେ କୁମାରଙ୍କୁ ବୋହୂ ସହିତ ଦେଖିଲେ ସେମାନେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ । ମୁନିମାନେ ନବଦମ୍ପତିଙ୍କୁ ନାନା ପ୍ରକାର ଆଶୀର୍ବାଦ ଦେଲେ ।

ଏଇପରି ମୁନିମାନଙ୍କ ଦ୍ୱାରା ଆଦୃତ ହୋଇ ତଥା ତାଙ୍କର ଆଦେଶ ନେଇ ଋତଧ୍ୱଜ ନିଜ ପିତାଙ୍କ ରାଜ୍ୟକୁ ଆସିଲେ । ମାତାପିତା ଯେତେବେଳେ ପୁତ୍ରବଧୂ ସହିତ ନିଜ ପୁତ୍ରକୁ ଦେଖିଲେ । ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ପିତା ନିଜ ପ୍ରିୟ ପୁତ୍ରକୁ ପ୍ରଶଂସା କଲେ ଓ ନିଜ ଭାଗ୍ୟକୁ ମଧ୍ୟ ଧନ୍ୟ ଧନ୍ୟ କଲେ । ମାତା ବରବଧୂ ଦୁହିଁଙ୍କୁ ଅନେକ ଆଶୀର୍ବାଦ ଦେଲେ । ସମଗ୍ର ନଗରରେ ଉତ୍ସବ ପାଳନ କରାଗଲା । ମଦାଳସାଙ୍କର ଅନନ୍ୟ ସୁନ୍ଦର ରୂପକାନ୍ତି ଦେଖି ସମସ୍ତ ସ୍ତ୍ରୀ ପୁରୁଷ ମନ୍ତ୍ର ମୁଗ୍ଧ ପରି ରହିଯାଉଥିଲେ । ମଦାଳସା ନିଜର ନମ୍ର ସ୍ୱଭାବ, ସଦାଚାର ତଥା ସ୍ନେହସିକ୍ତ ସରଳ ବ୍ୟବହାର ଦ୍ୱାରା ସମସ୍ତଙ୍କୁ ବଶ କରିନେଇ ଥିଲା । ସେ ପ୍ରତିଦିନ ପ୍ରାତଃ କାଳରେ ଉଠି ପ୍ରଥମେ ନିଜ ଶାଶୂ ଶ୍ୱଶୁରଙ୍କ ପାଦରେ ପ୍ରଣାମ ଜଣାଉଥିଲା ଏବଂ ତାଙ୍କର ଆଜ୍ଞା ଅନୁରୂପ କାର୍ଯ୍ୟ କରୁଥିଲା । କୁମାର ନିଜର ସର୍ବସ୍ୱ ମଦାଳସାକୁ ସମର୍ପଣ କରିଦେଇଥିଲେ । ମଦାଳସା ମଧ୍ୟ ତାଙ୍କୁ ନିଜର ଇଷ୍ଟଦେବ ବୋଲି ସ୍ୱୀକାରକରି ସର୍ବଦା ତାଙ୍କର ଅଧୀନ ଥିଲା । ସେ ଦୁହିଁଙ୍କର ପ୍ରେମ ଏପରି ଥିଲା ଯେ "ଗୋଟିଏ ପ୍ରାଣ—ଦୁଇ ଦେହ' ବୋଲି ସେମାନଙ୍କ ପାଖରେ ପ୍ରମାଣିତ ହେଉଥିଲା । କୁମାର ମଦାଳସା ସହ ଅନ୍ତଃପୁରରେ, ବନ ଉପବନରେ, ନଦୀତଟରେ, ତଥା ଉପତ୍ୟକାରେ ବିହାର କରୁଥିଲେ । ଏପରି ଅତ୍ୟନ୍ତ ସୁଖରେ ସେମାନଙ୍କର ଦିନ ବିତିବାରେ ଲାଗିଲା ।

ସୂତ ମୁନି କହୁଛନ୍ତି—"ମୁନିମାନେ ! କୁମାର ଋତଧ୍ୱଜଙ୍କର ନିଜ ପତ୍ନୀପ୍ରତି ଅତ୍ୟଧିକ ଆସକ୍ତି ଦେଖି ମହାରାଜ ଶତ୍ରୁଜିତ ଦିନେ ତାଙ୍କୁ କହିଲେ—"ପୁତ୍ର ! ଆମେ କ୍ଷତ୍ରିୟ, ଆମର ମୁଖ୍ୟ କର୍ତ୍ତବ୍ୟ ପ୍ରଜାଙ୍କର ଦୁଃଖ ଦୂର କରିବା । ଗୋ ବ୍ରାହ୍ମଣଙ୍କର ରକ୍ଷା ହିଁ ଆମର ପରମ ଧର୍ମ । ପୃଥିବୀରେ ଅନେକ ରାକ୍ଷସ ବିଭିନ୍ନ ପ୍ରକାର ବେଶ ନେଇ ବୁଲୁଛନ୍ତି ଏବଂ ପ୍ରଜାମାନଙ୍କୁ ହଇରାଣ କରୁଛନ୍ତି । ସାଧୁ ପୁରୁଷମାନଙ୍କୁ ଦୁଃଖ ଦେଉଛନ୍ତି । ତୁମେ ପ୍ରତିଦିନ ବୁଲି ବୁଲି ସାଧୁମାନଙ୍କର ସଂରକ୍ଷଣ ତଥା ଦୁଷ୍ଟମାନଙ୍କୁ ଦମନ କର ।

ପିତୃଭକ୍ତ କୁମାର ଋତଧ୍ୱଜ କହିଲେ—"ପିତା ! ମୁଁ ତ ଆପଣଙ୍କର ଆଜ୍ଞାର ଅଧୀନ । ଆଜିଠାରୁ ମୁଁ ପ୍ରତ୍ୟହ ସମ୍ପୂର୍ଣ୍ଣ ପୃଥିବୀ ମଣ୍ଡଳରେ ବୁଲିବ ତଥା ଦୀନ ଦୁଃଖୀଙ୍କର ଦୁଃଖ ଦେଖି ତାହା ଦୂର କରିବ । ସେହିଦିନଠାରୁ ପ୍ରତ୍ୟହ ପ୍ରାତଃକାଳରୁ

Digitized by srujanika@gmail.com

କୁମାର ଅଶ୍ୱାରୋହଣ କରି ଯାଉଥିଲେ ଏବଂ ଦ୍ୱିପହରକୁ ପୃଥିବୀ ପରିକ୍ରମା କରି ଫେରି ଆସୁଥିଲେ । ତାଙ୍କ ଅଶ୍ୱର ଗତି ଅବାଧ ଥିଲା । ସେ ଯେଉଁଠାକୁ ଗଲୁଥିଲେ ଚାଲିଯାଉଥିଲେ । ପ୍ରଜାଙ୍କର ଦୁଃଖ ଶୁଣୁଥିଲେ, ସାଧୁ-ମହାତ୍ମାମାନଙ୍କୁ ସେମାନଙ୍କ ଆଶ୍ରମ ସମ୍ପର୍କରେ କୁଶଳପ୍ରଶ୍ନ କରୁଥିଲେ । କୌଣସି ଦୈତ୍ୟ ଦାନବ ତାଙ୍କୁ ହଇରାଣ କରୁଥିଲେ, ସେଇ ଦୁଷ୍ଟଙ୍କୁ ଦଣ୍ଡଦେଇ ଯମପୁର ପଠାଉଥିଲେ । ବୁଲିବୁଲି କରି ମଧ୍ୟାହ୍ନ ସମୟରେ ନିଜମହଲକୁ ସେ ଫେରୁଥିଲେ ଏବଂ ତା'ପରେ ମଦାଳସା ସହିତ ଆନନ୍ଦ ବିହାର କରୁଥିଲେ ।

ଦିନେ କୁମାର ବୁଲି ବୁଲି ଯମୁନା ତୀରରେ ପହଞ୍ଚିଲେ । ସେଠାରେ ତାଙ୍କୁ ଏକ ମୁନିଙ୍କର ଅତ୍ୟନ୍ତ ସୁନ୍ଦର ସ୍ୱଚ୍ଛ ଆଶ୍ରମ ଦେଖାଗଲା । ସେଥିରେ ଫଳ ଫୁଲର ଅନେକ ବୃକ୍ଷ ଥିଲା । ବଡ଼ ବଡ଼ ଜଟାରଖି ଜଣେ ମୁନି ସେଠାରେ ତପସ୍ୟା କରୁଥିଲେ ।

ଶୌନକ ପଚାରିଲେ—"ସୂତ ମୁନି ! ତାହା କେଉଁ ମୁନିଙ୍କ ଆଶ୍ରମ ଥିଲା !"

ଏହାଶୁଣି ସୂତ ମୁନି ହସିଦେଲେ ଏବଂ କହିଲେ—"ଆରେ ମହାରାଜ ! ସେଇ କଥା ପଚାରନି । ବହୁତ ଦୁଷ୍ଟ ପୁରୁଷ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ସାଧୁ ବେଶ ହୋଇ ନିଜର ଇନ୍ଦ୍ରିୟ ତୃପ୍ତି କରନ୍ତି । ରାଗ ଦ୍ୱେଷ ଅନାଚାର, ବ୍ୟଭିଚାର ବ୍ୟାପ୍ତ କରିଥାଆନ୍ତି । ସେମାନେ ମନଭିତରେ ତ ରାକ୍ଷସ ଅସୁର ହୋଇଥାନ୍ତି କିନ୍ତୁ ଉପରକୁ ସାଧୁ ସନ୍ଥଙ୍କର ରୂପ ନେଇଥାଆନ୍ତି । ଏଇ ଧୂର୍ତ୍ତମାନଙ୍କର ପରଲୋକ ବିଷୟରେ ମଧ୍ୟ କୌଣସି ପ୍ରକାର ଭୟ ଭ୍ରାନ୍ତି ନଥାଏ । ସେଇ ମୁନିଙ୍କର ନାମ ଆପଣ କପଟ ମୁନି ବୋଲି ମନେକରନ୍ତୁ । କଥା ହେଉଛି ଯେତେବେଳେ ପାତାଳକେତୁକୁ ମାରି ମଦାଳସାକୁ ସାଙ୍ଗରେ ନେଇ କୁମାର ଆସିଲେ, ପାତାଳକେତୁର ଭାଇ ତାଳକେତୁ ସେ ସମୟରେ ତାଙ୍କ ସହିତ ଲଢ଼େଇ କଲା । ଯୁଦ୍ଧରେ ତ ସେ କୁମାରଙ୍କର ସମକକ୍ଷ ହୋଇପାରିଲା ନାହିଁ । ତେଣୁ ସେ କୁମାର ସହ ଛଳନା କରି ପ୍ରତିଶୋଧ ନେବ ବୋଲି ମନରେ ଠିକ୍ କଲା । ସେ କପଟରେ ବେଶ ବଦଳାଇ ଏଇ ଉଦ୍ଦେଶ୍ୟରେ ଘୂରି ବୁଲୁଥିଲା । ସେ ମାୟା ବଳରେ ଯମୁନା ତୀରରେ ଅଶ୍ରମ ସୃଷ୍ଟି କଲା ଏବଂ ସ୍ୱୟଂ ସାଧୁର ବେଶ ହୋଇ ସେଠାରେ ରହିବାକୁ ଲାଗିଲା । ରାଜକୁମାର ଋତଧ୍ୱଜ ତ ତାକୁ ଚିହ୍ନି ପାରିଲେ ନାହିଁ । ସେ ବି ଏଇ ସୁଯୋଗକୁ ଅପେକ୍ଷା କରି ରହିଥିଲା । କୁମାର ତାକୁ ମୁନି ବୋଲି ଭାବି ପ୍ରଣାମ କଲେ । ସେଇ କପଟମୁନି କୁମାରଙ୍କୁ ଅତି ସୁନ୍ଦର ଭାବରେ ସ୍ୱାଗତ-ସତ୍କାର କଲା ।"

କୁମାର କହିଲେ—ମୁନିବର ! ଆପଣଙ୍କ ତପ ନିର୍ବିଘ୍ନରେ ହେଉଛି ତ ? ଆପଣଙ୍କର କୌଣସି ପ୍ରକାରର କଷ୍ଟ ନାହିଁ ତ ? ଆପଣଙ୍କର କୌଣସି ବସ୍ତୁର ଆବଶ୍ୟକତା ନାହିଁ ତ ?

Digitized by srujanika@gmail.com

ମୁନି କହିଲେ—"ହେ ରାଜା ! ଆପଣଙ୍କ ଛତ୍ରଚ୍ଛାୟାରେ ରହି ଆମ ମୁନିମାନଙ୍କର କଷ୍ଟ କିପରି ବା ହେବ ? କିନ୍ତୁ କୁମାର ! ମୁଁ ଗୋଟିଏ ଯଜ୍ଞ କରୁଛି ଆପଣ ନିଜର କଣ୍ଠହାର ମୋତେ ଦେଇ ଦିଅନ୍ତୁ, ମୋର ଯଜ୍ଞ ନିର୍ବିଘ୍ନରେ ସମାପ୍ତ ହୋଇଯାଉ । ଦକ୍ଷିଣା ଦେବା ନିମନ୍ତେ ମୋ ପାଖରେ ସୁବର୍ଣ୍ଣ ନାହିଁ । ବିନା ଦକ୍ଷିଣାରେ ଯଜ୍ଞ ହୁଏ ନାହିଁ ।"

ଉଦାର ରାଜକୁମାରଙ୍କ ନିମନ୍ତେ ଏହା ଏକ ସାଧାରଣ କଥା ଥିଲା । ତେଣୁ ସେ ତତ୍‌କ୍ଷଣାତ୍ ନିଜ କଣ୍ଠର ବହୁ ମୂଲ୍ୟ ହାର ବାହାର କରି ସେଇ କପଟ ମୁନିଙ୍କୁ ଦେଇଦେଲେ । ହାର ନେଇ ମୁନି କହିଲେ—"କୁମାର ! ଗୋଟିଏ କାମ ତୁମକୁ ଅବଶ୍ୟ କରିବା ପାଇଁ ପଡ଼ିବ । କିଛି ଦିନ ପାଇଁ ତୁମେ ମୋର ଆଶ୍ରମକୁ ରକ୍ଷାକର । ମୁଁ ଯମୁନା ଜଳରେ ବୁଡ଼ି ବରୁଣଦେବଙ୍କର ଉପାସନା କରିବି । ଯେତେଦିନଯାଏ ମୁଁ ନ ଫେରିବି, ସେତେଦିନଯାଏ ତୁମେ ମୋର ଆଶ୍ରମକୁ ରକ୍ଷା କରୁଥିବ, ନିଜ ପ୍ରତିଜ୍ଞାରେ କେବେ ବିଚ୍ୟୁତ ହେବନାହିଁ ।"

କୁମାର ତାହା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଦୈତ୍ୟ ଜଳରେ ବୁଡ଼ି ନିଜ ମାୟାବଳରେ ରାଜାଙ୍କ ଅନ୍ତଃପୁରରେ ପହଞ୍ଚିଲା । ସେ ଜାଣିଥିଲା ଯେ ମଦାଳସା କୁମାରଙ୍କୁ କେତେ ପ୍ରେମକରେ । ରାଜା-ରାଣୀ ଦୁହେଁ ତା'ର ସ୍ୱାଗତ ସତ୍କାର କଲେ । ସେ ସମବେଦନା ପ୍ରକଟ କରି କହିଲା—"ଆପଣମାନଙ୍କୁ ମୁଁ ଏକ ଅତ୍ୟନ୍ତ ଦୁଃଖଦ ସମାଚାର ଦେବାପାଇଁ ଆସିଛି । କୁମାର କୁବଳୟାଶ୍ୱ ନିଜ ଅଶ୍ୱାରୋହଣ କରି ମୋର ଆଶ୍ରମକୁ ଯାଇଥିଲେ । ସେଠାରେ ଦୁଷ୍ଟ ରାକ୍ଷସଗଣ ତାଙ୍କୁ ଘେରିଗଲେ । କୁମାର ଅତ୍ୟନ୍ତ ବୀରତ୍ୱର ସହ ସେମାନଙ୍କ ସହ ଯୁଦ୍ଧ କଲେ । କିନ୍ତୁ ଶେଷରେ ଦୈତ୍ୟଟିଏ ତାଙ୍କ ଛାତିରେ ତ୍ରିଶୂଳ ଭୁଷିଦେଲା । ମୃତ୍ୟୁ ସମୟରେ କୁମାର ନିଜ କଣ୍ଠହାର ମୋତେ ଦେଲେ ଏବଂ ଆପଣଙ୍କୁ ସୂଚନା ଦେବାପାଇଁ ଆଦେଶ ଦେଇ ସେ ପରଲୋକ ଗମନ କଲେ । ମୁନିମାନେ ଅତି କଷ୍ଟସ୍ୱୀକାର କରି ତାଙ୍କର ଅଗ୍ନି ସତ୍କାର କରିଦେଲେ । ତାଙ୍କର ଅଶ୍ୱ ମଧ୍ୟ ଦୁଃଖରେ ଅଶ୍ରୁମୋଚନ କରିବାକୁ ଲାଗିଲା । କିନ୍ତୁ ଦୁଷ୍ଟ ଦୈତ୍ୟମାନେ ତାକୁ ଜବରଦସ୍ତି ଧରି ନେଇଗଲେ । ମୁଁ କେବଳ ସୂଚନା ଦେବାପାଇଁ ତାଙ୍କ କଣ୍ଠହାର ନେଇ ଆସିଲି ।" ଏହା କହି ସେହି କପଟମୁନି ତତ୍‌କ୍ଷଣାତ୍ ସେଠାରୁ ଚାଲିଗଲା । ମଦାଳସା ପତିଙ୍କର ମୃତ୍ୟୁ ଖବର ଶୁଣିବା ମାତ୍ରେ ମୂର୍ଚ୍ଛିତା ହୋଇ ଭୂମିରେ ପଡ଼ିଗଲା । ମୁହୂର୍ତ୍ତକ ମଧ୍ୟରେ ତା'ର ପ୍ରାଣପକ୍ଷୀ ତା'ର ଦେହ ପିଞ୍ଜରାକୁ ପରିତ୍ୟାଗ କରି ଉଡ଼ିଗଲା । ତା'ର ପ୍ରାଣହୀନ ଶରୀର ପଡ଼ିରହିଲା । ଏକେତ କୁମାରଙ୍କର ମୃତ୍ୟୁ ସମାଚାରରେ ସମସ୍ତେ ଦୁଃଖୀ ଥିଲେ, ବର୍ତ୍ତମାନ ପୁତ୍ର-ବଧୂର ପରଲୋକ ଗମନରେ ସମସ୍ତଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ଅନ୍ତଃପୁରର ସମସ୍ତ ସ୍ତ୍ରୀ ଛାତି ପିଟି ପିଟି

Digitized by srujanika@gmail.com

କାନ୍ଦୁଥିଲେ । ଏ ଖବର ଶୁଣିବାମାତ୍ରେ ଅଂସଖ୍ୟ ପ୍ରଜା ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଏକତ୍ରିତ ହୋଇଗଲେ । ମଦାଳସାଙ୍କୁ ମୃତ୍ୟୁ ଅବସ୍ଥାରେ ଦେଖି ସମସ୍ତେ ବିକଳରେ ଅଶ୍ରୁ ତର୍ପଣ କରିବାକୁ ଲାଗିଲେ । ରାଜକୁମାର ତଥା ମଦାଳସାର ନାମନେଇ ସମସ୍ତେ ବାହୁନି ବାହୁନି କାନ୍ଦୁଥିଲେ ।

ରାଜା-ରାଣୀ ସମସ୍ତଙ୍କୁ ଧୈର୍ଯ୍ୟ ଧରିବାକୁ କହିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ-ମାନଙ୍କର ରକ୍ଷା ନିମନ୍ତେ ତାଙ୍କର ପୁତ୍ର ପରଲୋକ ଗମନ କରିଛି ଭାବି, ନିଜକୁ ସାନ୍ତ୍ୱନା ଦେଲେ । ସମସ୍ତଙ୍କୁ ବୁଝାଇ ଶୁଝାଇ ରାଜା ମଦାଳସାର ମୃତ ଶରୀରକୁ ଶ୍ମଶାନକୁ ନେଇଗଲେ ଏବଂ ବିଧିବତ୍ ତା'ର ଦାହ ସଂସ୍କାର କରାଇଲେ । ଦାହ ପରେ ସେ ପୁତ୍ର ଏବଂ ପୁତ୍ରବଧୂଙ୍କୁ ଜଳ ତର୍ପଣ କରି ଘରକୁ ଫେରି ଆସିଲେ ।

ଏପଟେ ମୁନି ହୋଇଥିବା ତାଳକେତୁ ତତ୍କ୍ଷଣାତ୍ ଜଳ ଭିତରୁ ଫେରି କ୍ଷଣକ ମଧ୍ୟରେ ଆଶ୍ରମ ନିକଟରେ ଉପସ୍ଥିତ ହେଲା ତଥା ଅତ୍ୟନ୍ତ ଶିଷ୍ଟାଚାର ସହ କୁମାରଙ୍କୁ କହିଲା—"ରାଜପୁତ୍ର ! ଆପଣ ନିଷ୍କପଟ ଭାବରେ ମୋର ସେବା କରିଛନ୍ତି । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣଙ୍କୁ କଷ୍ଟ ଅବଶ୍ୟ ହୋଇଛି ତଥାପି ମୋର ବରୁଣଙ୍କ ନିମନ୍ତେ ସାଧନା ସଫଳତା ସହ ସମାପ୍ତ ହୋଇଛି । ବର୍ତ୍ତମାନ ଆପଣ ଖୁସିର ସହିତ ନିଜ ନଗରକୁ ଯାଇ ପାରନ୍ତି ।"

ରାଜକୁମାର ସେଇ କପଟ ମୁନିର ଆଜ୍ଞାନେଇ ତାଙ୍କୁ ପ୍ରଣାମ କରି ନିଜ ପରମ ବେଗବାନ ଅଶ୍ୱ ଉପରେ ଚଢ଼ି ନିଜ ରାଜ୍ୟକୁ ଚାଲିଲେ । ସେ ନିଜ ପିତା ମାତାଙ୍କର ଚରଣରେ ପ୍ରଣାମ କରିବା ନିମିତ୍ତ ଉତ୍ସୁକ ହୋଇ ପଡ଼ିଥିଲେ । ଭାବୁଥିଲେ, ମଦାଳସା ତ ଏପର୍ଯ୍ୟନ୍ତ ଜଳ ସ୍ପର୍ଶ କରି ନଥିବ । ସେ ମୋର ପ୍ରତୀକ୍ଷା କରୁଥିବ । ତା'ର ପ୍ରତ୍ୟେକ ମୁହୂର୍ତ୍ତ ଅତ୍ୟନ୍ତ କଷ୍ଟରେ କଟୁଥିବ । ମୋତେ ଦେଖିବା କ୍ଷଣି ସେ କହିବ—"ପ୍ରାଣ ନାଥ ! ଆଜି ଏତେ ବିଳମ୍ବ ହେଲା କାହିଁକି ?" ଏଇ ସବୁ କଥା ଭାବି ଭାବି ସେ ଅତି ଅଳ୍ପ ସମୟ ମଧ୍ୟରେ ନିଜ ନଗରରେ ପହଞ୍ଚି ଗଲେ । ସେଠାରେ ପହଞ୍ଚି ସେ ଦେଖିଲେ ସର୍ବତ୍ର ଉଦାସୀନତାର ଭାବ । ପ୍ରତ୍ୟେକ ବ୍ୟକ୍ତି ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା । କେହି କିଛି କହୁ ନଥିଲେ । କୁମାର କିଛି ବୁଝି ପାରୁ ନଥିଲେ । ସେ ସିଧା ମହଲ ଭିତରକୁ ଚାଲିଗଲେ । ସେଠି ମଧ୍ୟ ସର୍ବତ୍ର ଶୋକର ସ୍ତବ୍ଧତା ବିଦ୍ୟମାନ ଥିଲା । ସ୍ତ୍ରୀ ପୁରୁଷଙ୍କ ଦ୍ୱାରା ନାରୀପୂର୍ଣ୍ଣ ମହଲ ତାଙ୍କୁ ଶୂନ୍ୟ ପ୍ରତୀୟମାନ ହେଉଥିଲା । ତା'ପରେ ସେ ପିତାମାତାଙ୍କର ଚରଣ ସ୍ପର୍ଶ କଲେ । ସେମାନେ କାନ୍ଦି କାନ୍ଦି ତାଙ୍କୁ କୁଣ୍ଢାଇଧରି ଅନେକ ଆଶୀର୍ବାଦ ଦେଲେ । ପୁତ୍ରର ପୁନଃପ୍ରାପ୍ତିରେ ସେମାନେ ଆନନ୍ଦିତ ହେଉଥିଲେ ମଧ୍ୟ ପୁତ୍ରବଧୂର ମୃତ୍ୟୁ ସେମାନଙ୍କୁ ଅଧୀର କରୁଥିଲା ।

Digitized by srujanika@gmail.com

କୁମାର ତାଙ୍କୁ ହର୍ଷ ତଥା ବିଷାଦର କାରଣ ପଚାରିଲେ । ତେଣୁ ପିତା ତାଙ୍କୁ ଆମୂଳଚୂଳ ସମସ୍ତ କଥା ଶୁଣାଇ ଦେଲେ । ମଦାଳସାର ମୃତ୍ୟୁ ସମ୍ବାଦ ଶୁଣି କୁମାର କିଂକର୍ତ୍ତବ୍ୟ ବିମୂଢ ହୋଇଗଲେ । ମାତା-ପିତାଙ୍କ ସମ୍ମୁଖରେ ସେ ଶୋକ ମଧ୍ୟ ବ୍ୟକ୍ତ କରିପାରୁ ନଥିଲେ । ଲଜ୍ଜା ହେତୁ ସେ ମୂକ ହୋଇ ରହିଗଲେ । ବାରମ୍ବାର ମଦାଳସାର ସ୍ମୃତିରେ ତାଙ୍କର ହୃଦୟ ଶୋକ ଜର୍ଜ୍ଜରିତ ହେଉଥିଲା । ସେ ଭାବୁଥିଲେ—"ହାୟ ! ସେ କେତେ ସତୀ ସାଧ୍ୱୀ ନଥିଲା । ମୋ ପ୍ରତି ତା'ର କେତେ ଅନୁରାଗ ଥିଲା । ପ୍ରେମ ଯଦି ହୁଏ ତ ଏମିତି ହିଁ ହେଉ । ମୋର ମୃତ୍ୟୁ ସମ୍ବାଦ ଶୁଣିବା ମାତ୍ରେ ହିଁ ସେ ପ୍ରାଣତ୍ୟାଗ କରିଦେଲା ! ମୋ ପରି ଅଧମ, କୃତଘ୍ନ, ମୂର୍ଖ ତଥା ହୃଦୟହୀନକୁ ଧିକ୍ ! ମୋର ଏପରି ପ୍ରିୟତମା ପତ୍ନୀକୁ ହରାଇ ବି ମୁଁ କିପରି ବଞ୍ଚିରହିଛି ! ବର୍ତ୍ତମାନ ମୋତେ ମଧ୍ୟ ତା'କୁ ଅନୁସରଣ କରିବା ଉଚିତ ।

କୁମାର ପୁଣି ଗମ୍ଭୀର ଭାବରେ ଚିନ୍ତାକଲେ—"ମୋର କର୍ତ୍ତବ୍ୟ କଅଣ ? ମୋର ପ୍ରାଣପ୍ରିୟା ଯାହା କରିଛି ଉଚିତ ହିଁ କରିଛି । କିନ୍ତୁ ପ୍ରାଣତ୍ୟାଗ କରିବା ନିମିତ୍ତ ମୋର ସ୍ୱତନ୍ତ୍ରତା ନାହିଁ । ମୁଁ ମୋର ପୂଜନୀୟ ପିତାଙ୍କର ଅଧୀନ । ମୁଁ ମରିଗଲେ ତା'ର କଅଣ ବା ଉପକାର ହେବ, ଯଦି ମୁଁ ଦିନରାତି ଶୋକ ଭିତରେ ବୁଡ଼ିରହିବି ତେବେ ମୋର ପିତାମାତାଙ୍କୁ ଅତ୍ୟଧିକ କଷ୍ଟ ହେବ । ତେଣୁ ମୁଁ ଆଜିଠାରୁ ଏଇ ପ୍ରତିଜ୍ଞା କରୁଛି ଯେ ମଦାଳସାକୁ ଛାଡ଼ି କୌଣସି ଦ୍ୱିତୀୟ ସ୍ତ୍ରୀକୁ ମୁଁ ପତ୍ନୀ ରୂପରେ ସ୍ପର୍ଶ କରିବି ନାହିଁ । ଯଦି ଏଇ ଜନ୍ମରେ ମୋର ମନୋରମା ମଦାଳସା ପୁନଃପ୍ରାପ୍ତି ହୁଏ ତେବେ ମୁଁ ତାକୁ ସ୍ତ୍ରୀ ରୂପେ ଗ୍ରହଣ କରିବି ନ ହେଲେ ଆଜିଠାରୁ ସ୍ତ୍ରୀ ମାତ୍ରେ ହିଁ ମୋର ପୂଜନୀୟା । ମୁଁ ସ୍ତ୍ରୀ ସୁଖକୁ ସର୍ବଦା ତ୍ୟାଗ କରିବି ।" ଏହିପରି ପ୍ରତିଜ୍ଞା କରି ସେ ମାତା ପିତାଙ୍କର ସେବା କରିବା ସହିତ ମଦାଳସାର ସ୍ମୃତିରେ ଦିନରାତି ବିତାଇବାରେ ଲାଗିଲେ । ମଦାଳସାକୁ ସେ ଆଦୌ ଭୂଲି ପାରୁ ନଥିଲେ । ସର୍ବଦା ତା'ର ମନୋହର ମୂର୍ତ୍ତି ତାଙ୍କର ହୃଦୟରେ ନୃତ୍ୟ କରୁଥିଲା ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମନୁଷ୍ୟ ପ୍ରେମ ବିନା ରହିପାରିବ ନାହିଁ । ମନୁଷ୍ୟଙ୍କ କଥା ତ ଅଲଗା । ପଶୁ ମଧ୍ୟ ପ୍ରେମ କରେ । ମନୁଷ୍ୟର ହୃଦୟରେ ପ୍ରେମ ଏବଂ ଘୃଣା କରିବାର ପ୍ରବୃତ୍ତି ଅଛି । ତାକୁ କାହାକୁ ପ୍ରେମ କରିବାକୁ, ମିଠା ମିଠା କଥା କହିବାକୁ ଅତ୍ୟନ୍ତ ଖୁସି ଲାଗେ । ଘୃଣା କରିବାରେ, ପରନିନ୍ଦା କରିବାରେ, ମଧ୍ୟ ତାକୁ ଯଥେଷ୍ଟ ତୃପ୍ତି ମିଳେ । ପରନିନ୍ଦା କରି ସେମାନେ ଯଦି ସୁଖପାଉ ନଥାନ୍ତେ ତାହା ହେଲେ ଏତେ ପାଠଶାଠ ପଢ଼ି ଲୋକେ ଅକାରଣରେ ବଡ଼ ବଡ଼ ଲୋକଙ୍କର ନିନ୍ଦା କରନ୍ତେ କାହିଁକି ? ନିନ୍ଦା କରିବା ଦ୍ୱାରା ସେମାନଙ୍କୁ ସୁଖ ଅନୁଭବ ହୋଇଥାଏ । ଯେଉଁ ଲୋକ ଅନ୍ୟର ନିନ୍ଦା କରନ୍ତି ନାହିଁ, କୌଣସି ଜଣେ ପାଖରେ ନିଜର

Digitized by srujanika@gmail.com

ମନଧ୍ୟାନ ଦେଇଥାଆନ୍ତି, ଯେ ସଂଯମୀ, ସଦାଗୃହସ୍ଥ ପୁରୁଷଶ୍ରେଷ୍ଠ ହୋଇଥାଆନ୍ତି । ଏହିପରି ପୁରୁଷମାନଙ୍କୁ ପ୍ରେମ କରିବା ବ୍ୟକ୍ତିର ମଧ୍ୟ ଆବଶ୍ୟକତା ଥାଏ । ଏ ମନୁଷ୍ୟ ପ୍ରାଣୀ ଅନାଦି କାଳରୁ ପ୍ରେମ ବୁଭୁକ୍ଷୁ । ଯଦି ପ୍ରେମର ଭୋକ ପ୍ରବଳ ନୁହେଁ, ତେବେ ଯେଉଁମାନଙ୍କର ଖାଇବା, ପିଇବା, ପିନ୍ଧିବା ତଥା ସମସ୍ତ ପ୍ରକାର ସୁବିଧା ଥାଏ ତଥାପି ବି ସେମାନେ ଦୁଃଖୀ ଦେଖାଯାଆନ୍ତି କାହିଁକି ? ଦୁଃଖବସ୍ତୁର ସଂଗ୍ରହ ବା ଅଭାବ ଉପରେ ନିର୍ଭର କରେ ନାହିଁ । ଆମେ ଯାହା ଚାହୁଁ ତା ନପାଇଲେ ଦୁଃଖ ଲାଗେ । ଆମେ ଆଶାକରୁ ଆମର ବନ୍ଧୁ ଆମକୁ ଶ୍ରଦ୍ଧା କରନ୍ତୁ, କିନ୍ତୁ ସେ ଯଦି ତାହା ନକରି ବିଶ୍ୱାସଘାତ କରନ୍ତି ତେବେ ଆମକୁ ଦୁଃଖ ଲାଗେ । ପତ୍ନୀ ଚାହିଁଥାଏ ପତି ମୋତେ ପ୍ରେମ କରନ୍ତୁ । କିନ୍ତୁ ଯଦି ସେ ପତ୍ନୀକୁ ପ୍ରେମ ନ କରି ଅନ୍ୟ କେଉଁ ସ୍ତ୍ରୀକୁ ପ୍ରେମ କରେ, ତେବେ ପତ୍ନୀକୁ ମର୍ମାନ୍ତକ ପୀଡ଼ା ହୋଇଥାଏ । ପ୍ରେମ ବିନା କୌଣସି ପଦାର୍ଥର କିଛି ସ୍ୱାଦ ନଥାଏ । ବିନା ପ୍ରେମରେ ଅମୃତ ପିଆଇଲେ ବି ତାହା ଅତୃପ୍ତିକର ହୋଇଥାଏ ଏବଂ ପ୍ରେମ ସହିତ ବିଷ ପିଆଇଲେ ତାହା ଅମୃତ ସମାନ ହୋଇଥାଏ । ଭଗବନ୍ ! ଆପଣମାନେ ତ ବାଲ୍ୟକାଳରୁ ବାବାଜୀ ହୋଇଯାଇଛନ୍ତି । ଶୈଶବରୁ ହିଁ ଆପଣମାନେ ପ୍ରଭୁଙ୍କ ସହିତ ପ୍ରେମ ଆରମ୍ଭ କରିଛନ୍ତି । ଆପଣ ସମସ୍ତେ ବିଦ୍ୱାନ୍, କାରଣ ପୁରୁଷ । ସାଧାରଣ ପୁରୁଷଙ୍କୁ ଦେଖନ୍ତୁ ସେମାନେ ପ୍ରେମପାଇଁ କେତେ ବ୍ୟାକୁଳ ହେଉଛନ୍ତି । ବାଳକ ନିଜର ସାଥୀ ବାଳକ-ବାଳିକାଙ୍କ ସହ କିପରି ପ୍ରେମକରେ । ଜଣେ ଅନ୍ୟଜଣଙ୍କ ସହ ଖେଳେ, ତାକୁ ନିଜଘରକୁ ନେଇଯାଏ । ସାଙ୍ଗର ପିତାକୁ ପିତାବୋଲି କୁହେ, ଦୁଇଜଣ ସାଙ୍ଗ ହୋଇ ଗୋଟିଏ ଥାଳିରେ ଖାଆନ୍ତି । ବାଲ୍ୟକାଳରେ ସରଳତା ହିଁ ପୂରି ରହିଥାଏ । ବାଲ୍ୟକାଳର ବନ୍ଧୁତା ନିସ୍ୱାର୍ଥ-ନିଷ୍କପଟ ହୋଇଥାଏ । ଗ୍ରେଟ ଗ୍ରେଟ ଝିଅମାନେ ସାଙ୍ଗ ମେଳରେ ମନକଥା ଖୋଲି ଖୋଲି ଭାବରେ କଥାବାର୍ତ୍ତା ହୁଅନ୍ତି । କନ୍ଦେଇ ଖେଳରେ ସେମାନଙ୍କର ସମସ୍ତ ଭୁଲିଯାଏ । ସେଇ କନ୍ଦେଇ ଖେଳ ଭିତରେ ଲଢ଼େଇ ହୋଇଥାଏ ପୁଣି ପ୍ରେମ ବି ହୋଇଥାଏ । ବାଳକ ଯାହାକୁ ବି ଦେଖେ ସେଥିରେ ସେ ପ୍ରେମକୁ ହିଁ ଖୋଜିଥାଏ, ସ୍ନେହଶ୍ରଦ୍ଧାକୁ ଅଣ୍ଟାଳିଥାଏ । ସେଥିପାଇଁ ଶିଶୁମାନଙ୍କୁ ସମସ୍ତେ ଭଲପାଆନ୍ତି । ଯୁବାବସ୍ଥାରେ କିନ୍ତୁ କାହାକୁ ହୃଦୟ ଅର୍ପଣ କରିବା ନିମନ୍ତେ ମନ ବ୍ୟାକୁଳ ହୋଇଉଠେ । ସେଥିପାଇଁ ପିତା ମାତା ଯୁବାବସ୍ଥାରେ ବିବାହ କରି ଦିଅନ୍ତି । ପତ୍ନୀ ନିଜର ବାଞ୍ଛିତ ସ୍ୱାମୀ ପାଇ ତଥା ପତି ନିଜର ଇପ୍ସିତ ସ୍ତ୍ରୀ ପାଇ ନିଜ ନିଜର ହୃଦୟ ସମର୍ପଣ କରି ଥାଆନ୍ତି । ଯଦି ଦୁହିଁଙ୍କର ମନମିଶି ନଥାଏ ସାରା ଜୀବନ କାନ୍ଦି କରି ବିତିଥାଏ । ଯେଉଁ ସ୍ୱାମୀ ପତ୍ନୀକୁ ପ୍ରକୃତରେ ପ୍ରେମ କରନ୍ତି ଏବଂ ସେଇ ପତ୍ନୀର ମୃତ୍ୟୁ ହୋଇଯାଏ, ତେବେ ସତ୍‌ପତି କେବେହେଲେ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରନ୍ତି ନାହିଁ । ତା'ପରେ ସେ ନିଜ ବନ୍ଧୁମାନଙ୍କ ପ୍ରେମରେ ହିଁ ବାନ୍ଧି ହୋଇ ରହିଯାଆନ୍ତି । ପିତା ପୁତ୍ରକୁ ପ୍ରେମ କରି ନିଜର

Digitized by srujanika@gmail.com

ଉଦବବ୍ୟକ୍ତ କରି ହଅନ୍ତି । ଯାହାଙ୍କର ନାଁ ତ ସ୍ତ୍ରୀ ଆନ୍ତି, ପିଲା, ନାଁ କେହି ଆତ୍ମୀୟ ସ୍ୱଜନ ଭାଇବନ୍ଧୁ ଥାଆନ୍ତି, ଏପରି ସାଧୁ ସନ୍ଥ ନିଜର ଶିଷ୍ୟମାନଙ୍କୁ ହିଁ ପ୍ରେମ ପ୍ରଦର୍ଶନ କରି ଥାଆନ୍ତି । ଯେଉଁ ହତଭାଗ୍ୟର ପ୍ରେମ କରିବା ନିମିତ୍ତ କେହି ବି ନଥାଆନ୍ତି ସେ ପାଷାଣ ହୃଦୟ ହୋଇ ସଂସାରରେ ଜଡ଼ତାକୁ ହିଁ ପ୍ରାପ୍ତି ହୋଇଥାଏ, ଅଥବା ପ୍ରେମ ଭାବରେ ମଗ୍ନ ହୋଇ ନିଜର ନିଜତ୍ୱକୁ ବି ସେଥିରେ ହଜେଇ ଦେଇଥାଆନ୍ତି ।"

କୁମାର ଋତଧ୍ୱଜ ନିଜ ପତ୍ନୀଙ୍କୁ ଅତ୍ୟଧିକ ପ୍ରେମ କରୁଥିଲେ । କିନ୍ତୁ ସେ ତାଙ୍କର ମିଥ୍ୟା ମୃତ୍ୟୁର ସମ୍ବାଦ ପାଇ ପତି ବିୟୋଗରେ ପରଲୋକ ଗମନ କଲା । ରାଜକୁମାର ସଦାସର୍ବଦା ତା'ରି ଚିନ୍ତାରେ ବୁଡ଼ି ରହିଲେ । ତାଙ୍କର ପିତା ଚିନ୍ତାକଲେ—"ପୁତ୍ରର ଯେପରି ଭାବରେ ହେଉ ମନଖୁସି କରିବାକୁ ପଡ଼ିବ ।" ସେ ଜାଣିଥିଲେ ମୋର ପୁତ୍ର ପରମ ସଦାଚାରୀ, ଦୃଢ଼ ପ୍ରତିଜ୍ଞ ଅଟେ । କୌଣସି ସ୍ତ୍ରୀ ସହ ସେ କଥାବାର୍ତ୍ତା ମଧ୍ୟ କରେ ନାହିଁ । ତେଣୁ କେତେକ ରାଜକୁମାରଙ୍କୁ ତା'ନିକଟରେ ରଖିବା ଉଚିତ । ଫଳରେ ରାଜକୁମାରଙ୍କ ହୁଏତ ମନ ପରିବର୍ତ୍ତନ ହେବ । ଏହା ଭାବି ସେ କୁମାରଙ୍କର ସମବୟସ୍କ ଅନେକ ରାଜକୁମାରଙ୍କୁ ଆଣି ସେଠାରେ ରଖିଲେ । ରାଜକୁମାର ସେମାନଙ୍କ ସହ ହସି-ଖେଳ ସମୟ କଟାଇଲେ । ଏହା ଦେଖି ରାଜା ପରମ ଆନନ୍ଦ ଲାଭ କଲେ । ସେ ନିୟମ କରି ଦେଲେ, ଯେ ରାଜକୁମାରଙ୍କ ସମବୟସ୍କ କେହି ଆସିଲେ ବିନା ପ୍ରତିରୋଧରେ ସେମାନେ ରାଜକୁମାରଙ୍କ ନିକଟକୁ ଯାଇପାରିବେ । ଏହାଦ୍ୱାରା ଋତଧ୍ୱଜଙ୍କର ଅନେକ ସମବୟସ୍କ ସାଥୀ, ମହଲକୁ ଆସି ତାଙ୍କ ସହ ହସି-ଖେଳ ତାଙ୍କର ମନ ବିନୋଦନ କରିବାକୁ ଲାଗିଲେ । ବର୍ତ୍ତମାନ କୁମାରଙ୍କର ଅଧିକାଂଶ ସମୟ ନିଜ ସଙ୍ଗୀମାନଙ୍କ ସହ ବିତିବାରେ ଲାଗିଲା ।

ରାଜକୁମାର ଋତଧ୍ୱଜ ପ୍ରେମୀ ଥିଲେ, ଉଦାର ଥିଲେ ଓ ସହୃଦୟ ମଧ୍ୟ ଥିଲେ । ତେଣୁ ଅନେକ କୁମାର ତାଙ୍କର ନିକଟବର୍ତ୍ତୀ ହେଲେ । ସମସ୍ତଙ୍କର ଉପଯୁକ୍ତ ସ୍ୱାଗତ ସତ୍କାର କରୁଥିଲେ, ସମସ୍ତଙ୍କ ସହ ମଧୁର ଭାବରେ କଥାବାର୍ତ୍ତା କରୁଥିଲେ, ସମସ୍ତଙ୍କ ସାଥୀରେ ବସି ଭଗବାନଙ୍କର ପ୍ରସାଦ ପାଉଥିଲେ । ସମସ୍ତଙ୍କ ସହ ହସି ଖେଳ ବିଭିନ୍ନ ପ୍ରକାରର ହାସ କୌତୁକ କରୁଥିଲେ ।

ପ୍ରେମରେ ସ୍ଥାନର ଦୂରତ୍ୱ ବ୍ୟବଧାନ ସୃଷ୍ଟି କରେନି । ପ୍ରେମୀ ପ୍ରେମୀକୁ ହିଁ ଖୋଜି ନେଇଥାଏ । ପ୍ରେମ ଲୁଚାଇଲେ ମଧ୍ୟ ଲୁଚିରହି ପାରେନି । ପ୍ରେମର ସୁରଭି ବିନାପ୍ରସାରଣରେ ହିଁ ବ୍ୟାପ୍ତ ହୋଇଯାଏ । ପାତାଳରେ ରହୁଥିବା ନାଗରାଜ ଅଶ୍ୱତରଙ୍କର ଦୁଇ କୁମାର ଥିଲେ । ସେମାନେ ମନୁଷ୍ୟ ବେଶହୋଇ ଦିନେ ପୃଥିବୀ ଉପରକୁ ବୁଲିବାପାଇଁ ଆସି ରାଜା ଶତ୍ରୁଜିତଙ୍କ ନିକଟରେ ପହଞ୍ଚିଲେ । ସେମାନେ

Digitized by srujanika@gmail.com

କୁମାର ଋତଧ୍ୱଜଙ୍କୁ ନିଜର ସମବୟସ୍କ ଯୁବକମାନଙ୍କ ସହ ହାସ୍ୟ-ପରିହାସ ତଥା ବିଭିନ୍ନ ପ୍ରକାରର କୌତୁକପୂର୍ଣ୍ଣ, ପ୍ରେମପୂର୍ଣ୍ଣ ବାର୍ତ୍ତାଳାପ କରୁଥିବାର ଦେଖିଲେ । ତାଙ୍କର ନମ୍ର ସ୍ୱଭାବ ଏବଂ ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାର ଦେଖି ନାଗକୁମାରଦ୍ୱୟ ମୁଗ୍ଧ ହୋଇଗଲେ । ରାଜକୁମାର ଋତଧ୍ୱଜ ସେ ଦୁହିଁଙ୍କର ମଧ୍ୟ ସ୍ୱାଗତ କଲେ, ଏବଂ କିଛି ସମୟ ମଧ୍ୟରେ ସେମାନେ ପରସ୍ପର ସହ ଘନିଷ୍ଠ ହୋଇଗଲେ । ଯିବା ସମୟରେ କୁମାର କହିଲେ—"କାଲି ନିଶ୍ଚୟ ଆସିବେ । ମୁଁ ପ୍ରତୀକ୍ଷା କରୁଛି ଯେତେବେଳଯାଏ ଆପଣ ଦୁଇଜଣ ନ ଆସିବେ ମୁଁ ପ୍ରସାଦ ପାଇବିନି । ଦେଖନ୍ତୁ ଭୁଲି ଯିବେନି ।"

ନାଗକୁମାରମାନେ ମଧ୍ୟ କହିଲେ—"ହଁ, କାଲି ଆମେ ନିଶ୍ଚୟ ଆସିବୁ ।" ଏହା କହି ସେ ଦୁହେଁ ସ୍ନେହପୂର୍ଣ୍ଣ ହୃଦୟରେ କୁମାରଙ୍କଠାରୁ ବିଦାୟ ନେଲେ । ସାରା ରାତି କୁମାରଙ୍କ ପ୍ରେମପୂର୍ଣ୍ଣ ବ୍ୟବହାର କଥା ଚିନ୍ତା କରି କରି ନିଦ ବି ତାଙ୍କ ଆଖିକୁ ଆସିଲା ନାହିଁ । ପ୍ରଭାତ ହେବାମାତ୍ରେ ସେମାନେ ପୁନଶ୍ଚ ରାଜକୁମାରଙ୍କ ନିକଟରେ ପହଞ୍ଚିଗଲେ । କୁମାର ତାଙ୍କୁ ଦେଖିବାମାତ୍ରେ ପ୍ରଫୁଲ୍ଲିତ ହୋଇ ଉଠିଲେ ।"

ପ୍ରାୟ ଦେଖାଯାଏ ଯେ ଯାହା ସହିତ ଆମର ଜନ୍ମ ଜନ୍ମାନ୍ତରର ଘନିଷ୍ଠ ସମ୍ବନ୍ଧ ଥାଏ ତାକୁ ଦେଖିବାମାତ୍ରେ ହିଁ ପ୍ରେମର ଉଦ୍ରେକ ହୋଇଥାଏ । ଶ୍ରେଣୀରେ ଅନେକ ବିଦ୍ୟାର୍ଥୀ ଥାଆନ୍ତି, ସେମାନେ ଜଣେ ଶିକ୍ଷକଙ୍କଠାରୁ ଶିକ୍ଷା ଗ୍ରହଣ କରନ୍ତି । ଗୋଟିଏ ସ୍ଥାନରେ ପଢ଼ନ୍ତି, ଗୋଟିଏ ହିଁ ଛାତ୍ରାବାସରେ ରହନ୍ତି, ତଥାପି ବି କାହା ସହିତ ଆମର ମାତ୍ର ଗୋଟିଏ ଦିନରେ ହିଁ ଘନିଷ୍ଠତା ହୋଇଯାଏ, ଅଥଚ ବର୍ଷ ବର୍ଷ ଚାଲିଗଲେ ସୁଦ୍ଧା ଅନେକଙ୍କ ସହ ପରିଚୟ ମଧ୍ୟ ହୁଏ ନାହିଁ । ଏମିତି ତ କୁମାର ସମସ୍ତଙ୍କୁ ଶ୍ରଦ୍ଧା କରୁଥିଲେ କିନ୍ତୁ ନାଗକୁମାରଙ୍କ ସହ ତାଙ୍କର ଅତ୍ୟଧିକ ସ୍ନେହ ହୋଇଯାଇଥିଲା । ସେ ସେମାନଙ୍କ ବିନା ବ୍ୟାକୁଳ ହୋଇ ପଡ଼ୁଥିଲେ । ସେମାନଙ୍କୁ ନ ଖୁଆଇ କୌଣସି ପଦାର୍ଥ ଖାଉ ନଥିଲେ । ଯେତେ ଉତ୍ତମ ପଦାର୍ଥ ହେଲେ ସୁଦ୍ଧା ପ୍ରଥମେ ସେ ଦୁହିଁଙ୍କୁ ଦେଉଥିଲେ । ଗୁପ୍ତରୁ ଗୁପ୍ତ କଥା ସେଇମାନଙ୍କ ସହ ହିଁ କଥାବାର୍ତ୍ତା ହେଉଥିଲେ । ଦିନେ ନାଗକୁମାରଦ୍ୱୟ କହିଲେ—"କୁମାର ! ଆପଣ ବିବାହ କାହିଁକି କରୁ ନାହାଁନ୍ତି ?"

କୁମାର ସେ କଥାକୁ ଏଡ଼ାଇଦେଇ କହିଲେ—"ଆରେ ଭାଇ ! ବିବାହରେ କଅଣ ଅଛି ! ଏମିତି ହସି ଖେଳି ଦିନ କଟିଯିବ ।"

ନାଗକୁମାରଦ୍ୱୟ ତ ଉପଦେବ ଥିଲେ । କୁମାରଙ୍କର ହୃଦୟରେ ଏକ ମର୍ମାନ୍ତିକ ଯନ୍ତ୍ରଣା ଥିବା କଥା ଜାଣି ପାରିଲେ । ତେଣୁ ସେମାନେ କହିଲେ—"ଆପଣ ଆମଠାରୁ କିଛି ଲୁଚାଉଛନ୍ତି । ଆପଣ ବିବାହ ନ କରିବାର ପ୍ରକୃତ କାରଣ ଆମକୁ କହନ୍ତୁ ।"

Digitized by srujanika@gmail.com

ଏହା ଶୁଣି କୁମାର କହିଲେ—"ଆପଣମାନଙ୍କଠାରୁ ଲୁଚାଇବା ପରି କଥା କିଛି ନାହିଁ । ମୁଁ ଭାବିଥିଲି ମୁଁ ଆପଣମାନଙ୍କୁ କେବଳ ମୋର ପ୍ରେମର ଅଂଶୀଦାର କରିବି । ମୋ ଦୁଃଖରେ ଆପଣଙ୍କୁ କାହିଁକି ଦୁଃଖୀ କରିବି । କିନ୍ତୁ ପ୍ରକୃତମିତ୍ର ତ ସୁଖ ଅପେକ୍ଷା ଦୁଃଖର ଭାଗୀ ହେବାକୁ ଚାହିଁଥାଏ । ମୋର ମଦାଳସା ବୋଲି ଅତ୍ୟନ୍ତ ପ୍ରିୟତମା ପତ୍ନୀଟିଏ ଥିଲା । ସେ ମୋ ବିଚ୍ଛେଦ ସହି ନପାରି ପ୍ରାଣତ୍ୟାଗ କରିଦେଲା । ସେହି ଦିନଠାରୁ ମୁଁ ପ୍ରତିଜ୍ଞା କରିଛି, ଯେ ମଦାଳସାକୁ ଛାଡ଼ି ଅନ୍ୟ କୌଣସି ସ୍ତ୍ରୀ ସହ ସମ୍ବନ୍ଧ ରଖିବି ନାହିଁ । ସେଥିପାଇଁ ଏହି ଜୀବନରେ ସ୍ତ୍ରୀ ସୁଖ ଭୋଗର ଲାଳସା ମୋର ଆଉ ନାହିଁ । ମୁଁ ମଦାଳସାକୁ କୌଣସି ଭାବେ ଭୁଲି ପାରିବି ନାହିଁ । ଏହା କହୁ କହୁ କୁମାରଙ୍କର ଆଖିରୁ ଟପ ଟପ ହୋଇ ଲୁହ ଖସି ପଡ଼ିଲା । ସତେ ଯେପରି ତାଙ୍କର ହୃଦୟରେ ଜମାଟ ବାନ୍ଧିଥିବା ଯନ୍ତ୍ରଣା ସ୍ନେହ ରୂପକ ଉଷ୍ଣତାକୁ ପାଇ ତରଳି ଯାଇ ନେତ୍ରବାଟେ ବାହାରକୁ ବହି ଆସୁଛି । ରାଜକୁମାରଙ୍କର କୌଣସି କଷ୍ଟ ଥିଲେ ତାହା ଦୂର କରି ନେବାକୁ ନାଗକୁମାର ଦୁହେଁ ଚାହୁଁ ଥିଲେ । କିନ୍ତୁ ଯେଉଁ ସ୍ତ୍ରୀ ମରିଯାଇଛି ଯାହାର ଦାହ ସଂସ୍କାର ବି ସରିଯାଇଛି ତା'ର ପୁନଃପ୍ରାପ୍ତି କିପରି ବା ହୋଇପାରିବ । ଏହା ଭାବି ସେମାନେ ନିରାଶ ହୋଇ ପଡ଼ିଲେ । ଏହି ଘଟଣା ଶୁଣିବାପରେ ସେ ଦୁହିଁଙ୍କର କୁମାରଙ୍କ ପ୍ରତି ଅନୁରାଗ ଅତ୍ୟଧିକ ବଢ଼ିଗଲା । ବର୍ତ୍ତମାନ ସେ ଦୁହେଁ କୁମାରଙ୍କୁ ପ୍ରସନ୍ନ ରଖିବା ନିମିତ୍ତ ବିଭିନ୍ନ ଉପାୟ ନିରନ୍ତର କରିବାକୁ ଲାଗିଲେ । ସୂର୍ଯ୍ୟାସ୍ତ ହେଲେ ଅତି କଷ୍ଟରେ ସେମାନେ ଯାଉଥିଲେ ଏବଂ ନାଗଲୋକରେ ଦୀର୍ଘଶ୍ୱାସ ନେଇ ରାତି କଟାଉ ଥିଲେ ଏବଂ ରାଜକୁମାରଙ୍କ ପାଖକୁ ସୂର୍ଯ୍ୟୋଦୟ ପୂର୍ବରୁ ହିଁ ଆସି ଯାଉଥିଲେ ।

ଏଣେ ତାଙ୍କ ପୁଅ ଦୁହେଁ ଏବେ ବେଶୀ ସମୟ ନାଗଲୋକରେ ରହୁ ନଥିବା ଅଶ୍ୱତର ନାଗ ଦେଖୁଥିଲେ । ସୂର୍ଯ୍ୟୋଦୟ ପୂର୍ବରୁ କେଜାଣି କୁଆଡ଼େ ଚାଲିଯାଉଛନ୍ତି ତଥା ଫେରୁଛନ୍ତି ରାତିରେ । କେଉଁଠି ରହୁଛନ୍ତି କିଏ ଜାଣେ । ଦିନେ ସେ ପଚାରିଲେ—"ପୁତ୍ର, ତୁମେ ଦୁହେଁ ଦିନସାରା କେଉଁଠି ରହୁଛ ?"

କୁମାର ଦୁଇଜଣଯାକ କହିଲେ—"ପିତା ! ପୃଥିବୀ ଉପରେ ଜଣେ ଅତ୍ୟନ୍ତ ଧର୍ମାତ୍ମା ମହାରାଜ ଶତ୍ରୁଜିତ୍ ଅଛନ୍ତି । ତାଙ୍କର ପୁତ୍ର ଋତଧ୍ୱଜ ଅତ୍ୟନ୍ତ ଗୁଣବାନ୍ । ସେ ରୂପବାନ୍, ବିନୟୀ, ସରଳ, ସଦାଚାରୀ, ଶୂରବୀର ନିରଭିମାନୀ, ମଧୁରଭାଷୀ, ପ୍ରିୟଦର୍ଶନ ତଥା ପ୍ରେମୀ ଅଟନ୍ତି । ସେ ସୁନ୍ଦରବକ୍ତା, ଉଦାର, ତଥା ବନ୍ଧୁପ୍ରିୟ ଅଟନ୍ତି । କଥା କହିଲେ ମନେହୁଏ ସତେ ଯେପରି ତାଙ୍କ ତୁଣ୍ଡରୁ ଫୁଲ ଝରି ପଡ଼ୁଛି । ଗୁରୁଜନମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଦେଖାନ୍ତି ଏବଂ ସର୍ବଦା ହିଁ ପ୍ରଥମେ ସମସ୍ତଙ୍କ ସହ କଥା ଆରମ୍ଭ କରି ଦିଅନ୍ତି । ନମ୍ରତା ହିଁ ତାଙ୍କର ଆଭୂଷଣ ଏବଂ ବିନୟର ସେ ତ ସଜୀବ ମୂର୍ତ୍ତି । ସେ

Digitized by srujanika@gmail.com

ଆମକୁ ସହୋଦର ଭାଇମାନଙ୍କଠାରୁ ମଧ୍ୟ ଅଧିକ ପ୍ରେମ କରନ୍ତି । ସାଙ୍ଗରେ ବସାଇ ଶ୍ରଦ୍ଧାର ସହିତ ଖୁଆନ୍ତି, ଅନେକ ପ୍ରକାରର ଉପହାର ଆମକୁ ଅର୍ପଣ କରନ୍ତି । ପିତା ! କ'ଣ ବା ଆମେ କହିବୁ, ସେ ନିଜର ସ୍ନେହ ଜାଲରେ ଆମକୁ ଏପରି ବାନ୍ଧି ରଖିଛନ୍ତି, ଯେ ଆମକୁ ନାଗଲୋକ କିମ୍ବା ଭୂ-ଲୋକରେ କେଉଁଠି ହେଲେ ଭଲ ଲାଗୁନାହିଁ । ସବୁବେଳେ ମନ ଚାହୁଁଛି ସଦାସର୍ବଦା ତାଙ୍କରି ପାଖରେ ବସନ୍ତୁ । ଦିନସାରା ତ ଆମେ ତାଙ୍କ ନିକଟରେ ରହୁଛୁ, ରାତିରେ ଆପଣଙ୍କ ଭୟରେ ଚାଲି ଆସୁଛୁ ।"

ନାଗରାଜ ଅଶ୍ୱତର କହିଲେ—"ଆରେ ପିଲାଏ ! ପୃଥିବୀ ଉପରେ ଦିନରେ ତ ଗରମ ଅଧିକ ତୁମେ ସବୁ ସେଠାରେ ରହୁଛ କିପରି ? ଆମ ନାଗଲୋକରେ ତ ସୂର୍ଯ୍ୟଙ୍କ କିରଣ ପହଞ୍ଚି ପାରେନି । ତେଣୁ ଆମେ ସବୁ ଉଷ୍ଣତା ସହିବାରେ ଅଭ୍ୟସ୍ତ ନୁହଁ ।"

କୁମାରଦ୍ୱୟ କହିଲେ—"ପିତା ! ପ୍ରେମ ଏକ ଏପରି ଅନୁପମ ଜିନିଷ ଯାହାପାଖରେ ପ୍ରକୃତିର ସ୍ୱାଭାବିକ ଗୁଣ ମଧ୍ୟ ବାଧା ସୃଷ୍ଟି କରିପାରେ ନାହିଁ । ସେହି ସର୍ବଗୁଣ ସମ୍ପନ୍ନ ରାଜକୁମାରଙ୍କ ସାଥୀରେ ରହିବାବେଳେ ଭଗବାନ ଆଦିତ୍ୟଙ୍କର ତୀକ୍ଷ୍ଣ କିରଣ ମଧ୍ୟ ଆମକୁ ଆନନ୍ଦ ପ୍ରଦାନ କରେ । ଏବଂ ତାଙ୍କ ବିନା ପାତାଳ-ଲୋକର ଏହି ସୁଖମୟ ଶୀତଳ ରାତି ମଧ୍ୟ ଆମକୁ ସନ୍ତାପ ହିଁ ଦେଉଛି । ପିତା ! ସେଇ ନିରଭିମାନୀ ବିନୟୀ ରାଜକୁମାର ଆମକୁ ନିଜ ପ୍ରେମ ସୂତ୍ରରେ କିପରି କରି ବାନ୍ଧି ନେଇଛନ୍ତି ।"

ନିଜର ପୁତ୍ରମାନଙ୍କ ମୁଖରୁ ରାଜକୁମାର ଋତଧ୍ୱଜଙ୍କର ଏପରି ପ୍ରଶଂସା ଶୁଣି ନାଗରାଜ ଅଶ୍ୱତର ଅତ୍ୟନ୍ତ ପୁଲକିତ ହେଲେ । ସେ ନିଜ ପୁତ୍ରମାନଙ୍କୁ କହିଲେ— "ସେଇ ପୁତ୍ରର ପିତାମାତା ଧନ୍ୟ, ଯାହାର ପ୍ରଶଂସା ତା'ର ଅନୁପସ୍ଥିତିରେ ମଧ୍ୟ ଲୋକେ ଶ୍ରଦ୍ଧାର ସହିତ କରିଥାନ୍ତି । ସୌଭାଗ୍ୟ ଥିଲେ ହିଁ ଏପରି ପ୍ରେମୀ ପୁରୁଷ ପ୍ରାପ୍ତ ହୋଇ ଥାଆନ୍ତି । ଏପରି ବ୍ୟକ୍ତିଙ୍କର ଦର୍ଶନରେ ପରମପୁଣ୍ୟ ପ୍ରାପ୍ତି ହୋଇଥାଏ । କିନ୍ତୁ ତୁମେମାନେ ଅତ୍ୟନ୍ତ କୃତଘ୍ନ ।"

ନାଗକୁମାର ଦ୍ୱୟ ସଂକୁଚିତ ହୋଇ ପଚାରିଲେ—"କିପରି ?" ଅଶ୍ୱତର କହିଲେ—ଦେଖ, ସେ ତ ତୁମ ଦୁହିଁଙ୍କୁ ଏତେ ପ୍ରେମ କରୁଛନ୍ତି କିନ୍ତୁ ତୁମେ ତାଙ୍କର ପ୍ରତ୍ୟୁପକାର କରୁନାହଁ । ପ୍ରେମରେ ନିଜର ଉତ୍ତମ ବସ୍ତୁ ମିତ୍ରକୁ ଦିଅନ୍ତୁଏ ଏବଂ ସେ ଯାହା ଦିଅନ୍ତି ତାକୁ ଶ୍ରଦ୍ଧାର ସହିତ ଗ୍ରହଣ କରନ୍ତୁଏ । ତାଙ୍କ ଘରକୁ ନିଜ ଘର ବୋଲି ମନେକରି, ସେଠାରେ ନିଃସଙ୍କୋଚରେ ଖାଆନ୍ତି, ତଥା ତାଙ୍କୁ ନିଜ ଘରକୁ ଡାକି ଖୁଆନ୍ତି । ତାଙ୍କ ପିତାମାତାଙ୍କୁ ନିଜ ପିତାମାତାବୋଲି ମନେ କରନ୍ତି ଏବଂ ନିଜ

Digitized by srujanika@gmail.com

ପିତାମାତାଙ୍କୁ ତାଙ୍କର ପରିଚୟ ଦିଅନ୍ତି । ନିଜ ସୁଖ ଦୁଃଖ ବିଷୟରେ ମିତ୍ରଙ୍କୁ କହନ୍ତି ତଥା ତାଙ୍କ ସୁଖ ଦୁଃଖ ନିଜେ ଶୁଣନ୍ତି । ତାଙ୍କର ବିବାହ ଉତ୍ସବ ସମୟରେ ନିଜ ଘରର କାମ ବୋଲି ମନେ କରି ସବୁଥିରେ ସମ୍ପୃକ୍ତ ହୁଅନ୍ତି ଏବଂ ନିଜ ଘରେ ପର୍ବ ଉତ୍ସବ ପାଳନ କରୁଥିବା ସମୟରେ ତାଙ୍କୁ ଶ୍ରଦ୍ଧାର ସହିତ ନିମନ୍ତ୍ରଣ କରନ୍ତି । ତାଙ୍କର ଦୁଃଖ ଦୂର କରିବା ନିମନ୍ତେ ସର୍ବଦା ଚେଷ୍ଟା କରନ୍ତି ଏବଂ ନିଜ ଦୁଃଖରେ ତାଙ୍କୁ ଜଡ଼ିତ ନ କରିବା ପାଇଁ ଚେଷ୍ଟା କରନ୍ତି । ତୁମେମାନେ ଏଥିରୁ କିଛି ବି କରି ନାହିଁ । ଏଠି ତୁମମାନଙ୍କର ଏଇ ନାଗଲୋକରେ ଏତେପ୍ରକାରର ମଣି ଅଛି । ତାକୁ ଏଠାକୁ ଆଣ ଏବଂ ସେ ଯାହା ନେବେ ତାଙ୍କୁ ଦିଅ ।’’

ନାଗକୁମାରମାନେ କହିଲେ—‘‘ପିତା ! ଆମ ପାଖରେ କ’ଣ ଅଛି ? ତାଙ୍କ ପାଖରେ ଯେଉଁ ସବୁ ବସ୍ତୁ ଅଛି ତାକୁ ତ ଆମ ନାଗଲୋକରେ କେହି ଜାଣିବ ନଥିବେ । ତାଙ୍କର କୌଣସି ବସ୍ତୁର ଅଭାବ ନାହିଁ । ତାଙ୍କୁ ଆମେ କଅଣ ଦେଇପାରିବୁ ? ଯେଉଁ କଥାରେ ତାଙ୍କର ଆବଶ୍ୟକତା ଅଛି ତାହା ତାଙ୍କୁ ଦେବା ଅସମ୍ଭବ ।’’

ଅଶ୍ୱତର ନାଗ କହିଲେ—‘‘ସଂସାରରେ ଉଦ୍ୟୋଗୀ ପୁରୁଷ ନିମନ୍ତେ ଅସମ୍ଭବ ବୋଲି କିଛି ନାହିଁ । ତୁମେମାନେ ମୋତେ କୁହ । ସେ କ’ଣ ଚାହୁଁଛି, ମୁଁ ତା’ର ପ୍ରସନ୍ନତା ପାଇଁ ସେଇ ବସ୍ତୁ ଆଣି ଦେବି ।’’

ଏହା ଶୁଣି କୁମାରମାନେ ଆଦ୍ୟରୁ ପ୍ରାନ୍ତ୍ୟଯାଏ ମଦାଳସାର ସମ୍ପୂର୍ଣ୍ଣ ବୃତ୍ତାନ୍ତ ଶୁଣାଇ ଦେଲେ ଏବଂ ଶେଷରେ କହିଲେ—‘‘ପିତା ! ସେ ମଦାଳସା ଭିନ୍ନ ଅନ୍ୟ କିଛି ଚାହାଁନ୍ତି ନାହିଁ । ମଦାଳସାକୁ ପାଇଲେ ସେ ପରମ ଆନନ୍ଦ ଲାଭ କରିବେ । କିନ୍ତୁ ସେ ତ ମରିଯାଇଛି । ତା’ର ଆସିବା ଏବେ ସମ୍ଭବ ନୁହଁ । ତେଣୁ ତାଙ୍କୁ ଏଠାକୁ ଆଣି ଆମେ କ’ଣ କରିବୁ ?’’

ଅଶ୍ୱତର ଭାବପ୍ରବଣ ହୋଇ କହିଲେ—‘‘ମୁଁ ତୁମମାନଙ୍କୁ ଆଗରୁ କହି ଦେଇଛି, ସଂସାରରେ ଅସମ୍ଭବ ବୋଲି କୌଣସି ବସ୍ତୁ ନାହିଁ । ମୁଁ ମଦାଳସାକୁ ଆଣିବି ଏବଂ ତୁମର ସେଇ ରାଜକୁମାର ମିତ୍ରକୁ ଆନନ୍ଦିତ କରାଇବି ।’’ ଏହା କହି ନାଗରାଜ ଅଶ୍ୱତର ତତ୍‌କ୍ଷଣାତ୍ ତପସ୍ୟା କରିବା ନିମନ୍ତେ ବଣକୁ ଚାଲିଗଲେ ।’’

ଅଶ୍ୱତର ନାଗ ପାତାଳଲୋକରୁ ବାହାରି ନର-ନାରାୟଣଙ୍କର ତପସ୍ୟା ଭୂମି ବଦ୍ରିକାଶ୍ରମ ନିକଟରେ ଗଲେ ଏବଂ ସେଠାରୁ ମଧ୍ୟ ଆହୁରି ଆଗରେ ଥିବା କେଶବ ପ୍ରୟାଗରେ ପହଞ୍ଚିଲେ, ଯେଉଁଠି ସରସ୍ୱତୀ ନଦୀ ଭଗବତୀ ଅଳକାନନ୍ଦାଙ୍କ ସଙ୍ଗେ ଆସି ମିଶିଛି । ତା’ପରେ ସେ ସରସ୍ୱତୀ ନଦୀ କୂଳେ କୂଳେ ଯାଇ ସେଇ ପର୍ବତ ଉପରେ ପହଞ୍ଚିଲେ ଯେଉଁଠୁ ସରସ୍ୱତୀ ନଦୀ ବାହାରିଛି । ତା’ର ନିକଟବର୍ତ୍ତୀ କାକଭୁଶୁଣ୍ଡି ଶିଖର

Digitized by srujanika@gmail.com

ନିକଟରେ ଏପରି ଏକ ପର୍ବତ ଶିଖର—ଉପରେ—ଯେଉଁଠି ବାରମାସଯାକ ବରଫ ଜମିରହେ ସେହିଠାରେ ବସି ତପସ୍ୟା କରିବାକୁ ଲାଗିଲେ । ସେଠାରେ ସେ ସରସ୍ୱତୀ ଦେବୀଙ୍କର ହିଁ ଆରାଧନା କଲେ ।

ନାଗରାଜଙ୍କର ଆରାଧନାରେ ଭଗବତୀ ସରସ୍ୱତୀ ତାଙ୍କ ଉପରେ ସନ୍ତୁଷ୍ଟ ହେଲେ । ତାଙ୍କ ନିକଟରେ ଉପସ୍ଥିତ ହୋଇ ସେ ତାଙ୍କୁ ବର ମାଗିବା ନିମିତ୍ତ କହିଲେ । ତେଣୁ ନାଗରାଜ ହାତଯୋଡ଼ି କହିଲେ—ମାତା ! ଆମେ ଦୁଇ ଭାଇ, ମୋର ଭାଇ କମ୍ବଳ ଏବଂ ମୁଁ ଅଶ୍ୱତର । ଆମେ ଦୁଇ ଭାଇ ଅଶ୍ୱିନୀ କୁମାରଙ୍କ ପରି ସଦାସର୍ବଦା ସାଙ୍ଗହୋଇ ଖୁସିରେ ରହିବୁ ଏବଂ ତ୍ରିଭୁବନଯାକ ସର୍ବଶ୍ରେଷ୍ଠ ସଙ୍ଗୀତଜ୍ଞ, ଭାବରେ ପ୍ରସିଦ୍ଧ ହେବୁ ।

ସରସ୍ୱତୀ 'ତଥାସ୍ତୁ' କହି ଅନ୍ତର୍ଧାନ ହୋଇଗଲେ । କମ୍ବଳ ଏବଂ ଅଶ୍ୱତର ଜାଣିଥିଲେ ଯେ, ଭଗବାନ ଶଙ୍କର ଆଶୁତୋଷ ଅତ୍ୟନ୍ତ ସଙ୍ଗୀତ ପ୍ରିୟ । ଗାଇ ବଜାଇ ତଥା ତାଙ୍କ ସମ୍ମୁଖରେ ନୃତ୍ୟ କରି ଯାହା ଚାହିଁବ ତାହା ବର ନେଇ ପାରିବ । ତାଙ୍କ ନିକଟରେ ସମ୍ଭବ ଅସମ୍ଭବ ବୋଲି କିଛି ନାହିଁ । ସେ ଯାହା ଚାହିଁବେ ତାହା କରିପାରିବେ । ଏହିସବୁ ଚିନ୍ତାକରି ତଥା ସରସ୍ୱତୀଙ୍କ କୃପାରୁ ସୁସଙ୍ଗୀତଜ୍ଞ ହୋଇ ସେ ଦୁହେଁ ସରସ୍ୱତୀ ସ୍ରୋତର ଆଦ୍ଧରି ଅଗରେ କୈଳାସ ପର୍ବତରେ ପହଞ୍ଚିଲେ । ସେଠାରେ ନିରାହାର ରହି ଗୀତ ବାଦ୍ୟଦ୍ୱାରା ଶଙ୍କର ମହାପ୍ରଭୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ଉଦ୍ୟମ ଆରମ୍ଭ କରି ଦେଲେ ।

କିଛି ଦିନ ମଧ୍ୟରେ ହିଁ ଭଗବାନ ଭୂତନାଥ ସନ୍ତୁଷ୍ଟ ହୋଇଗଲେ ଏବଂ ନାଗ ଦୁହିଁଙ୍କୁ ବର ମାଗିବାପାଇଁ କହିଲେ । ମହାଦେବଙ୍କୁ ପ୍ରସନ୍ନ ହୋଇଥିବା ଦେଖି ଦୁଇ ଭାଇଙ୍କ ମଧ୍ୟରୁ ଅଶ୍ୱତର କହିଲେ—"ପ୍ରଭୋ ! ଯଦି ଆପଣ ଆମ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ରାଜକୁମାର ଋତଧ୍ୱଜର ପତ୍ନୀ ମଦାଳସା ମୋର କନ୍ୟା ହୋଇ ପ୍ରକଟିତ ହେଉ । ତା'ର ପୂର୍ବପରି ରୂପ, ପୂର୍ବପରି ଅବସ୍ଥା ଏବଂ ପୂର୍ବପରି ନମ୍ର ସ୍ୱଭାବ ହେଉ । ତା'ର ପୂର୍ବଜନ୍ମକଥା ସବୁ ସ୍ମରଣ ରହୁ । ସେ ଯୋଗିନୀ ବ୍ରହ୍ମବାଦିନୀ ତଥା ପୂର୍ଣ୍ଣଜ୍ଞାନ-ବିଜ୍ଞାନରେ ସମ୍ପନ୍ନା ହୋଇ ଜନ୍ମ ହେଉ ।

ଏହାଶୁଣି ଭୂତନାଥ ଭଗବାନ ଭୋଳାନାଥ କହିଲେ—"ଭଲ କଥା ଏହାହିଁ ହେବ । ତୁମେ ଧ୍ୟାନମଗ୍ନ ହୋଇ ବସିବ, ତୁମ ଫଣାରୁ ମଦାଳସା ଯେଉଁ ଅବସ୍ଥାରେ ଥିଲି ସେଇ ଅବସ୍ଥା ସହ ଉପସ୍ଥିତ ହୋଇ ଯିବ ।" ଏହାକହି ଭଗବାନ ଆଶୁତୋଷ ସେହିଠାରେ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ସେ ଦୁଇଭାଇ ମନଆନନ୍ଦରେ ଘରକୁ ଫେରିଲେ ।

Digitized by srujanika@gmail.com

ଘରକୁ ଆସିବାପରେ ଦିନେ ଅଶ୍ୱତର ନାଗ ଧ୍ୟାନମଗ୍ନ ହୋଇ ଶିବଙ୍କର ବରଦାନକୁ ସ୍ମରଣ କରି ବସିଲେ । ତତ୍‌କ୍ଷଣାତ୍ ତାଙ୍କର ଫଣାରୁ ଅତ୍ୟନ୍ତ ସୁନ୍ଦରୀ ରମଣୀଟିଏ ବାହାରିଲା । ତା'ର ସୌନ୍ଦର୍ଯ୍ୟ ଦେଖି ନାଗରାଜ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଲେ—"ରାଜକୁମାର ଋତଧ୍ୱଜ ଏଇ ରମଣୀରତ୍ନ ବିନା ଏତେଦିନ ଯାଏ ଜୀବିତ ଅଛି ! ଏହା ହିଁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କଥା । ଆଜି ମୁଁ କୃତାର୍ଥ ହୋଇଗଲି । କୁମାରଙ୍କ ସାଥିରେ ମୁଁ ମୋର ଏଇ କନ୍ୟାର ପୁନର୍ପାଣିଗ୍ରହଣ ସଂସ୍କାର କରାଇବି ।" ଏହା ଚିନ୍ତାକରି ସେଇ କନ୍ୟାକୁ ସେ ଅନ୍ତଃପୁରରେ ଲୁଚାଇ ରଖିଲେ । କାହାକୁ ଦେଖାଇଲେ ନାହିଁ । ତା'ପରେ ନିଜ ପୁତ୍ରମାନଙ୍କୁ କହିଲେ—"ପିଲାମାନେ ! ଆଜି ତୁମେ ନିଜର ମିତ୍ରକୁ ଏଠାକୁ ଆଣିବ । ମୁଁ ତା'ର ମନୋକାମନା ପୂର୍ଣ୍ଣ କରିବି ।"

ଏହାଶୁଣି ନାଗକୁମାରମାନେ ଅତ୍ୟନ୍ତ ଆନନ୍ଦରେ ଉଲ୍ଲସିତ ହୋଇ ରାଜକୁମାରଙ୍କ ନିକଟରେ ପହଞ୍ଚିଲେ । ସେମାନଙ୍କ ମୁଖମଣ୍ଡଳରେ ଆନନ୍ଦର ସଙ୍କେତ ତ ସ୍ପଷ୍ଟ ଥିଲା । ଆଜି ସେମାନେ ସବୁଠାରୁ ଅଧିକ ଖୁସି ଥିଲେ । ପହଞ୍ଚୁ ପହଞ୍ଚୁ କହିଲେ—'କୁମାର ! ଦେଖ ଆମେ ତ ଆପଣଙ୍କ ଘରକୁ ପ୍ରତିଦିନ ଆସୁଛୁ କିନ୍ତୁ ଆପଣ ଆମ ଘରକୁ କେବେ ବି ଯାଉ ନାହାଁନ୍ତି !

ଏହା ଶୁଣିବାକ୍ଷଣି ରାଜକୁମାର ରୁଷ୍ଟିଯାଇ ଅଭିମାନରେ କହିଲେ—"ଭାଇମାନେ ! ମୁଁ ଏପରି କେଉଁ ଅପରାଧ କରିଛି । ଆପଣଙ୍କର ଘର ଏଇଟା ନୁହଁ । କ'ଣ ଆପଣ ଏଠାକାର ବସ୍ତୁକୁ ନିଜ ବସ୍ତୁ ବୋଲି ଭାବୁ ନାହାଁନ୍ତି ? କ'ଣ ଆପଣମାନେ ମୋତେ ନିଜ ଭାଇ ବୋଲି ସ୍ୱୀକାର କରୁ ନାହାଁନ୍ତି ? ପୁଣି ତେବେ 'ମୋର, ତା'ରର ପ୍ରଶ୍ନ ଆପଣଙ୍କ ମନରେ ଉଠିଲା କାହିଁକି । ମୁଁ ଶପଥ ନେଇ କହୁଛି ମୋର ସର୍ବସ୍ୱ ଆପଣମାନଙ୍କର । ଆପଣ ଏଠିକାର ସମସ୍ତ ବସ୍ତୁକୁ ନିଜର ବୋଲି ଭାବି ଉପଭୋଗ କରନ୍ତୁ । ଯାହାକୁ ଯାହା ଇଚ୍ଛା ତାହା ଦାନ କରନ୍ତୁ । ଯାହାକୁ ଯେମିତି ସନ୍ତୁଷ୍ଟ କରିବା କଥା କରନ୍ତୁ । ପୁଣି କେବେ ଏପରି କଥା ମୁହଁରେ ଧରିବେ ନାହିଁ ।

ଦୁଇ ନାଗକୁମାର କୁବଳୟାଶ୍ୱ ରାଜକୁମାରଙ୍କ ପ୍ରତି କୃତଜ୍ଞତା ଦେଖାଇ କହିଲେ—"କୁମାର ! ଆପଣଙ୍କର କଥା ପ୍ରକୃତରେ ଯଥାର୍ଥ । ଆମେ ତ କେବେ ହେଲେ ଭେଦଭାବ ରଖି ନାହୁଁ । ଆପଣଙ୍କର ଯେପରି ଭାବନା, ଆମର ମଧ୍ୟ ଅନୁରୂପ ଭାବନା । ଆମେ ତ ଏହାକୁ ହିଁ ଆମର ଘର ବୋଲି ଭାବୁଛୁ । ଆମେ କୌଣସି ଭେଦଭାବରେ ଏ କଥା କହି ନାହୁଁ । ଆମର ପୂଜନୀୟ ପିତା ତୁମକୁ ଦେଖିବାକୁ ଉତ୍କଣ୍ଠିତ । ଅନେକ ଦିନରୁ ସେ ଆମକୁ ଲଗେଇଛନ୍ତି । ଆଜି ସେ ଅତ୍ୟନ୍ତ ଆଗ୍ରହର ସହିତ କହିଛନ୍ତି—"କୁମାରଙ୍କୁ ନିଶ୍ଚୟ ଆଣିବ । ତାଙ୍କର ଆଦେଶକୁ ଆମେ ଆମ ଭାଷାରେ ପୁନରାବୃତ୍ତି କରିଛୁ ।"

Digitized by srujanika@gmail.com

ଏହା ଶୁଣିବାମାତ୍ରେ କୁମାର ସିଂହାସନରୁ ତେଡ଼ି ପଡ଼ିଲେ । ତାଙ୍କ ଆଖିରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ସେ କହିଲେ—"ମୁଁ ଧନ୍ୟ, ମୁଁ କୃତାର୍ଥ ହୋଇଗଲି, ପୂଜ୍ୟ ପିତା ମୋତେ ସ୍ମରଣ କରିଛନ୍ତି ! ଆଜି ମୁଁ ତାଙ୍କର ପାଦଧୂଳି ନେଇ ମଥାରେ ବୋଳି କୃତାର୍ଥ ହେବି । ଆପଣ ବିଳମ୍ବ ନ କରି ଶୀଘ୍ର ଚାଲନ୍ତୁ । ଆଜି ମୁଁ ମୋର ଧର୍ମ ପିତାଙ୍କର ପାଦପଦ୍ମରେ ପ୍ରଣାମ କରିବି ।" ଏହା କହି କୁମାର ସେଇଠାରେ ହିଁ ଭୂମିରେ ପିତାଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣାମ କଲେ, ଏବଂ ଯେଉଁ ଅବସ୍ଥାରେ ଥିଲେ ସେଇ ଅବସ୍ଥାରେ ସେମିତି ଉଠି ତତ୍‌କ୍ଷଣାତ୍ ସେଇ ନାଗକୁମାରମାନଙ୍କ ସହିତ ଚାଲିଲେ ।

ନାଗକୁମାରମାନେ ମନୁଷ୍ୟ ବେଶ ହୋଇ ରାଜକୁମାରଙ୍କ ପାଖକୁ ଆସିଥିଲେ । ସେ ଦୁହେଁ ପରମ ଶକ୍ତିଶାଳୀ ପାତାଳବାସୀ ଉପଦେବ ଅଟନ୍ତି । ଯେଉଁମାନେ କି ନିଜ ଇଚ୍ଛାନୁସାରେ ବେଶ ହୋଇପାରନ୍ତି । ଯାହାର ଫଣାରେ ଦିବ୍ୟମଣି ଝଟକୁଥାଏ ବୋଲି ରାଜକୁମାରଙ୍କୁ ଜଣା ନଥାଏ । ସେ ଭାବିଥିଲେ ଗୌତମୀ ନଦୀ ସେପାରିରେ କୌଣସି ରାଜାଙ୍କର ଏମାନେ ରାଜପୁତ୍ର । ଗୌତମୀ ତୀରରେ ପହଞ୍ଚି ସେ ଦୁହେଁ କହିଲେ ନଦୀରେ ସନ୍ତରଣ କରି ଆମେ ଯିବା । ରାଜକୁମାର ମଧ୍ୟ ସେମାନଙ୍କର ସମର୍ଥନ କଲେ । ସେମାନେ ଯେମିତି ଜଳ ଭିତରକୁ ଯାଇଛନ୍ତି, ତତ୍‌କ୍ଷଣାତ୍ ନାଗକୁମାରମାନେ ନିଜ ଯୋଗପ୍ରଭାବ ଦ୍ୱାରା କୁମାରଙ୍କୁ ଟାଣିନେଇ ପାତାଳରେ ପହଞ୍ଚାଇ ଦେଲେ । ପାତାଳରେ ସେମାନେ ଦେଖିଲେ ତାଙ୍କର ଦୁଇମିତ୍ରଙ୍କର ମସ୍ତକ ଉପରେ ଫଣା ଲହରାଉଛି ଏବଂ ସେଥିରେ ଦିବ୍ୟ ମଣି ଝଟକୁଛି । ସେଇ ପରମ ତେଜସ୍ୱୀ ଉପଦେବ ନିଜ ପ୍ରଭା ଏବଂ କାନ୍ତି ଦ୍ୱାରା ପାତାଳ ପୁରକୁ ଆଲୋକିତ କରୁଥିଲେ । ରାଜକୁମାର ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ । ତାଙ୍କର କୌତୁହଳର ସୀମା ନଥିଲା । ପରମ ଆଶ୍ଚର୍ଯ୍ୟରେ ସେ କହିଲେ—"ଧନ୍ୟ ଧନ୍ୟ ! ଆପଣମାନେ ତ ଉପଦେବ ନାଗକୁମାର ?"

କୃତଜ୍ଞତା ସ୍ୱରରେ ନାଗମିତ୍ରମାନେ କହିଲେ—"ନା ନା ଆମେ ତ ଆପଣଙ୍କର ସହୋଦର ଭାଇ । ଚାଲନ୍ତୁ ପିତାଙ୍କ ନିକଟକୁ ଯିବା । ଏହା କହି ନାଗକୁମାରମାନେ ଅତ୍ୟନ୍ତ ସମ୍ମାନ ସହକାରେ ତାଙ୍କୁ ତାଙ୍କର ମଣି-ଜଡ଼ିତ ଭବନକୁ ନେଇଗଲେ ।"

ନାଗରାଜ ଅଶ୍ୱତର ଏକ ପରମ ଦିବ୍ୟପ୍ରାସାଦରେ, ଏକ ସୁବର୍ଣ୍ଣ ସିଂହାସନ ଉପରେ ବସିଥିଲେ । ସେଥିରେ ଅସଂଖ୍ୟ ଅମୂଲ୍ୟ ମଣି ଚକ୍ ଚକ୍ ହୋଇ ଚମକୁ ଥିଲା । ସେଠାରେ କେଉଁଠି ବୀଣାବାଦନର ସ୍ୱର ଆସୁଥିଲା ତ କେଉଁଠୁ ମଧୁର ସ୍ୱର ଝଙ୍କାର ଆସୁଥିଲା । ସ୍ୱର୍ଗରୁ ମଧ୍ୟ ସୁନ୍ଦର ପାତାଳର ଅନୁପମ ସୌନ୍ଦର୍ଯ୍ୟ ଦେଖି କୁମାର ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲେ । ନାଗରାଜଙ୍କର ଅପାର ଐଶ୍ୱର୍ଯ୍ୟ ଦେଖି ତାଙ୍କର ଦୃଷ୍ଟି

Digitized by srujanika@gmail.com

. ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହୁ ନଥିଲା । ନାଗରାଜକୁମାରମାନେ ସିଂହାସନ ଉପରେ ବସିଥିବା ନିଜ ପିତାଙ୍କୁ ସଙ୍କେତ କରି କହିଲେ—"କୁମାର, ଏ ହିଁ ଆମର ପୂଜନୀୟ ପିତା ଅଟନ୍ତି ।" ଏବଂ ପିତାଙ୍କୁ କହିଲେ—"ପିତା ! ଏ ହିଁ ଆମର ଅନ୍ତରଙ୍ଗ ମିତ୍ର ରାଜକୁମାର କୁବଳୟାଶ୍ୱ ଋତଧ୍ୱଜ ।" କୁମାର ଦୌଡ଼ିଯାଇ ନିଜ ମୁକୁଟ ଶୋଭିତ ମଥା ନାଗରାଜଙ୍କର ପାଦପଦ୍ମରେ ରଖି ଦେଲେ ଏବଂ ପ୍ରେମାଶ୍ରୁରେ ସେ ତାଙ୍କ ପାଦଧୌତ କରି ଦେଲେ । ନାଗରାଜ ଉଠିଯାଇ କେତେ ସମୟ ଯାଏଁ ଅତି କଷ୍ଟରେ ନିଜର ରାଜକୁମାରଙ୍କୁ ବକ୍ଷଲଗ୍ନ କଲେ । ପ୍ରେମଭାବ ଟିକିଏ କମ୍ ହେବାରୁ ସେ କୁମାରଙ୍କର ମସ୍ତକରେ କେଶ ସାଉଁଳାଇ ପିଠି ଆପୁଡ଼ାଇ ଅନେକ ଆଶୀର୍ବାଦ କଲେ ।

କୁମାର ଋତଧ୍ୱଜ ମଥା ଅବନତ କରି ଗୌରବରେ ନାଗରାଜଙ୍କର ପାଦତଳେ ବସିଥିଲେ । ନାଗରାଜ ତାଙ୍କର ସଙ୍କୋଚ ଦୂର କରି କହିଲେ—ଦେଖ ପୁତ୍ର; ଇଏ ତୁମର ହିଁ ଘର । ଏଠାରେ ସଙ୍କୋଚର ସ୍ଥାନ ନାହିଁ । ଭିତରକୁ ଯାଇ ନିଜ ମାତାଙ୍କୁ ପ୍ରଣାମ କର । ସ୍ନାନ ଇତ୍ୟାଦି ଶେଷ କରିସାରିଲେ ସମସ୍ତେ ମିଶି ଭୋଜନ କରିବା ତଥା ତୁମ ସହ କିଛି ବାର୍ତ୍ତାଳାପ ମଧ୍ୟ ହେବ । ଏହା କହି ସେ ନିଜ ପୁତ୍ରମାନଙ୍କୁ ଆଦେଶ ଦେଇ କହିଲେ—"କୁମାରଙ୍କୁ ଭିତରକୁ ନେଇଯାଅ ।" କୁମାରମାନେ ଆଜ୍ଞାପାଳନ ନିମନ୍ତେ ସ୍ୱୀକାରୋକ୍ତି ଦେଲେ । ତା'ପରେ ତିନିଜଣଯାକ ହସି ହସି କଥାବାର୍ତ୍ତା କରି କରି ଭିତରକୁ ଗଲେ । ମାତାଙ୍କର ପାଦତଳେ ତିନିଜଣ ଯାକ ପଡ଼ିଗଲେ । ମାତା ଅତ୍ୟନ୍ତ ସ୍ନେହରେ ସେମାନଙ୍କୁ ଉଠାଇଲେ । ତଥା ମୁଖରେ ଚୁମ୍ବନ ଦେଇ ସେମାନଙ୍କୁ ଆଦର କଲେ । ତା'ପରେ ତିନିଜଣଯାକ ସ୍ନାନକଲେ, ସାରିଦେହରେ ଚନ୍ଦନର ଅଙ୍ଗରାଗ ଲଗାଇଲେ । ସେତେବେଳକୁ ଖାଦ୍ୟ ପ୍ରସ୍ତୁତି ସରିଗଲା । ପିତାଙ୍କ ସହିତ ତିନିଜଣଯାକ ବସି ସୁଖପୂର୍ବକ ଭୋଜନ କଲେ । କୁମାର ଦେଖିଲେ ଏ ଘରର ଧୂଳି କଣାରେ ବି ସ୍ନେହର ନିବିଡ଼ ସ୍ପର୍ଶ । ପ୍ରେମ ସରୋବରରେ ସତେ ଯେମିତି ସେ ବୁଡ଼ିଯାଇଥିଲେ । ଏତେ ସ୍ନେହ-ଆଦର ତାଙ୍କୁ ପୂର୍ବରେ କେବେ ହେଲେ ଅନୁଭୂତ ହୋଇ ନଥିଲା ।

ଭୋଜନ ଶେଷ ହେବାପରେ ନାଗରାଜ ନିଜ ବୈଠକରେ ଏକ ବହୁମୂଲ୍ୟ ଗାଲିଚାରେ ବସିଲେ । ତିନି କୁମାରମାନେ ମଧ୍ୟ ତାଙ୍କର ପାଦରେ ପ୍ରଣାମ କରି ବସିଗଲେ । ନାଗରାଜ ନଇଁପଡ଼ି କୁମାରଙ୍କୁ ନିଜ କୋଳକୁ ଟାଣିନେଲେ ତଥା ତାଙ୍କର ମୁହଁ ଆଉଁସି ଦେଇ କହିଲେ—"ପୁତ୍ର ! ଆଜି ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ତୁମେ ଆମ ଘରକୁ ଆସିଛ । ତୁମକୁ ଯେଉଁ ବସ୍ତୁ ଆକର୍ଷଣୀୟ ଲାଗୁଛି ତାହା ତୁମେ ମୋତେ ମାଗ ।"

Digitized by srujanika@gmail.com

ସଙ୍କୁଚିତ ହୋଇ କୁମାର କହିଲେ—"ପିତା ! ଆପଣ ଏପରି କାହିଁକି କହୁଛନ୍ତି । ମୋର ମାଗିବାର ବା କଅଣ ଆବଶ୍ୟକତା ଅଛି । କାଙ୍ଗାଳ ହିଁ ଯାଚନା କରି ଥାଆନ୍ତି । ଦଶନ୍ତ୍ରର ପୁତ୍ର ହାତ ପତାଇ ଥାଆନ୍ତି । ମୋର ଜଣେ ପିତା ସମସ୍ତ ଭୂ-ମଣ୍ଡଳର ଶାସନ କରୁଛନ୍ତି । ଅନ୍ୟ ଜଣେ ପିତା ପାତାଳର । ମୁଁ ଦୁଇ ପିତାଙ୍କର ସମ୍ପତ୍ତିର ଅଧୀଶ୍ୱର । ଆଜି ମୁଁ କଅଣ ବା ନ ପାଇଛି । ମୋର ମଥାର ମୁକୁଟ ଆପଣଙ୍କ ଚରଣ ସ୍ପର୍ଶ କରିବା ଦ୍ୱାରା ମୋର ସବୁ ପାପ ଧୋଇହୋଇ ଯାଇଛି । ସତେ ଯେପରି ମୁଁ ତିନି ଭୁବନର ରାଜ୍ୟ ପାଇ ଯାଇଛି ।"

ନାଗରାଜ ହସିଦେଇ କହିଲେ—"ନାହିଁ କୁମାର ! ଆଜି ତ ମୋତେ ତୁମକୁ କିଛି ଦେବାପାଇଁ ହିଁ ହେବ । ଏଇ ମଣି ଗୁଡ଼ିକରୁ ଯାହା ତୁମକୁ ପ୍ରିୟ ଲାଗୁଛି ତୁମେ ବାଛି ବାଛି ସେଗୁଡ଼ିକ ନେଇଯାଅ ।"

କୁମାର କହିଲେ—"ପିତା ଆପଣଙ୍କ ଆଜ୍ଞା ତ ଶିରୋଧାର୍ଯ୍ୟ । କିନ୍ତୁ ମଣି ତ ଆପଣଙ୍କର ପୃଥିବୀ ଉପରେ ଥିବା ରାଜପ୍ରାସାଦରେ ବି ଅନେକ ଅଛି । ଦେବତା ହୋଇ ମଧ୍ୟ ଆପଣ ମୋର ମଥା ସାଉଁଲାଇ ଦେଇଛନ୍ତି ଏବଂ ମୋତେ ସସ୍ନେହ ବକ୍ଷଲଗ୍ନ କରିଛନ୍ତି । ସେଇ କ'ଣ କୋଟିଏ ମଣିଠାରୁ ଅଧିକ ବଡ଼ କଥା ନୁହଁ ?"

ନାଗରାଜ ହସି ଦେଲେ ଏବଂ କହିଲେ—"ଆଚ୍ଛା, ବସ୍ତ୍ର ଆଭୂଷଣ ଯାହା ଭଲ ଲାଗୁଛି, ମାଗ ।"

କୁମାର କହିଲେ—"ମୁଁ ବର୍ତ୍ତମାନ ଆଉ କ'ଣ ବା କହିବି ଯାହା ଆପଣଙ୍କର ଇଚ୍ଛା ତାହା ଦିଅନ୍ତୁ ମୁଁ ଗ୍ରହଣ କରିବି ।"

ଅଶ୍ୱତର କହିଲେ—"ନାଁ ନାଁ ଦେବା କଥା ନୁହଁ । ତୁମର ଯାହା ଇଚ୍ଛା ତାକୁ ନିସଙ୍କୋଚରେ କୁହ । ଧନ, ରତ୍ନ, ବାହନ, ବସ୍ତ୍ର ଆଭୂଷଣ, ନ ନେଲେ ସୁନ୍ଦରୀ ବୋହୂ ନେବ ?"

ଏହାଶୁଣି ରାଜକୁମାର ଲଜ୍ଜିତ ହେଲେ ଏବଂ ସଙ୍କୋଚରେ ମଥାନତ କଲେ । ସେତିକିବେଳେ ନାଗରାଜଙ୍କ ପୁତ୍ରମାନେ କହିଲେ—"ହଁ ପିତା ! କୁମାରଙ୍କର ଗୋଟିଏ ପତ୍ନୀ ଥିଲେ, ମଦାଲସା । ଯଦି ଆପଣ କୌଣସି ପ୍ରକାରେ ଦେଇ ପାରନ୍ତି ତ ତାଙ୍କୁ ମଦାଲସା ଦିଅନ୍ତୁ, ସେ ପରମ ଆନନ୍ଦ ଲାଭ କରିବେ ।"

ନାଗରାଜ ହସିଦେଇ କହିଲେ—"ହଁ କାହିଁକି ଦେଇ ପାରିବି ନାହିଁ ? କିନ୍ତୁ ସେ ନିଜ ପତ୍ନୀଙ୍କୁ ଚିହ୍ନି ପାରିବେ ତ !"

Digitized by srujanika@gmail.com

କୁମାରମାନେ ଶୀଘ୍ର ଶୀଘ୍ର କହିଲେ—"ହଁ ପିତା ! ନିଶ୍ଚୟ ଚିହ୍ନି ପାରିବେ ।" ପୁଣି କୁମାର ଋତଧ୍ୱଜଙ୍କୁ ପଚାରି କରି କହିଲେ—"କ'ଣ, ନିଜ ପତ୍ନୀକୁ ଚିହ୍ନି ପାରିବେନି ?" କୁମାର ଅତ୍ୟନ୍ତ ଆଶ୍ଚର୍ଯ୍ୟ ତଥା କୌତୂହଳ ସହିତ ନାଗରାଜଙ୍କୁ ଚାହିଁ ହସି ଦେଲେ । ଏହି ସମୟରେ ନାଗରାଜ ଡାକିଲେ—"ମଦାଳସା ! ଝିଅ ମଦାଳସା !"

ଏହି ଶବ୍ଦ ଶୁଣିବାମାତ୍ରେ ରୁଣୁ ଝୁଣୁ ଶବ୍ଦ ସହ ଏକ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ଅନ୍ତଃପୁରର ପରଦା ଆଡ଼େଇ ବାହାରି ଆସିଲା । ରାଜକୁମାର ତାକୁ ଦେଖିବାମାତ୍ରେ ତା' ନିକଟକୁ ଦୌଡ଼ିଗଲେ । ମଝିରେ ନାଗରାଜ ତାଙ୍କୁ ରୋକି ଦେଇ କହିଲେ—"ଆରେ, କୁମାର କ'ଣ କରୁଛ । ଏତେ ଅଧୀରତା ଉଚିତ ନୁହଁ । ପ୍ରଥମେ ମୋ କଥା ଶୁଣ । ଯେତେବେଳେ ମୁଁ ତୁମକୁ ଏହାକୁ ଦେବି ସେତିକିବେଳେ ହିଁ ତୁମେ ଗ୍ରହଣ କରିବ ।"

ଏହାଶୁଣି କୁମାର ଲଜ୍ଜିତ ହେଲେ । ତାଙ୍କର ସମ୍ପୂର୍ଣ୍ଣ ଶରୀର ରୋମାଞ୍ଚିତ ହୋଇଯାଇଥିଲା । ଆନନ୍ଦାଶ୍ରୁରେ ତାଙ୍କର ମୁଖ ଭିଜି ଯାଉଥିଲା । ଆନନ୍ଦର ଆତିଶଯ୍ୟରେ ତାଙ୍କର କଣ୍ଠ ରୋଧ ହେଉଥିଲା । ତାଙ୍କୁ ପାଖରେ ବସାଇ ନାଗରାଜ ଆଦ୍ୟରୁ ପ୍ରାନ୍ତଯାଏ ସବୁକଥା କହିଲେ । ସବୁକଥା ଶୁଣି ରାଜକୁମାର ଅତ୍ୟନ୍ତ ଆନନ୍ଦିତ ହେଲେ । ଏହାପରେ ସେ ବିଧିବତ୍ ମଦାଳସାର ପାଣିଗ୍ରହଣ କଲେ । ସେ ନିଜ ଅଶ୍ୱକୁ ସ୍ମରଣ କରିବାମାତ୍ରେ କୁବଳୟ ତାଙ୍କ ନିକଟରେ ଆସି ପହଞ୍ଚିଗଲା ।

ନାଗରାଜ ମଦାଳସା ତଥା କୁମାରଙ୍କୁ ଅତ୍ୟଧିକ ସ୍ୱାଗତ ସତ୍କାର କଲେ । ସେ ଦୁହିଁଙ୍କୁ ବହୁମୂଲ୍ୟ ବସ୍ତ୍ର-ଭୂଷଣ ଏବଂ ମଣିରତ୍ନାଦି ପ୍ରଦାନ କଲେ । ନାଗରାଜଙ୍କ ଦତ୍ତ ସେଇ ସମସ୍ତ ବସ୍ତୁକୁ ତଥା ତାଙ୍କର ପାଦପଦ୍ମରେ ପ୍ରଣାମ କରି ମଦାଳସାକୁ ଅଶ୍ୱ ଉପରକୁ ନେଇ କୁମାର ପାତାଳରୁ ପୃଥିବୀକୁ ଚାଲିଆସିଲେ । ନଗରବାସୀମାନେ ଯେତେବେଳେ ରାଜକୁମାରଙ୍କୁ ମଦାଳସା ସହିତ ଦେଖିଲେ ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ଘରେ ଘରେ ଉତ୍ସବ ହେବାକୁ ଲାଗିଲା । ସମସ୍ତେ ଆନନ୍ଦ ବିଭୋର ହୋଇ ନାଚିବାକୁ ଲାଗିଲେ । ସୂତ ଓ ମାଗଧ, ବନ୍ଦୀ ସ୍ତୁତି କରିବାକୁ ଲାଗିଲେ । ମାତା-ପିତା ଯେତେବେଳେ ଏହି ସମାଚାର ଶୁଣିଲେ ସେମାନେ ଆନନ୍ଦ ଆତିଶଯ୍ୟରେ ଚେତନା ହରାଇଲେ । ମାତା ମଦାଳସାକୁ ବାରମ୍ବାର ବକ୍ଷଲଗ୍ନା କରୁଥିଲେ ଏବଂ ଅନେକ ଅନେକ ଆଶୀର୍ବାଦ ଦେଲେ । ମଦାଳସା ମଧ୍ୟ ନିଜର ଶାଶୁ ଶ୍ୱଶୁରଙ୍କୁ ପ୍ରଣାମ କରି ସେମାନଙ୍କର ଚରଣଧୂଳି ଆଣି ମଥାରେ ବୋଳିଲା । ସେ ସମୟରେ ସମସ୍ତଙ୍କର ଯେଉଁ ଆନନ୍ଦ ଅନୁଭବ ହେଉଥିଲା ତାହା ଅବର୍ଣ୍ଣନୀୟ । ଲେଖାଦ୍ୱାରା ତାହା ବ୍ୟକ୍ତ କରିବା ଅସମ୍ଭବ ଏବଂ ଲେଖନୀ ମଧ୍ୟ ତା'ର ବ୍ୟାଖ୍ୟା କରିବାରେ ଅସମର୍ଥ ।

Digitized by srujanika@gmail.com

ସୂତ ମୁନି କହୁଛନ୍ତି—"ମୁନିମାନେ ! କିଛୁକାଳ ପରେ ମହାରାଜ ଶତ୍ରୁଜିତ୍ ପରଲୋକଗାମୀ ହେଲେ । ତାଙ୍କ ପରେ ପ୍ରଜାମାନେ ରାଜକୁମାର ଋତଧ୍ୱଜ କୁବଳୟାଶ୍ୱଙ୍କୁ ରାଜପଦରେ ଅଧିଷ୍ଠିତ କରାଇଲେ । ମହାରାଜ ଋତଧ୍ୱଜ ଧର୍ମପୂର୍ବକ ପୃଥିବୀ ପାଳନ କଲେ । ସମୟକ୍ରମେ ବ୍ରହ୍ମବାଦିନୀ ମଦାଳସା ଦେବୀଙ୍କ ଗର୍ଭରେ ବିକ୍ରାନ୍ତ, ସୁବାହୁ, ଶତ୍ରୁମର୍ଦ୍ଦନ ଏବଂ ଅଳର୍କ ଏହି ଚାରିପୁତ୍ର ହେଲେ । ଏମାନଙ୍କ ମଧ୍ୟରୁ ପ୍ରଥମ ତିନିଜଣ ମାତାଙ୍କ ଉପଦେଶ ମାନି ଗୃହ ତ୍ୟାଗୀ ବୈରାଗୀ ସନ୍ନ୍ୟାସୀ ହୋଇଗଲେ । କେବଳ ମହାରାଜ ଅଳର୍କ ଗୃହସ୍ଥ ଆଶ୍ରମ ଗ୍ରହଣ କରିଥିଲେ । ଶେଷରେ ସେ ମଧ୍ୟ ତ୍ୟାଗୀ ହୋଇଗଲେ ।"

ଏହାଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ମଦାଳସା ଦେବୀ ନିଜ ପୁତ୍ରମାନଙ୍କୁ କିପରି ଉପଦେଶ ଦେଲେ, ଯେଉଁଥିରେ କି ସମସ୍ତେ ଗୃହତ୍ୟାଗୀ ବୈରାଗୀ ହୋଇଗଲେ ? ମହାରାଜା ଅଳର୍କ କିପରି ଗୃହୀ ହେଲେ ଏବଂ ଶେଷରେ ତାଙ୍କର କିପରି ଜ୍ଞାନ ଉଦୟ ହେଲା ? କୃପାକରି ମଦାଳସା ଦେବୀ ଏବଂ ମହାରାଜ ଅଳର୍କଙ୍କ ସମ୍ବନ୍ଧରେ ଆପଣ ଆମକୁ ବିସ୍ତାର କରି କହନ୍ତୁ ।"

ଏହାଶୁଣି ସୂତ ମୁନି କହିଲେ—"ଭଲ କଥା, ବର୍ତ୍ତମାନ ମୁଁ ମଦାଳସା ଦେବୀ କିପରି ନିଜ ପୁତ୍ରମାନଙ୍କୁ ଜ୍ଞାନୋପଦେଶ ଦେଇଥିଲେ ତଥା ତାଙ୍କର କନିଷ୍ଠ ପୁତ୍ର ଅଳର୍କ କିପରି ଗୃହୀ ହୋଇ ଶେଷରେ ଜ୍ଞାନୀ ହୋଇଥିଲେ ସେହି ପ୍ରସଙ୍ଗ କହୁଛି । ଆପଣମାନେ ସାବଧାନରେ ଶୁଣନ୍ତୁ ।"

## କ୍ଷେପଦ୍ୟ

ନାଗ ଅଶ୍ୱତର ପୁତ୍ର ଋତଧ୍ୱଜ କେ ପ୍ରେମୀ ଅଛ ।
କରିବେ ପ୍ରତ୍ୟୁପକାର କରି ସୁତ ପିତୁ ମିଳି ସମ୍ମତ ।।
ପିତୁ ମଦାଳସା ଫେରି ତପସ୍ୟା କରି ପ୍ରକଟାଇ ।
କୁମର ପତାଳ କୁଳାଇ ପ୍ରିୟା ଫିରି ଜନନ ମିଳାଇ ।।
ପାଇ ପରସ୍ପର ପ୍ରିୟା ପ୍ରିୟ, ଅତି ପ୍ରସନ୍ନ ହୋଉ ଭୟେ ।
ପିତୁ ପ୍ରୟାଣା ସୁରପୁର କରଯୋ, ଭୂପ ଋତଧ୍ୱଜ ହୈ ଗୟେ ।।



Digitized by srujanika@gmail.com

# ମହାରାଜ ଅଳର୍କଙ୍କ କଥା

ଷଷ୍ଟି ବର୍ଷ ସହସ୍ରାଣି ଷଷ୍ଟି ବର୍ଷ ଶତାନି ଚ ।
ନାଲର୍କାଦପରୋ ରାଜନ୍ମେଦିନୀଂ ବୁଭୁଜେ ଯୁବା ॥

( ଶ୍ରୀ ଭା ୯ମ ସ୍କ-୧୭ଅ-୭ ଶ୍ଳୋକ )

## ଛପ୍ପୟ

ସୁତ ମଦାଲସା ଜନେ ଚୁର ଜ୍ଞାନୀ ତେ ସବଇ ।
ତୀନ ତ୍ୟାଗି ଘର ଗୟେ ନୃପତି ଲଖି ବୋଲେ ତବଇ ॥
ଚୌଥେ କୁଁ ମତ ମୋକ୍ଷ ଧର୍ମ କୋ ପାଠ ପଢ଼ାଓ ।
ଗୃହୀ ଧର୍ମ କୀ ସୀଖ ଦେହୁ ନିଜ ବଂଶ ଚଲାଓ ॥
ସୁତ ଅଲର୍କ ରାଜା କରେ, ଧର୍ମ ପ୍ରବୃତ୍ତି ସିଖାଇକେ" ।
ଗୁପ୍ତ ମନ୍ତ୍ର ଦେ ବନଗୟୀ, ବନ୍ଧୁ ପ୍ରବୋଧେ ଆଇକେ ॥

ସନ୍ତାନମାନଙ୍କୁ ଯୋଗ୍ୟ ଅଥବା ଅଯୋଗ୍ୟ କରିବା ବିଶେଷ ଭାବେ ମା' ହାତରେ ହିଁ ଥାଏ । ମା ଚାହିଁଲେ' ସନ୍ତାନକୁ ଯୋଗ୍ୟରୁ ଯୋଗ୍ୟତମ କରି ପାରନ୍ତି ତଥା ମା' ଚାହିଁଲେ ସନ୍ତାନକୁ ଅଧମରୁ ଅଧମ ମଧ୍ୟ କରି ପାରନ୍ତି । ଉତ୍ତମ ଚିନ୍ତାଧାରାଥିବା ମାତାଙ୍କର ସନ୍ତାନମାନେ ମଧ୍ୟ ଉତ୍ତମ ବିଚାରର ହୋଇଥାଆନ୍ତି । ଅଧମ ବିଚାରର ମାତାମାନଙ୍କର ସନ୍ତାନମାନେ ଅଧମ ବିଚାରର ହୋଇଥାଆନ୍ତି । ଅବଶ୍ୟ ଏହାର ବ୍ୟତିକ୍ରମ ମଧ୍ୟ ଦେଖାଯାଇଥାଏ । କିନ୍ତୁ ଏହା ସାଧାରଣ ନିୟମ । ଶିଶୁର ହୃଦୟ ଅତ୍ୟନ୍ତ କୋମଳ ଓଦାମାଟି ପରି । ତେଣୁ ତାକୁ ଯେପରି ଇଚ୍ଛା ସେପରି

---

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜା ! ମହାରାଜା ଅଳର୍କଙ୍କ ବ୍ୟତୀତ ଅନ୍ୟ କୌଣସି ରାଜା ଛଅଷଠି ସହସ୍ର ବର୍ଷ ଯାଏ ଯୁବକ ଅବସ୍ଥାରେ ରହି ଏହି ପୃଥିବୀରେ ରାଜଭୋଗ କରି ନାହାଁନ୍ତି ।

Digitized by srujanika@gmail.com

ଅନୁକୃତ ଦେଇ ଗଢ଼ିହୁଏ । କିନ୍ତୁ ଥରେ ଶୁଖିଗଲେ ତା' କଠିନ ହୋଇଯାଏ । ତେଣୁ ସେଥିରେ କୌଣସି ପ୍ରକାରର ପରିବର୍ତ୍ତନ ସମ୍ଭବ ହୁଏ ନାହିଁ । ଶ୍ରେଷ୍ଠ ଗଛର ଡାଳକୁ ଯେଉଁ ଆଡ଼କୁ ଇଚ୍ଛା ନୁଆଁଇ ପାରିବ । କିନ୍ତୁ ଡାଳ ବଡ଼ ହୋଇଗଲା ପରେ ଭାଙ୍ଗିଯିବ ପଛକେ ନଇଁବ ନାହିଁ । କଞ୍ଚା ଅଟାରୁ ମୋଟା ପତଳା, ଶ୍ରେଷ୍ଠ ବଡ଼ ଯେଉଁ ପ୍ରକାରର ଇଚ୍ଛା ସେ ପ୍ରକାରର ରୁଟି ତିଆରି କରି ହେବ । କିନ୍ତୁ ସେକା ହେଲାପରେ ସେଥିରେ ପରିବର୍ତ୍ତନ ଆଣିବା ଅସମ୍ଭବ । ସେଇପରି ବାଲ୍ୟକାଳର ସଂସ୍କାର ହିଁ ସ୍ଥାୟୀ ହୋଇ ରହିଯାଏ । ବଡ଼ ହେଲେ ସେଥିରୁ ମୁକ୍ତି ମିଳିବା ଅତ୍ୟନ୍ତ କଷ୍ଟକର । ମା ଯେଉଁ କାର୍ଯ୍ୟ କରିବାକୁ ପିଲାକୁ ଉତ୍ସାହିତ କରନ୍ତି ପିଲାମାନେ ତାହା ହିଁ କରିବାପାଇଁ ଭଲ ପାଆନ୍ତି । ପିଲାଟିଏ ଶ୍ରେଷ୍ଠବେଳେ କାହାର ଗୋଟେ କଲମ ନେଇଆସିଲା, ମା' ତା'ର କାର୍ଯ୍ୟକୁ ସ୍ୱାଗତ ଜଣାଇଲେ । ତେଣୁ ସେ ଉତ୍ସାହିତ ହୋଇ ପ୍ରତିଦିନ କିଛି ନା କିଛି ଜିନିଷ ଚୋରି କରି ଆଣିଲା । ବଡ଼ ହେଲାପରେ ସେ ବଡ଼ ଚୋର ହୋଇଗଲା । ଶେଷରେ ରାଜାଙ୍କରୁ ଚୋରି କରି ଧରାପଡ଼ିଲା । ତାକୁ ଫାସୀ ଦିଆଗଲା । ତା'ର ମା'କୁ ଦେଖା କରିବାପାଇଁ ସେ ଅନ୍ତିମ ଇଚ୍ଛା ପ୍ରକାଶ କରିଥିଲା । ମା' ସହିତ ତା'ର ଭେଟ କରାଗଲା । କିଛି କଥାବାର୍ତ୍ତା କରିବା ମଝିରେ ସେ ତା'ର ମାଆର କାନ କାମୁଡ଼ି ନେଲା । ମାଆ ବିକଳରେ କାନ୍ଦିବାକୁ ଲାଗିଲା । ଲୋକେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲା— "ପ୍ରଥମେ ପ୍ରଥମେ ଯେତେବେଳେ ମୁଁ ଚୋରି ଆରମ୍ଭ କରିଥିଲି ଯଦି ମୋ ମାଆ ମୋର ସେଇ କାର୍ଯ୍ୟକୁ ସ୍ୱାଗତ କରି ନଥାନ୍ତା ତେବେ ଆଜି ମୁଁ କାହିଁକି ଏଡ଼େ ଚୋର ହୋଇଥାଆନ୍ତି ? କାହିଁକି ମୋତେ ଫାସୀ ଦଣ୍ଡ ଦିଆଯାଇ ଥାଆନ୍ତା ?"

ଏଥିରୁ ପ୍ରମାଣିତ ହେଉଛି ଯେ ସନ୍ତାନ ଉତ୍ତମ ବା ଅଧମ ହେବା ମାତାର ଶିକ୍ଷା ଉପରେ ହିଁ ନିର୍ଭର କରେ । କେବଳ ଅକ୍ଷର-ଜ୍ଞାନର ନାମ ଶିକ୍ଷା ନୁହେଁ । ପୁସ୍ତକସ୍ଥିତ ବିଦ୍ୟାକୁ ବିଦ୍ୟା କୁହାଯାଏ ନାହିଁ । ସେଇ ଯଥାର୍ଥ ବିଦ୍ୟା ଯାହା ଆମକୁ ମୁକ୍ତିପଥ ଆଡ଼କୁ ନେଇଯାଏ । ମୋକ୍ଷଜ୍ଞାନ ପୋଥିପତ୍ରରୁ ଲାଭହୁଏ ନାହିଁ, ସତ୍‌ସଙ୍ଗ ଏବଂ ସଂସ୍କାର ଦ୍ୱାରା ହିଁ ତା' ପ୍ରାପ୍ତ ହୋଇଥାଏ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଆପଣମାନେ ମୋତେ ମହାରାଣୀ ମଦାଳସା ଏବଂ ତାଙ୍କର ପୁତ୍ରମାନଙ୍କ କଥା ପଚାରିଛନ୍ତି । ତାଙ୍କର କନିଷ୍ଠ ପୁତ୍ର ଥିଲେ ଅଳର୍କ । ମହାରାଜ ଅଳର୍କଙ୍କ କଥା ମଧ୍ୟ ଏ ସବୁ ପ୍ରସଙ୍ଗ ଭିତରେ ଆସିବ ।"

ମଦାଳସାଙ୍କ ସ୍ୱାମୀ ମହାରାଜ ଋତଧ୍ୱଜ ବା କୁବଳୟାଶ୍ୱ ଧର୍ମପୂର୍ବକ ପୃଥିବୀପାଳନ କଲେ । ସର୍ବପ୍ରଥମେ ତାଙ୍କର ଏକ ପୁତ୍ର ଜାତ ହେଲା । ସମଗ୍ର ରାଜ୍ୟରେ ଆନନ୍ଦ ଉତ୍ସବ ପାଳନ କରାଗଲା । ମହାରାଜ ତା'ର ନାମ ରଖିଲେ 'ବିକ୍ରାନ୍ତ' । ଏଇ ନାମ ଶୁଣି ମହାରାଣୀ ମଦାଳସା ବହୁତ ହସିଲେ ।

Digitized by srujanika@gmail.com

ରାଜା ପଚାରିଲେ—"ଦେବି ! ତୁମେ ହସିଲ କାହିଁକି ?"

ମଦାଳସା କହିଲେ—"ମୁଁ ଏହି ନାମ ଶୁଣି ହସିଲି ।"

ରାଜା କହିଲେ—"କ୍ଷତ୍ରିୟଙ୍କର ଶୌର୍ଯ୍ୟ ବୀର୍ଯ୍ୟ ଏହି ପ୍ରକାରର ନାମରୁ ହିଁ ପ୍ରକାଶିତ ହୋଇଥାଏ ।"

ଏହାଶୁଣି ମଦାଳସା କିଛି କହିଲେ ନାହିଁ । ସେ ପିଲାଟିକୁ କୋଳକୁ ନେଇ ଖୁଆଇଲେ । ପିଲାଟି ଯେତେବେଳେ କାନ୍ଦୁଥିଲା ସେ ଗୀତଗାଇ କହୁଥିଲେ—"ତୁ ଶୁଦ୍ଧ, ତୁ ବୁଦ୍ଧ, ନିରଞ୍ଜନ, ସଂସାରର ମାୟାରୁ ତୁ ମୁକ୍ତ । ଏଇ କଳ୍ପିତ ନାମ ତୋର ଶରୀରର, ତୋର ଏଇ ଶରୀର ସହ କୌଣସି ସମ୍ପର୍କ ନାହିଁ । ତୁ କାନ୍ଦନା ।" ଅଥବା କହୁଥିଲେ—

କ୍ରନ୍ଦନ ମିଥ୍ୟା, ଏ ତ ଶବ୍ଦ ମାତ୍ର, ଏଥିରେ ଭଲ ମନ୍ଦ କ'ଣ ବା ଅଛି ! ଲୋକେ କହୁଛନ୍ତି ତୁ ବଡ଼ ହେଉଛୁ । ବାସ୍ତବରେ ତୋର ଶରୀର ହିଁ ବଢ଼ୁଛି । ତୋର ଶୁଦ୍ଧ ବୁଦ୍ଧ ଆତ୍ମାର ବୃଦ୍ଧି ନାହିଁ, କିମ୍ବା ହ୍ରାସ ନାହିଁ । ତୁ ଏଇ ମିଥ୍ୟା ଶରୀରରେ ଆତ୍ମୀୟତା ସ୍ଥାପନ କରି ମୋହ ଆଦୌ କରିବୁ ନାହିଁ । ଏ ଯେଉଁ ସାଂସାରିକ ସମ୍ବନ୍ଧ ଏହା ସମ୍ପୂର୍ଣ୍ଣ ମିଥ୍ୟା । ଏଥିରେ ତୁ ବାନ୍ଧି ହୋଇ ଯିବୁ ନାହିଁ । ମୋର ଯେଉଁ ସ୍ତନରୁ ତୁ ଆଗ୍ରହର ସହିତ ଦୁଗ୍‌ଧପାନ କରୁଛୁ ତାହା ମାଂସର ଗ୍ରନ୍ଥିମାତ୍ର, ସେଇଥିରେ ରସ ଦୁଗ୍‌ଧ ହୋଇ ତଥା ବାହାରକୁ ବାହାରିଥାଏ । ଏହାକୁ ତୁ ସୁଖର ସ୍ଥାନ ବୋଲି ମନେ କରିବା ଅନୁଚିତ । ଏ ସବୁ ତ ପ୍ରକୃତିର ବିକାର । ସଂସାରର ସମସ୍ତ ବସ୍ତୁ ପଞ୍ଚଭୂତଦ୍ୱାରା ନିର୍ମିତ । ତୋ'ର ଏହି ଶରୀରର ମଧ୍ୟ । ଏଇ ଦେହ ଏବଂ ଅନ୍ୟ ପଦାର୍ଥ ଭିତରେ ତତ୍ତ୍ୱତଃ କୌଣସି ପାର୍ଥକ୍ୟ ନାହିଁ । ତୁ ସବୁଥିରେ ସମାନ ଭାବ ରଖିବୁ ।" ଏହିପରି ପ୍ରତିଦିନ ମାତା ମଦାଳସା ନିଜ ଶିଶୁକୁ ଖୁଆଇବାବେଳେ ପିଆଇବାବେଳେ ତଥା ଖେଳେଇବା ସମୟରେ ପରମାର୍ଥିକ ଉପଦେଶ ଦେଉଥିଲେ । ସେଇ ଚିନ୍ତାଧାରା ତଥା ଭାବକୁ ସେ ନିଜ ଦୁଗ୍‌ଧ ସହ ପିଆଉଥିଲେ ।

ମଦାଳସାଙ୍କ ଗର୍ଭରୁ ପୁଣି ଦ୍ୱିତୀୟ ସନ୍ତାନ ଜାତ ହେଲା । ରାଜା ତାହାର ନାମ ରଖିଲେ ସୁବାହୁ । ସୁବାହୁ ନାମ ଶୁଣି ମଧ୍ୟ ବ୍ରହ୍ମବାଦିନୀ ମଦାଳସା ହସିଲେ । ତାକୁ ମଧ୍ୟ ସେ ବ୍ରହ୍ମଜ୍ଞାନର ଶିକ୍ଷା ଦେଲେ । ସେ ମଧ୍ୟ ଅତ୍ୟନ୍ତ ଜ୍ଞାନୀ ତଥା ବିବେକୀ ହେଲେ । ତୃତୀୟ ପୁତ୍ର ହେବା ସମୟରେ ରାଜା ତା'ର ନାମ ରଖିଲେ ଶତ୍ରୁମର୍ଦ୍ଦନ । ଏଇ ନାମକୁ ଶୁଣି ରାଣୀ ବହୁତ ହସିଲେ ।

ତେଣୁ ରାଜା କହିଲେ—"ଦେବି ! ମୁଁ କେତେ ସୁନ୍ଦର ସୁନ୍ଦର ନାମ ରଖୁଛି । କିନ୍ତୁ ତୁମେ ସେ ନାମ ସବୁ ଶୁଣି ହସୁଛ କାହିଁକି ?"

Digitized by srujanika@gmail.com

ମଦାଳସା ହସିଦେଇ କହିଲେ—"ମହାରାଜ ! କିଏ ଶତ୍ରୁ ? କିଏ ମିତ୍ର ? ଆତ୍ମା ତ ଏକ-ଅଦ୍ୱିତୀୟ । ସେଥିରେ ଶତ୍ରୁ ମିତ୍ରର ଭେଦଭାବ ହିଁ ଆଦୌ ନାହିଁ । ବାକି ରହିଲା ଶରୀର । ତାହା ମଧ୍ୟ ଅନିତ୍ୟ ଷଡ଼ଭଙ୍ଗୁର ତଥା ଜଡ଼ ଅଟେ । ସେଥିରେ ଶତ୍ରୁତା-ମିତ୍ରତା ସୃଷ୍ଟି ହୋଇପାରେ ନାହିଁ ।"

ରାଜା କହିଲେ—"ଭଲ କଥା, ଏବେ ଯେଉଁ ପୁତ୍ର ହେବ ତା'ର ନାମକରଣ ତୁମେ ହିଁ କରିବ ।"

ରାଣୀ ତାଙ୍କ କଥାକୁ ସ୍ୱୀକାର କଲେ । ସମୟ କ୍ରମେ ଚତୁର୍ଥ ପୁତ୍ର ଜନ୍ମ ହେଲା । ରାଜାଙ୍କ କହିବାଦ୍ୱାରା ରାଣୀ ତା'ର ନାମ ରଖିଲେ ଅଲର୍କ । ଏଇ ନାମକୁ ଶୁଣି ଏଥର ରାଜା ହସି ଦେଲେ ଏବଂ କହିଲେ—"ପୁତ୍ରକୁ ଏପରି ନିରର୍ଥକ ନାମ କାହିଁକି ଦେଲ ?"

ମଦାଳସା କହିଲେ—"ସବୁ ନାମ ନିରର୍ଥକ । ନାମରେ କଣ ଅର୍ଥ ଅଛି ? ନାମ-ଗୁଣ ଉଭୟ ମିଥ୍ୟା । ପଞ୍ଚଭୂତର ଗୋଟିଏ ପିଣ୍ଡ, ବ୍ୟବହାର ପାଇଁ ତା'ର ଗୋଟିଏ ନାମ ରଖା ହୋଇଥାଏ । ସେ ନାମ ଯାହା କିଛି ହେଉ ପଛକେ । ଆପଣ ଯେଉଁ ନାମ ରଖିଛନ୍ତି ତାହା ମଧ୍ୟ ନିରର୍ଥକ । ପିଲାଏ ବାଲିରେ ଖେଳା କରି କାହାର ନାମ ଲଡ଼ୁ ଦିଅନ୍ତି ତ କାହାର ପେଡ଼ା ଦିଅନ୍ତି । ତେଣୁ ସବୁ ନାମ ନିରର୍ଥକ । ପ୍ରକୃତରେ ସେ ସବୁରେ ବାଲି ହିଁ ବାଲି ଥାଏ । ସେହିପରି ଆତ୍ମା ସର୍ବବ୍ୟାପକ ଅଟେ । ସେ ହିଁ ଭଗବାନ । ସେ ହିଁ ସର୍ବତ୍ର ବ୍ୟାପ୍ତ ହୋଇପାରେ । ଆପଣ ଆପଣଙ୍କର ତିନି ପୁତ୍ରଙ୍କର ନାମ ରଖିଥିଲେ, ବିକ୍ରାନ୍ତ, ସୁବାହୁ ଏବଂ ଅରିମର୍ଦ୍ଦନ । ଏ ସବୁ ଶରୀରର ନାମ ନା ଆତ୍ମାର ? ଶରୀରର ନାଶ ହୋଇଥାଏ, ତେବେ ମଧ୍ୟ ମିଥ୍ୟା । କାରଣ ଶରୀରର ବିଶେଷ ଗତି, ବାହୁ ସୌନ୍ଦର୍ଯ୍ୟ ତଥା ଶତ୍ରୁଦମନ କରିବାର ଶକ୍ତି ନାହିଁ ଯେହେତୁ ତାହା ଜଡ଼ । ପୁନଶ୍ଚ ଯଦି ଏହା ଆତ୍ମାର ନାମ ହୋଇଥାଏ, ତେବେ ମଧ୍ୟ ନିରର୍ଥକ । ଆତ୍ମା ତ ସର୍ବବ୍ୟାପକ । ତା'ର ବିଶେଷ ଗତି କ'ଣ ହେବ ? ଆତ୍ମାରେ ସୁରୂପତା-କୁରୂପତାର ଭେଦଭାବ ନାହିଁ । ତେଣୁ ତା'ର ବାହୁ ସୁରୂପ ହେବ କିପରି ? ଆତ୍ମାର କେହି ଶତ୍ରୁ ନାହାନ୍ତି । ତେଣୁ ତା'ର ଶତ୍ରୁମର୍ଦ୍ଦନ ନାମ ମଧ୍ୟ ନିରର୍ଥକ । ଯେପରି ଏଇ ନାମଗୁଡ଼ିକ ନିରର୍ଥକ ସେହିପରି ଅଲର୍କ ନାମ ମଧ୍ୟ ନିରର୍ଥକ ।"

ବର୍ତ୍ତମାନ ରାଜା ଜାଣିପାରିଲେ ଯେ ତାଙ୍କର ପତ୍ନୀ ବ୍ରହ୍ମବାଦିନୀ ଯୋଗିନୀ । ସେ ବିନମ୍ର ସହକାରେ ରାଣୀଙ୍କୁ କହିଲେ—ତୁମେ ତ ମୋର ତିନିପୁତ୍ରଙ୍କୁ ବ୍ରହ୍ମଜ୍ଞାନୀ କରିଦେଇଛ । ଏବେ ଆଉ ସେମାନେ ଗୃହସ୍ଥାଶ୍ରମ କାହିଁକି ସ୍ୱୀକାର କରିବେ ? କୃପାକରି ମୋର ଏଇ ଚତୁର୍ଥ ପୁତ୍ରକୁ ତୁମେ ଏପରି ଉପଦେଶ ଦିଅ ଯାହାଦ୍ୱାରା ସେ

Digitized by srujanika@gmail.com

ଗୃହସ୍ଥ ଧର୍ମ ପାଳନ କରିବ, ବଂଶ ପରମ୍ପରାକୁ ଅକ୍ଷୁଣ୍ଣ ରଖିବ । ଯେପରି ବଂଶ ବିଚ୍ଛେଦ ନ ହେଉ ଏଥିପାଇଁ ଅନ୍ତତଃ ଗୋଟିଏ ପୁତ୍ରକୁ ତୁମେ ପ୍ରବୃତ୍ତି ମାର୍ଗର ଉପଦେଶ ପ୍ରଦାନ କର ।

ମଦାଳସା କହିଲେ—"ଭଲକଥା, ତାକୁ ମୁଁ ପ୍ରବୃତ୍ତି ମାର୍ଗର ହିଁ ଉପଦେଶ ଦେବି ।"

ବର୍ତ୍ତମାନ ମଦାଳସା ପ୍ରଥମ ପୁତ୍ରମାନଙ୍କ ପରି କୁମାର ଅଲର୍କଙ୍କୁ ସଂସାରରୁ ବୈରାଗ୍ୟ ହେବାପାଇଁ ଉପଦେଶ ନ ଦେଇ ତାକୁ ଖୁଆଇବାବେଳେ କହିବାକୁ ଲାଗିଲେ—"ପୁତ୍ର ! ତୁମେ ଧନ୍ୟ ଏଇ ସମସ୍ତ ବସୁନ୍ଧରାର ଶତ୍ରୁହୀନ ଏକମାତ୍ର ଅଧୀଶ୍ୱର ତୁମେ ହିଁ ହେବ । ତୁମେ ଧର୍ମ କରି ହିଁ ମୋକ୍ଷ ମାର୍ଗକୁ ଅଗ୍ରସର ହେବ । ତୁମେ ଦେବତା, ପିତୃପୁରୁଷ, ଋଷିମୁନି, ଅତିଥି ଅଭ୍ୟାଗତ ତଥା ସମସ୍ତଙ୍କର ସଦାସର୍ବଦା ଉତ୍ତମ ସେବା-ସତ୍କାର କରିବ । ପ୍ରଜାଙ୍କୁ ପୁତ୍ରପରି ପାଳନ କରିବ ତଥା ଯଜ୍ଞ ଦ୍ୱାରା ଦେବତାମାନଙ୍କର ଶ୍ରାଦ୍ଧତର୍ପଣ ଦ୍ୱାରା ପିତୃପୁରୁଷମାନଙ୍କୁ ଏବଂ ଅତିଥ୍ୟ-ସତ୍କାର ଦ୍ୱାରା ଅତିଥିମାନଙ୍କର ସେବା କରିବ । ବାଲ୍ୟକାଳରେ ବନ୍ଧୁର ଅଧୀନ, କୁମାର ଅବସ୍ଥାରେ ଗୁରୁଜନମାନଙ୍କର, ଯୁବାବସ୍ଥାରେ କୁଳୀନ ଧର୍ମାତ୍ମା ସଦାଚାରୀ ବ୍ରାହ୍ମଣଙ୍କର ଏବଂ ବୃଦ୍ଧାବସ୍ଥାରେ ରହି ଅରଣ୍ୟସ୍ଥ ବ୍ରହ୍ମନିଷ୍ଠ ତପସ୍ୱୀଙ୍କ ଅଧୀନରେ ରହିବ । ପ୍ରଜାପାଳନରେ ତୁମେ ଭୟ କରିବ ନାହିଁ । ପରସ୍ତ୍ରୀକୁ ମାତୃବତ୍ ଦେଖିବ ଏବଂ ସମସ୍ତଙ୍କୁ ଯଥୋଚିତ ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାର କରିବ ଏପରି ପ୍ରତିଦିନ ମା ପୁତ୍ରକୁ ଉପଦେଶ ଦେବାକୁ ଲାଗିଲେ ।"

କ୍ରମେ କ୍ରମେ କୁମାର ଅଲର୍କ ବଡ଼ ହେଲେ । ମାତାଙ୍କ ପାଦଧରି ସେ ସବୁ ବିଷୟରେ ଶିକ୍ଷାଗ୍ରହଣ କଲେ । ସମସ୍ତ ଶାସ୍ତ୍ରନିପୁଣା ଯୋଗିନୀ ମଦାଳସା ନିଜ ପୁତ୍ରକୁ ସର୍ବଦା ସଦୁପଦେଶ ଦେଉଥିଲେ । ସେ କୁମାର ଅଲର୍କଙ୍କୁ ରାଜନୀତି, ବର୍ଣ୍ଣାଶ୍ରମଧର୍ମ ଗୃହସ୍ଥଙ୍କର କର୍ତ୍ତବ୍ୟ, ଶ୍ରାଦ୍ଧର ସମସ୍ତ ବିଧି, ଗୃହସ୍ଥୋଚିତ ସଦାଚାର ଏବଂ ଭୋଜ୍ୟ-ଗ୍ରାହ୍ୟ, ଦ୍ରବ୍ୟଶୁଦ୍ଧି, ଅଶୌଚ ତଥା କର୍ତ୍ତବ୍ୟା-କର୍ତ୍ତବ୍ୟ ବିଷୟରେ ଉତ୍ତମ ଉପଦେଶ ଦେଉଥିଲେ ।

ଏଇପ୍ରକାର ମାତାଙ୍କର ଉପଦେଶ ପାଇ କୁମାର ଅଲର୍କ ସବୁ ବିଷୟରେ ପାରଦର୍ଶୀ ହୋଇଗଲେ । ସେ ବିଧିବଦ୍ଧ ଭାବରେ ବୈଦିକ ରୀତି ଅନୁଯାୟୀ ବିବାହ କଲେ ଏବଂ ଅନେକ ପୁତ୍ରଙ୍କର ଜନକ ହେବାର ଗୌରବ ଅର୍ଜନ କଲେ ।

ସେପଟେ ମହାରାଜ ଋତଧ୍ୱଜ ରାଜ୍ୟଶାସନ କରି କରି ବୃଦ୍ଧ ହୋଇ-ଯାଇଥିଲେ । ରାଜକୁମାର ଅଲର୍କ ମଧ୍ୟ ରାଜ୍ୟଭାର ନେବାପାଇଁ ଯୋଗ୍ୟ

Digitized by srujanika@gmail.com

ହୋଇଯାଇଥିଲେ । ତେଣୁ ମହାରାଜ ଋତଧ୍ୱଜ ରାଜକୁମାର ଅଲର୍କଙ୍କ ହାତରେ ରାଜ୍ୟଭାର ସମର୍ପଣ କରି ନିଜ ପତ୍ନୀ ସହିତ ବଣକୁ ଯିବାପାଇଁ ଉଦ୍ୟତ ହେଲେ । ମାତାପିତାଙ୍କର ବଣକୁ ଯିବା କଥା ଦେଖି ମହାରାଜ ଅଲର୍କଙ୍କର ହୃଦୟରେ ଦାରୁଣ ଦୁଃଖ ହେଲା ଏବଂ ସେ ଶ୍ରେଷ୍ଠ ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ । ତେଣୁ ମାତା ମଦାଳସା ତାଙ୍କୁ ସସ୍ନେହ ଆଲିଙ୍ଗନ କରି କହିଲେ—"ପୁତ୍ର, ଏତେ ଅଧିର ହେବା ଉଚିତ ନୁହେଁ । ତୁମେ ଧର୍ମପୂର୍ବକ ପ୍ରଜାପାଳନ କର । କେବେହେଲେ କୁପଥରେ ପାଦ ଦେବନାହିଁ । ଭଗବାନ ତୁମର ମଙ୍ଗଳ କରିବେ । ଯଦି ତୁମର ଦୈବଯୋଗରୁ ଶତ୍ରୁମାନଙ୍କ ଦ୍ୱାରା ଅଥବା ଅନ୍ୟ କୌଣସି କାରଣରୁ କୌଣସି ବିପତ୍ତି ଆସେ, ତେବେ ମୁଁ ଦେଇଥିବା ଏହି ମୁଦ୍ରିକାରେ ରେଶମୀ ବସ୍ତ୍ରରେ ଅତି ସୂକ୍ଷ୍ମ ଅକ୍ଷରରେ ଯାହା ଲେଖାଯାଇଛି ତାହା ପଢ଼ିନେବ । ତାହା ପଢ଼ିବା ଦ୍ୱାରା ତୁମର ଦୁଃଖ ଅବଶ୍ୟ ଦୂର ହେବ । ଏହିପରି ଉପଦେଶ ଦେଇ ତଥା ସେଇ ସୁବର୍ଣ୍ଣ ମୁଦ୍ରିକା ପୁତ୍ରକୁ ପ୍ରଦାନ କରି ମଦାଳସା ନିଜ ସ୍ୱାମୀଙ୍କ ସହ ବଣକୁ ଚାଲିଗଲେ ।" ବଣରେ ସ୍ୱାମୀଙ୍କ ସହ ତପସ୍ୟା କରି ଶେଷରେ ପତିଙ୍କ ସହ ପରମପଦ ପ୍ରାପ୍ତ ହେଲେ ।

ଏପଟେ ମହାରାଜ ଅଲର୍କ ଗଙ୍ଗା ଯମୁନାର ପବିତ୍ର ସଙ୍ଗମ ସ୍ଥଳରେ ଯମୁନା ନଦୀର ଦକ୍ଷିଣ ତୀରରେ ଯେଉଁଠି ସର୍ବଦା ଦେବର୍ଷିମାନେ ବାସକରନ୍ତି, ସେହି ଦେବର୍ଷିଙ୍କ ନିକଟରେ ନିଜ ନାମ ଅନୁସାରେ ଅଲର୍କପୁର (ଅରୈଲ ନଗର) ନିର୍ମାଣ କରି ଧର୍ମପୂର୍ବକ ପୃଥିବୀ ପାଳନ କରିବାକୁ ଲାଗିଲେ । ସେ ଛଅଷଠି ସହସ୍ର ବର୍ଷ ପର୍ଯ୍ୟନ୍ତ ଏଇ ପୃଥିବୀ ଉପରେ ରାଜସୁଖ ଭୋଗ କରିଥିଲେ ।

ବଣରେ ରହି ତପସ୍ୟାରେ ରତଥିବା ମହାରାଜ ଅଲର୍କଙ୍କର ବଡ଼ଭାଇ-ମାନଙ୍କ ମଧ୍ୟରୁ ସୁବାହୁ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେ ଭାବିଲେ—"ମୋର କନିଷ୍ଠ ଭାଇ କ'ଣ ଏହିପରି ସଦାସର୍ବଦା ବିଷୟଭୋଗରେ ମାତି ରହିଥିବ ? କ'ଣ ଏହି ରାଜସୁଖ ଭୋଗକରି ସେ ଏହି ସଂସାରରୁ ବିଦାୟ ନେବ ? ଅଜ୍ଞାନୀଙ୍କ ପରି ତାକୁ ପୁନଃ ପୁନଃ ଜନ୍ମ ମରଣରେ ଭଉଁରୀରେ ପଶିବାକୁ ହେବ ! ମାତା ମଦାଳସାଙ୍କର ବକ୍ଷରୁ ଯିଏ କ୍ଷୀର ପିଇଛି ତାକୁ ଅନ୍ୟମାତାଙ୍କ କ୍ଷୀର ପିଇବାପାଇଁ ପଡ଼ିବ, ଏହା ଉଚିତ ହେବନାହିଁ । ଯଦି ସ୍ୱାକୁ ମୁଁ କେବଳ ଉପଦେଶ ଦେବି ସ୍ୱା ଉପରେ କିଛି ପ୍ରଭାବ ପଡ଼ିବ ନାହିଁ । କୌଣସି ପ୍ରକାରେ ସ୍ୱା ଉପରେ ବିପତ୍ତି ଆସିଲେ ହିଁ ସ୍ୱାର ବୈରାଗ୍ୟ ଆସିବ ।" ଏହାଭାବି ସେ କାଶୀରାଜଙ୍କ ନିକଟକୁ ଯାଇ କହିଲେ—"ହେ ରାଜା ! ମୋର ଭାଇ ଅଲର୍କ ମୋ ରାଜ୍ୟ ନେଇଯାଇଛି । ଆପଣ ମୋର ସହାୟତା କରନ୍ତୁ । ତା'ଠାରୁ ମୋର ରାଜ୍ୟ ଆଣି ମୋତେ ଦିଅନ୍ତୁ ।"

Digitized by srujanika@gmail.com

କାଶୀରାଜ ବୃଦ୍ଧଧ୍ୱଜ କୁମାରସୁବାହୁଙ୍କର ପ୍ରାର୍ଥନା ସ୍ୱୀକାର କଲେ । ସେ ମହାରାଜ ଅଳର୍କଙ୍କ ନିକଟକୁ ଖବର ପଠାଇଲେ—"ତୁମେ ତୁମର ରାଜ୍ୟ ସୁବାହୁଙ୍କୁ ଦେଇଦିଅ, ନହେଲେ ଆମେ ତୁମର ସର୍ବସ୍ୱ ଛଡ଼େଇ ନେଇ ସୁବାହୁଙ୍କୁ ଦେଇଦେବୁ ।"

ଏହାର ଉତ୍ତରରେ ମହାରାଜ ଅଳର୍କ ଦୂତ ଦ୍ୱାରା କାଶୀରାଜଙ୍କୁ ଖବର ପଠାଇଲେ—"ମୋର ସବୁ ବଡ଼ ଭାଇ ମୋର ପୂଜନୀୟ ଅଟନ୍ତି । ସେମାନେ ମୋ ନିକଟକୁ ଆସି ମୋତେ ରାଜ୍ୟ ମାଗିଲେ ମୁଁ ସେମାନଙ୍କୁ ସର୍ବସ୍ୱ ଦେଇ ବଣକୁ ଚାଲିଯାଇପାରେ । କିନ୍ତୁ ଭୟ ଦେଖାଇ କେହି ମୋ ଉପରେ ଶାସନ କଲେ ମୁଁ ସହିବ ନାହିଁ । ମୁଁ ଭୟଭୀତ ହୋଇ ଗୋଟିଏ ହାତ ବି ଭୂମି ଛାଡ଼ିବି ନାହିଁ ।"

ଏପରି ଉତ୍ତର ପାଇ କାଶୀରାଜ ମହାରାଜ ଅଳର୍କଙ୍କ ଉପରେ ଆକ୍ରମଣ କରିଦେଲେ । ଅଳର୍କଙ୍କ ସମସ୍ତ ସାମନ୍ତ ରାଜାମାନଙ୍କୁ ପରାଜିତ କରି ରାଜପୁରକୁ ଚାରିଦିଗରୁ ଘେରାଉ କରିଦେଲେ । ରାଜା ଅଳର୍କ କେତେଜଣ ସୈନିକଙ୍କ ସହ ନିଜ ଦୁର୍ଗ ଭିତରେ ଏକପ୍ରକାର ବନ୍ଦୀ ହୋଇଗଲେ । କାଶିରାଜଙ୍କର ସୈନିକମାନେ ଦୁର୍ଗକୁ ଖାଦ୍ୟ ପାନୀୟ ଯିବା ମଧ୍ୟ ବନ୍ଦ କରିଦେଲେ । ଦୁର୍ଗ ଭିତରେ ସୈନ୍ୟସଂଖ୍ୟା ଅପେକ୍ଷାକୃତ ଅଳ୍ପ ଥିଲା ତଥା ଯୁଦ୍ଧସାମଗ୍ରୀ ମଧ୍ୟ ବିଶେଷ କିଛି ନ ଥିଲା । ରାଜା ଏବେ ମହା ଦୁଶ୍ଚିନ୍ତାରେ ପଡ଼ିଗଲେ । ସେତିକିବେଳେ ରାଜାଙ୍କର ମୁଦ୍ରିକା କଥା ସ୍ମରଣ ହେଲା । ତତ୍‌କ୍ଷଣାତ୍ ସେ ମୁଦ୍ରିକାଟି ଭାଙ୍ଗି ସେଥିରେ ଥିବା ରେଶମୀ ବସ୍ତ୍ରକୁ ବାହାର କଲେ । ସେଥିରେ ଅତ୍ୟନ୍ତ ସୂକ୍ଷ୍ମ ଅକ୍ଷରରେ ଏହି ଶ୍ଳୋକ ଦୁଇଟି ଲେଖା ହୋଇଥିଲା—

ସଙ୍ଗଃ ସର୍ବାତ୍ମନା ତ୍ୟାଜ୍ୟଃ ସ ଚେତ୍ୟକ୍ତୁଂ ନ ଶକ୍ୟତେ ।
ସ ସଦ୍ଭିଃ ସହ କର୍ତ୍ତବ୍ୟଃ ସତାଂ ସଙ୍ଗୋ ହି ଭେଷଜମ୍ ॥
କାମଃ ସର୍ବାତ୍ମନା ହେୟୋ ହାତୁଂ ଚେଚ୍ଛକ୍ୟତେ ନ ସଃ ।
ମୁମୁକ୍ଷାଂ ପ୍ରତି ତତ୍କାର୍ଯ୍ୟ ସୈବ ତସ୍ୟାପି ଭେଷଜମ୍ ॥

ଅର୍ଥାତ୍, ସର୍ବପ୍ରକାର ସଙ୍ଗ ବର୍ଜନ କରିବା ବାଞ୍ଛନୀୟ । ଯଦି ସର୍ବଥା ତ୍ୟାଗ କରି ନ ହୁଏ ତେବେ ସତ୍ ପୁରୁଷଙ୍କର ହିଁ ସଙ୍ଗଲାଭ କରିବା ଉଚିତ । କାରଣ ସତ୍‌ସଙ୍ଗ ହିଁ ସଂସାରରେ ଆସକ୍ତି ନାଶର ଔଷଧି । ସର୍ବଥା କାମନା ତ୍ୟାଗ କରିବା ଉଚିତ । ଯଦି ସମ୍ପୂର୍ଣ୍ଣ ଭାବେ ତ୍ୟାଗ କରି ନ ହୁଏ ତେବେ ମୁକ୍ତିର କାମନା କରିବା ଉଚିତ । କାରଣ ମୁମୁକ୍ଷା ସବୁ କାମନା ବିନାଶର ଏକମାତ୍ର ଔଷଧ ।

ଏଇ ଶ୍ଳୋକ ଦୁଇଟିକୁ ସେ ବାରମ୍ବାର ପଢ଼ିଲେ । ସେ ଏହାକୁ ଯେତେ ଥର ପଢ଼ୁଥିଲେ ସେତେଥର ତାଙ୍କୁ ଅଧିକରୁ ଅଧିକ ଆନନ୍ଦ ମିଳୁଥିଲା ।

Digitized by srujanika@gmail.com

ସେ ଯେତେ ଯେତେ ଏହାର ଅର୍ଥସବୁ ବାହାର କରୁଥିଲେ ତାଙ୍କୁ ସେଇ ଅନୁସାରେ ଶାନ୍ତି ମିଳୁଥିଲା । ବର୍ତ୍ତମାନ ତାଙ୍କର ମୁକ୍ତିର କାମନା ଜାଗ୍ରତ ହେଲା । ଏହାର ପ୍ରାପ୍ତି ସତ୍‌ସଙ୍ଗ ଦ୍ୱାରା ହିଁ ହୋଇପାରିବ । ତେଣୁ ସେ ଏକ ଗୁପ୍ତମାର୍ଗରେ ଭଗବାନ ଦତ୍ତାତ୍ରେୟଙ୍କ ନିକଟକୁ ଚାଲି ଗଲେ । ଅତ୍ରିନନ୍ଦନ ଭଗବାନ ଦତ୍ତାତ୍ରେୟ ତାଙ୍କୁ ପ୍ରକୃତ ଜିଜ୍ଞାସୁ ବୋଲି ହୃଦୟଙ୍ଗମ କରି ଉପଦେଶ ଦେଲେ । ସଦ୍‌ଗୁରୁଙ୍କ ନିକଟରୁ ଜ୍ଞାନରୂପକ ଅଞ୍ଜନ ଲଗାଇବା କ୍ଷଣି ତାଙ୍କର ଅଜ୍ଞାନ ଅନ୍ଧକାର ନଷ୍ଟ ହୋଇଗଲା । ତାଙ୍କ ନିକଟରେ ସଂସାରର ସବୁ ପଦାର୍ଥ ଅନିତ୍ୟ, କ୍ଷଣଭଙ୍ଗୁର ଏବଂ ପରିଣାମରେ ଦୁଃଖଦ ବୋଲି ପ୍ରତୀତ ହେଲା । ସେ ସଦ୍‌ଗୁରୁଙ୍କ ପାଦପଦ୍ମରେ ପ୍ରଣାମ କଲେ ଏବଂ କୃତାର୍ଥ ହୋଇ ସେଇ ସ୍ଥାନକୁ ଆସିଲେ ଯେଉଁଠାରେ କାଶୀରାଜ ଏବଂ ସୁବାହୁ ବସିଥିଲେ । ଆସିବା କ୍ଷଣି ମହାରାଜ ଅଳର୍କ କହିଲେ—"ମହାରାଜ ! ବର୍ତ୍ତମାନ ଆପଣ ଚାହାଁନ୍ତି ତ ମୋର ସମସ୍ତ ରାଜ୍ୟ ସ୍ୱୟଂ ଉପଭୋଗ କରନ୍ତୁ ବା ମୋର ଜ୍ୟେଷ୍ଠଭ୍ରାତା ସୁବାହୁଙ୍କୁ ଦେଇ ଦିଅନ୍ତୁ ।"

କାଶିରାଜ ଆଶ୍ଚର୍ଯ୍ୟ-ଚକିତ ହୋଇ ପଚାରିଲେ—"ହେ ରାଜା ! ଆପଣଙ୍କର ଏତେ ପରିବର୍ତ୍ତନ କିପରି ହେଲା ? ଏ ତ କ୍ଷତ୍ରିୟ ଧର୍ମ ନୁହେଁ । କ୍ଷତ୍ରିୟ ଶତ୍ରୁ ସହିତ ଯୁଦ୍ଧ କରି ବିଜୟ ପାଏ, ନଚେତ ସମ୍ମୁଖ ସଂଗ୍ରାମରେ ହସି ହସି ପ୍ରାଣ ବିସର୍ଜନ କରେ । ଶତ୍ରୁ ସମ୍ମୁଖରେ ଦୀନ ହୋଇ ଆତ୍ମସମର୍ପଣ କରିବା ଦୁର୍ବଳତା, କ୍ଷୁଦ୍ରତା ତଥା ନପୁଂସକତା ଅଟେ ।

ହସି ହସି ମହାରାଜ ଅଳର୍କ କହିଲେ—"ହେ ରାଜା ! ବର୍ତ୍ତମାନ ମୋର ଆଉ ଏଇ ମିଥ୍ୟା ପ୍ରତି ଅଭିମାନ ନାହିଁ । ବର୍ତ୍ତମାନ ଏଇ ସଂସାରରେ ମୋର ଆଉ କେହି ଶତ୍ରୁ ବି ନାହାନ୍ତି । ଯଦି କେହି ଶତ୍ରୁ ହିଁ ନାହାନ୍ତି, ତେବେ କାହାଠାରୁ କିଏ ଲାଭ କରିବ ? ଏବେ ତ ଭଗବାନ ଦତ୍ତାତ୍ରେୟଙ୍କ କୃପାରୁ ମୋର ଅଜ୍ଞାନାନ୍ଧକାର ଦୂର ହୋଇ ଯାଇଛି । ବର୍ତ୍ତମାନ ମୋର ଶତ୍ରୁ, ମିତ୍ର କେହି ନାହାନ୍ତି । ଏବେ ତ ମୁଁ ସମସ୍ତଙ୍କ ପାଖରେ ଏକ ଆତ୍ମାକୁ ଦେଖୁଛି ଏବଂ ନିଜ ଭିତରେ ଚରାଚରଭୂତଙ୍କୁ ଅନୁଭବ କରୁଛି । ଏବେ ଶୋକ, ମୋହ ଇତ୍ୟାଦି ମୋତେ ବିଚଳିତ କରି ପାରିବେ ନାହିଁ ।

ଏତିକି ଶୁଣିବା ମାତ୍ରେ ଅଳର୍କଙ୍କର ବଡ଼ ଭାଇ ସୁବାହୁ ଦୌଡ଼ିଆସି କନିଷ୍ଠ ଭାଇକୁ ଆଲିଙ୍ଗନ କଲେ ଏବଂ କାଶୀରାଜଙ୍କୁ କହିଲେ—"ହେ ରାଜା ! ଆପଣ ବର୍ତ୍ତମାନ ଯାଆନ୍ତୁ । ମୁଁ କୃତକାର୍ଯ୍ୟ ହୋଇଅଛି । ଯେଉଁ କାର୍ଯ୍ୟ ନିମନ୍ତେ ମୁଁ ଆପଣଙ୍କର ସହାୟତା ଚାହିଁଥିଲି ତାହା ପୂର୍ଣ୍ଣ ହୋଇଗଲା ।"

Digitized by srujanika@gmail.com

କାଶୀରାଜ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଆପଣ କେଉଁ କାର୍ଯ୍ୟ ନିମନ୍ତେ ଆସିଥିଲେ ?"

ସୁବାହୁ କହିଲେ—"ମୁଁ ମୋର ଭାଇ ଅଲର୍କଙ୍କୁ ରାଜ ସୁଖରେ ଆସକ୍ତ ଦେଖି ତାଙ୍କୁ ତା'ର ଯଥାର୍ଥ ସ୍ୱରୂପ ବିଷୟରେ ସଚେତନ କରିବାପାଇଁ ଆସିଥିଲି ।" ଆମେ ତିନି ଭାଇ ତ ତତ୍ତ୍ୱଜ୍ଞାନୀ ଅଟୁ । କିନ୍ତୁ ଏ ଆମର ଶ୍ରେଷ୍ଠଭାଇ ତତ୍ତ୍ୱଜ୍ଞ ହୋଇ ମଧ୍ୟ ସାଂସାରିକ ଭୋଗବିଳାସରେ ଲିପ୍ତ ଥିଲା । ମୁଁ ଭାବିଲି, "ଯେତେ ଦିନ ଯାଏ ଏହାର କିଛି ଦୁଃଖ ନ ଆସିଛି ସେତେଦିନ ଯାଏ ଏହାର ମୁକ୍ତି କାମନା ଉଦ୍ରେକ ହେବ ନାହିଁ, ମୋକ୍ଷ ପାଇଁ ଇଚ୍ଛା ସୃଷ୍ଟି ହେବ ନାହିଁ । ଯେତେବେଳେ ଯାଏ ମୋକ୍ଷ ଇଚ୍ଛା ସୃଷ୍ଟି ହେବ ନାହିଁ, ସେତେଦିନ ଯାଏ ମନୁଷ୍ୟ ସତ୍‌ସଙ୍ଗ ନିକଟକୁ ଯାଏ ନାହିଁ । ବର୍ତ୍ତମାନ ସେ ଭଗବାନ ଦତ୍ତାତ୍ରେୟଙ୍କ ନିକଟରୁ ମୋକ୍ଷ ଧର୍ମର ଦୀକ୍ଷା ନେଇ ସାରିଛି । ମୁଁ କୃତକାର୍ଯ୍ୟ ହୋଇଗଲି । ରାଜ୍ୟ ନେଇ ମୁଁ କ'ଣ କରିବି ? ମୁଁ ରାଜ୍ୟ ଲୋଭରେ ଆସି ନ ଥିଲି ବରଂ ରାଜ୍ୟ-ବନ୍ଧନରୁ ନିଜ ଭାଇକୁ ମୁକ୍ତ କରିବାପାଇଁ ଆସିଥିଲି ।

ଏହାଶୁଣି କାଶୀରାଜ ମହାତ୍ମା ସୁବାହୁଙ୍କର ପାଦ ଧରି ପକାଇ କହିଲେ—"ମହାତ୍ମା ! ଆପଣ ଆପଣଙ୍କର ଭାଇଙ୍କୁ ତ ଉଦ୍ଧାର କରି ଦେଲେ । ମୁଁ ମଧ୍ୟ ଆପଣଙ୍କ ଆଜ୍ଞା ପାଳନ କରିଛି, ମୁଁ ବି ତ ଆପଣଙ୍କର ଶରଣରେ ଆସିଛି, ମୋର- ଉଦ୍ଧାର ଆପଣ କେବେ କରିବେ ?"

ସୁବାହୁ କହିଲେ—"ମହାରାଜ ! ଆପଣ ତ ସବୁ ବିଷୟରେ ଜ୍ଞାନ ଲାଭ କରିଛନ୍ତି । କେବଳ ମୋକ୍ଷ-ଜ୍ଞାନରୁ ହିଁ ଆପଣ ବଞ୍ଚିତ ହୋଇଛନ୍ତି । ତେଣୁ ଆପଣ ଅହଂକୃ ତଥା ମମତାକୁ ତ୍ୟାଗ କରି ଦିଅନ୍ତୁ । ମୁଁ ଏହା ଅଟେ, ଏ ମୋର—ଏଇ ଅଭିମାନକୁ ତ୍ୟାଗ କରିବା ମାନେ ହିଁ ଆତ୍ମଜ୍ଞାନ ପ୍ରାପ୍ତ ହେବ ।" ଏହି ପ୍ରକାର କାଶୀରାଜଙ୍କୁ ଅନେକ ପ୍ରକାରର ଉପଦେଶ ଦେଇ ସାରି ନିଜ ଶ୍ରେଷ୍ଠ ଭାଇ ଅଲର୍କଙ୍କ ମାଙ୍କରେ କୃତକାର୍ଯ୍ୟ ହୋଇ ମହାତ୍ମା ସୁବାହୁ ଅରଣ୍ୟକୁ ଚାଲିଗଲେ । ଏପଟେ କାଶିରାଜ ମଧ୍ୟ ଅଲର୍କଙ୍କ ଦ୍ୱାରା ପୂଜିତ ତଥା ସମ୍ମାନିତ ହୋଇ ସେନା ସହିତ ନିଜ ନଗରୀକୁ ଫେରି ଆସିଲେ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମହାରାଜ ଅଲର୍କଙ୍କର ଅନେକ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ଥିଲେ 'ସନ୍ତତି' । ଭଗବାନ ଦତ୍ତାତ୍ରେୟଙ୍କ ପାଖରୁ ଜ୍ଞାନପ୍ରାପ୍ତ ହେଲାପରେ ମହାରାଜ ଅଲର୍କ ନିଜର ଜ୍ୟେଷ୍ଠ ପୁତ୍ର 'ସନ୍ତତି'ଙ୍କୁ ରାଜ୍ୟ ସିଂହାସନରେ ବସାଇଲେ । ରାଜ୍ୟ ଭାର ତାଙ୍କ ଉପରେ ନ୍ୟସ୍ତ

Digitized by srujanika@gmail.com

କରି ପତ୍ନୀଙ୍କ ସହିତ ତପସ୍ୟା କରିବା ନିମନ୍ତେ ସେ ବଣକୁ ଚାଲିଗଲେ । ସେଠାରେ ସେ ଗୁରୁଙ୍କ ବାକ୍ୟ ଅନୁସାରେ ଯୋଗମାର୍ଗର ଅଭ୍ୟାସ କଲେ । ଅଭ୍ୟାସ କରୁ କରୁ ସେ ନିର୍ବିକଳ୍ପ ସମାଧି ମଧ୍ୟ ଶିକ୍ଷା କରି ପାରିଲେ । ଏହି ଅନୁପମ ସମ୍ପତ୍ତି ଲାଭ କରି ସେ ପରମ ନିର୍ବାଣ-ପଦ ପ୍ରାପ୍ତ ହେଲେ । ଏ ତ ମୁଁ ଅତ୍ୟନ୍ତ ସଂକ୍ଷେପରେ ମହାରାଜ ଅଳର୍କଙ୍କର ଚରିତ ଶୁଣାଇଲି । ବର୍ତ୍ତମାନ ତାଙ୍କର ସନ୍ତତିଙ୍କର ବୃତ୍ତାନ୍ତ ଶୁଣନ୍ତୁ ।''

## ଛପ୍‌ପୟ

ସେନା-ସହିତ ସୁବାହୁ କାଶୀରାଜା ସଁଗ ଆୟେ ।
ଘେର ଅଲର୍କ କୋ ଘେରି ଲୟୋ ନୃପ ଅତି ଘବରାୟେ ।।
ଦତ୍ତାତ୍ରେୟ ସମୀପ ଗୟେ ମାଁ ମନ୍ତ୍ର ମାନକେଂ ।
ପାଇ ଜ୍ଞାନ ସମ ଭବ ଦେଖାୟୋ ରିପୁହୁ ଅନକେ ।।
ଲଖି ଅଲର୍କ କୁଁ ବୋଧଯୁତ, କାଶୀରାଜ ନିଜପୁର ଗୟେ ।
ପାୟୋ ପଦ ନିର୍ବାଣ-ପଦ, ତନ ସୁତ-ସନ୍ତତି ନୃପ ଭୟେ ।।



Digitized by srujanika@gmail.com

## ରଜିରନ୍ଧ୍ର ଏବଂ ଅନେନାଙ୍କ ବଂଶାବଳୀ

ଦେବୈରଭ୍ୟର୍ଥିତୋ ଦୈତ୍ୟାନ୍ ହତ୍ୱେନ୍ଦ୍ରାୟାଦଦାଦ୍ଦିବମ୍ ।
ଇନ୍ଦ୍ରସ୍ତସ୍ମୈ ପୁନର୍ଦତ୍ତ୍ୱା ଗୃହୀତ୍ୱା ଚରଣୌ ରଜେଃ ।।
ଆତ୍ମାନମର୍ପୟାମାସ ପ୍ରହ୍ଲାଦାଦ୍ୟରିଶଙ୍କିତଃ ।।
ପିତର୍ୟୁପରତେ ପୁତ୍ରା ୟାଚମାନାୟ ନୋ ଦଦୁଃ ।।

( ଶ୍ରୀ ଭା-୯ସ୍କ-୧୭-ଅ ୧୩-୧୪ ଶ୍ଳୋ )

### ଛପ୍‌ପୟ

ସଂତତ ସ୍ନ୍ତ ଦ୍ୟୁ ସୁନୀଥ ସୁକେତନ ସୁତ ଶୁଭ ତନକେ ।
ଧର୍ମକେତୁ ତନ ପୁତ୍ର ସତ୍ୟକେତୁ ସୁତ ଉନକେ ।।
କ୍ଷତ୍ରବୃଦ୍ଧ କୋ ବଂଶ କହ୍ୟୋ କୁଳ ରମ୍ଭ ଭୟୋ ଦ୍ୱିଜ ।
ନୃପତ ଅନେନା ଛଠି ପୀଢ଼ି ତକ ଚଲ୍ୟୋ ବଂଶନିଜ ।।
ଆୟୁ-ତନୟ ରଜି ଅତ ବଲୀ, ହୋହୁ ଚରଣ ମହଁ ଇନ୍ଦ୍ର ନତ ।
ଭୟେ ପୁତ୍ର ରଣ-ବାଙ୍କୁରେ, ତେଜସ୍ୱୀ ତନ ପଞ୍ଚଶତ ।।

ଉପାର୍ଜିତ ବସ୍ତୁ ନିୟମାନୁସାରେ ଚାଲୁଥିବା ବ୍ୟକ୍ତି ପାଖରେ ହିଁ ରହିପାରେ । ପ୍ରତିକୂଳ ବ୍ୟବହାର କରୁଥିବା ବ୍ୟକ୍ତି ପାଖରେ କିଛିଦିନ ରହିଲେ ମଧ୍ୟ ସ୍ଥାୟୀ ରୂପରେ ତା' ପାଖରେ ରହିପାରେ ନାହିଁ । ଐଶ୍ୱର୍ଯ୍ୟ ଗର୍ବରେ ପାଗଳ ହୋଇ ଯେ ନିଜ

---

※ ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜା ! ଦେବତାଙ୍କ ପ୍ରାର୍ଥନା ଶୁଣି ରଜି ଦୈତ୍ୟଙ୍କୁ ମାରି ଇନ୍ଦ୍ରଙ୍କୁ ସ୍ୱର୍ଗରାଜ୍ୟ ଦେଇଦେଲେ । ଇନ୍ଦ୍ର ନିଜର ଶତ୍ରୁ ପ୍ରହ୍ଲାଦ ପ୍ରଭୃତି ରାକ୍ଷସମାନଙ୍କ ଦ୍ୱାରା ଭୟଭୀତ ହୋଇ ରଜିଙ୍କୁ ପୁନଶ୍ଚ ସ୍ୱର୍ଗ ଫେରାଇ ଦେଲେ । ତାଙ୍କର ପାଦଧରି ଆତ୍ମସମର୍ପଣ କଲେ । କିନ୍ତୁ ପିତାଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରମାନେ ଇନ୍ଦ୍ରଙ୍କୁ ମାଗିବା ସତ୍ତ୍ୱେ ମଧ୍ୟ ସ୍ୱର୍ଗ ଫେରାଇଲେ ନାହିଁ ।

Digitized by srujanika@gmail.com

କୁଳାଚାର ଏବଂ ସଦାଚାର ଭୁଲିଯାଏ ସେ ଶେଷରେ ଅନୁତାପ ହିଁ କରିଥାଏ । ସେଥିପାଇଁ ଅନଧିକାର ଚେଷ୍ଟା ନ କରି ନିଜର ବଂଶ ପରମ୍ପରା, ବଂଶ-ପରମ୍ପରାଗତ ସଦାଚାର ସର୍ବଦା କାର୍ଯ୍ୟରେ ପାଳନ କରିବା ଉଚିତ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ମହାରାଜ ଅଲର୍କଙ୍କର ଜ୍ୟେଷ୍ଠପୁତ୍ର ହେଲେ ସନ୍ତତି । ସନ୍ତତିଙ୍କର ପୁତ୍ର ସୁନୀଥ ଏବଂ ସୁନୀଥଙ୍କର ପୁତ୍ର ସୁକେତନ । ସୁକେତନଙ୍କର ଧର୍ମକେତୁ ନାମକ ପୁତ୍ର ହୋଇଥିଲା । ଧର୍ମକେତୁଙ୍କର ପୁତ୍ର ସତ୍ୟକେତୁ ଏବଂ ସତ୍ୟକେତୁଙ୍କ ପୁତ୍ର ଧୃଷ୍ଟକେତୁ । ଧୃଷ୍ଟକେତୁଙ୍କ ଔରସରେ ଜନ୍ମନେଲେ ସୁକୁମାର ଏବଂ ସୁକୁମାରଙ୍କଠାରୁ ବୀତିହୋତ୍ର । ବୀତିହୋତ୍ରଙ୍କ ପୁତ୍ର ହେଲେ ଭର୍ଗ ଏବଂ ଭର୍ଗଙ୍କ ପୁତ୍ର ହେଲେ ରାଜା ଭର୍ଗଭୂମି । ଏମାନେ ସମସ୍ତେ ମହାରାଜ କ୍ଷେତ୍ରବୃଦ୍ଧଙ୍କ ବଂଶରେ ମହାରାଜ କାଶୀଙ୍କଠାରୁ ସୃଷ୍ଟ ରାଜନ୍ୟବର୍ଗ ଅଟନ୍ତି । କ୍ଷତ୍ରବୃଦ୍ଧ ମହାରାଜ ଆୟୁଙ୍କର ଦ୍ୱିତୀୟ ପୁତ୍ର ଥିଲେ । ଚତୁର୍ଥ ପୁତ୍ର ମହାରାଜ ରମ୍ଭଙ୍କର ରଭସ ନାମକ ପୁତ୍ର ହେଲା, ରଭସଙ୍କର ଗମ୍ଭୀର ତଥା ଗମ୍ଭୀରଙ୍କ ପୁତ୍ର ହେଲେ ଅକ୍ରିୟ । ଅକ୍ରିୟଙ୍କର କନ୍ୟା ସନ୍ତାନ ମଧ୍ୟ ହୋଇଥିଲେ । ସେମାନେ ସମସ୍ତେ ବ୍ରାହ୍ମଣ ହୋଇଯାଇଥିଲେ ।

ବର୍ତ୍ତମାନ ଅନେନାଙ୍କର ବଂଶ ବୃତ୍ତାନ୍ତ ବର୍ଣ୍ଣନା କରୁଅଛୁ । ମହାରାଜ ଆୟୁଙ୍କର ପଞ୍ଚମ ପୁତ୍ର ଥିଲେ ଅନେନା । ତାଙ୍କର ପୁତ୍ର ହେଲେ ଶୁଦ୍ଧ, ଶୁଦ୍ଧଙ୍କର ଶୁଚି, ଶୁଚିଙ୍କର ତ୍ରିକକୁଦ ଏବଂ ତ୍ରିକକୁଦଙ୍କର ପୁତ୍ର ହେଲେ ଧର୍ମସାରଥୀ । ଧର୍ମସାରଥି ବ୍ରହ୍ମଜ୍ଞାନୀ ଥିଲେ । ତେଣୁ ସେ ବିବାହ କଲେନାହିଁ । ତେଣୁ ତାଙ୍କର କୌଣସି ସନ୍ତାନ ହୋଇ ନ ଥିଲେ ।

ମହାରାଜ ଆୟୁଙ୍କର ତୃତୀୟ ପୁତ୍ର ହେଲେ ରଜି । ସେ ଅତ୍ୟନ୍ତ ଧର୍ମ-ପରାୟଣ, ଶୂରବୀର, ତେଜସ୍ୱୀ, ପୁଣ୍ୟଶ୍ଳୋକ ତଥା ଚକ୍ରବର୍ତ୍ତୀ ଥିଲେ । ସେ ଏତେ ତେଜସ୍ୱୀ ଥିଲେ ଯେ ଇନ୍ଦ୍ର ମଧ୍ୟ ତାଙ୍କୁ ସ୍ୱର୍ଗରାଜ୍ୟ ସମର୍ପଣ କରି ଦେଇଥିଲେ ।

ଏହାଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ମର୍ତ୍ତ୍ୟଲୋକରେ ଜଣେ ମରଣଶୀଳ ରାଜାଙ୍କୁ ଇନ୍ଦ୍ର ସ୍ୱର୍ଗରାଜ୍ୟ ସମର୍ପଣ କରିଦେଲେ ? ମହାରାଜ ରଜି ଇନ୍ଦ୍ରଙ୍କର ଏପରି କ'ଣ ଉପକାର କରିଥିଲେ ?"

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ସଂସାରରେ ସବୁ ସ୍ୱାର୍ଥର ଖେଳ । ସ୍ୱାର୍ଥପାଇଁ ଗଧକୁ ମଧ୍ୟ ବାପ ବୋଲି ସ୍ୱୀକାର କରାଯାଇପାରେ ଏବଂ ସ୍ୱାର୍ଥ ନ ଥିଲେ ଲୋକେ ନିଜର ସୃଷ୍ଟିକର୍ତ୍ତାଙ୍କୁ, ପିତାଙ୍କୁ ମଧ୍ୟ ଭୁଲିଯାଇ ପାରନ୍ତି । "ସୃଷ୍ଟି ଆରମ୍ଭରୁ ଦେବତା ଏବଂ ଅସୁରମାନଙ୍କ ମଧ୍ୟରେ ଯେଉଁ ଶତ୍ରୁତା ଲାଗିରହିଛି, ସବୁବେଳେ ଶାରୀରିକ ଶକ୍ତି ବୃଦ୍ଧିରୁ ଅସୁରମାନେ ଜୟଯୁକ୍ତ ହୋଇଛନ୍ତି । ଦେବତାଙ୍କ

Digitized by srujanika@gmail.com

ପାଖରେ କେବଳ ଭଗବାନଙ୍କ କୃପା ଛଡ଼ା ଅଉ ବା କ'ଣ ଅଛି ! ତାଙ୍କର ସହାୟତାରେ ସେମାନେ ସ୍ୱର୍ଗକୁ ସବୁବେଳେ ଅସୁରମାନଙ୍କ ହାତରୁ ବଞ୍ଚାଇ ରଖିଥାଆନ୍ତି । ଥରେ ଅସୁର ଏବଂ ଦେବତାଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେବାର ସମୟ ଆସିଗଲା । ସମସ୍ତଙ୍କର ଆଶଙ୍କା ହେଲା ଯେ ଏବେ ଘୋର ଯୁଦ୍ଧ ହେବ । ଯୁଦ୍ଧ ପୂର୍ବରୁ ଦେବତା ଏବଂ ଅସୁର ମିଶି ଲୋକପିତାମହ ବ୍ରହ୍ମାଙ୍କ ନିକଟକୁ ଗଲେ ଏବଂ ପ୍ରତ୍ୟେକ ବିନୟ ସହକାରେ ପଚାରିଲେ—"ପ୍ରଭୁ ! ଏଇ ସଂଗ୍ରାମରେ କାହାର ବିଜୟ ହେବ ?"

ବ୍ରହ୍ମା ତ ଦୂରଦ୍ରଷ୍ଟା ଅଟନ୍ତି । ସେ ବହୁତ ଭାବଚିନ୍ତି ଉତ୍ତର ଦିଅନ୍ତି । ସେ କହିଲେ—"ଦେଖ ଭାଇ ! ଯେଉଁଠାରେ ଧର୍ମ ଥାଏ ସେଇଠାରେ ହିଁ ଯଶ, ଐଶ୍ୱର୍ଯ୍ୟ, ଏବଂ ବିଜୟ ରହିଥାଏ । ଆଜିକାଲି ପୃଥିବୀରେ ଜଣେ ପରମ ଧର୍ମାତ୍ମା ମହାରାଜ ରଜି ଅଛନ୍ତି, ସେ ଭଗବାନଙ୍କର ଉତ୍ତମ ବିଭୂତି ଅଟନ୍ତି । ତୁମ ଦୁହିଁଙ୍କ ମଧ୍ୟରୁ ଯାହା ପକ୍ଷରେ ରାଜା ରଜି ରହିବେ, ବିଜୟ ତାଙ୍କର ହିଁ ହେବ ।"

ଏତିକିମାତ୍ର ଶୁଣୁ ଶୁଣୁ ଅସୁରମାନେ ଦୌଡ଼ି ଦୌଡ଼ି ମହାରାଜ ରଜିଙ୍କ ନିକଟରେ ପହଞ୍ଚି ନମ୍ରତା ପୂର୍ବକ କହିଲେ—"ହେ ରାଜା ! ଆପଣ ଧର୍ମାତ୍ମା ଅଟନ୍ତି । ଯୁଦ୍ଧର ଏଇ ନିୟମ ଯେ କ୍ଷତ୍ରିୟଙ୍କ ନିକଟକୁ ଯେ ପ୍ରଥମେ ଆସେ ସେ ତାହାର ହିଁ ସହାୟତା କରନ୍ତି । ଦେବତାମାନଙ୍କ ସହିତ ଆମର ଯୁଦ୍ଧ ହେବାକୁ ଯାଉଛି । ସେଥିରେ ଆପଣ ଆମ୍ଭମାନଙ୍କ ସହିତ ରହିବା ଉଚିତ ।"

ମହାରାଜ ରଜି କହିଲେ—"ମୁଁ ସ୍ୱୀକାର କଲି । କିନ୍ତୁ ବିଜୟ ପ୍ରାପ୍ତି ହେଲେ ସ୍ୱର୍ଗର ରାଜା ଇନ୍ଦ୍ର ମୁଁ ହିଁ ହେବ ।"

ଏହାଶୁଣି ଲୋଭୀ ଅସୁରମାନେ ଅତ୍ୟନ୍ତ ଦୁଃଖିତ ହେଲେ । ସେମାନେ କହିଲେ—"ତା'ହେଲେ ଆମର ଯୁଦ୍ଧ କରିବା ଦ୍ୱାରା ଲାଭ କଅଣ ହେଲା ? ଶତକ୍ରତୁ ଇନ୍ଦ୍ର ଯେପରି ଅଛନ୍ତି ଆପଣ ମଧ୍ୟ ସେହିପରି ହୋଇଯିବେ ! ଆମ୍ଭେ ତ ବହୁତଙ୍କୁ ଯେ ଅସୁରମାନଙ୍କ ମଧ୍ୟରେ ଶ୍ରେଷ୍ଠ ପ୍ରହ୍ଲାଦ ହିଁ ଆମର ଇନ୍ଦ୍ର ହୁଅନ୍ତୁ । ଆପଣ ଆମର ସହାୟତା କରନ୍ତୁ ବା ନ କରନ୍ତୁ, ଆମେ ଆପଣଙ୍କୁ ଇନ୍ଦ୍ରପଦ ଦେଇପାରିବୁ ନାହିଁ ।" ଏହା କହି ଅସୁରମାନେ ଚାଲିଗଲେ ।

ସେମାନଙ୍କ ପରେ ଦେବତାମାନେ ମଧ୍ୟ ଆସି ପହଞ୍ଚିଲେ ଏବଂ ରଜିଙ୍କର ସହାୟତା ଭିକ୍ଷା କଲେ । ସେମାନଙ୍କୁ ମଧ୍ୟ ରାଜା ଏହିକଥା କହିଲେ—"ଦେଖ ଭାଇ !

Digitized by srujanika@gmail.com

ତୁମେ ଭଲ ଭାବ ବା ମନ୍ଦ ଭାବ ମୁଁ କିନ୍ତୁ ସିଧା କଥା କହେ । ଲୁଚେଇ ଛପେଇ କଥା କହିବା ମୁଁ ଜାଣିନ । ସିଧାସିଧି ଭାବରେ ପରିଷ୍କାର କଥା କହୁଛୁ ଯେ ଯୁଦ୍ଧ ପାଇଁ ମୁଁ ପ୍ରସ୍ତୁତ, କିନ୍ତୁ ବିଜୟ ଲାଭ ହେଲେ ଇନ୍ଦ୍ରପଦ ମୋର ।"

ଦେବରାଜ ଇନ୍ଦ୍ର କହିଲେ—"ମହାରାଜ ! ମୁଁ ଆପଣଙ୍କ କଥାରେ ରାଜି । ଆପଣ ବର୍ତ୍ତମାନଠାରୁ ଅମର ଇନ୍ଦ୍ର ହେଲେ ।" ଏହାଶୁଣି ମହାରାଜ ରଜି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଅସୁରଙ୍କ ସହ ଯୁଦ୍ଧ କଲେ । ଏହି ଯୁଦ୍ଧରେ ରଜିଙ୍କର ଅସ୍ତ୍ର-ଶସ୍ତ୍ରର ବର୍ଷା ଦେଖି ଅସୁରମାନେ ଭୟଭୀତ ହୋଇ ଯୁଦ୍ଧ ଛାଡ଼ି ପଳାଇଗଲେ । ଦେବତାମାନଙ୍କର ବିଜୟ ହେଲା । ତା'ପରେ ଦେବରାଜ ଇନ୍ଦ୍ର ହାତ ଯୋଡ଼ି କହିଲେ—"ମହାରାଜା ରଜି ! ମୁଁ ଆଜିଠାରୁ ଆପଣଙ୍କର ପୁତ୍ର ହେଲି ।"

ଏହାଶୁଣି ମହାରାଜ ରଜି ହସି ପକାଇଲେ ଏବଂ କହିଲେ—"ଯେତେବେଳେ ତୁମେ ମୋର ପୁତ୍ର ହୋଇ ସାରିଲଣି, ଏବେ ସ୍ୱର୍ଗର ରାଜ୍ୟଭାର ତୁମେ ହିଁ ନିଅ ।" କିନ୍ତୁ, ଇନ୍ଦ୍ରଙ୍କୁ ତ ଅସୁରଙ୍କ ଭୟ ଲାଗିଥିଲା । ସେ ଜାଣିଥିଲେ ଯେ ମହାରାଜ ରଜି ସ୍ୱର୍ଗରୁ ଚାଲିଯିବାକ୍ଷଣି ଅସୁରମାନେ ପୁନର୍ବାର ଆକ୍ରମଣ କରି ଦେବେ । ତେଣୁ ଦେବରାଜ ଇନ୍ଦ୍ର ମହାରାଜ ରଜିଙ୍କ ପାଦ ଧରି କହିଲେ—"ସ୍ୱର୍ଗର ରାଜା ହୋଇ ଆପଣ ହିଁ ରହନ୍ତୁ । ମୁଁ ଆପଣଙ୍କ ପୁତ୍ର ଭାବେ ଆପଣଙ୍କୁ କାର୍ଯ୍ୟରେ ସହାୟତା କରିବି ।" ରାଜା ତାଙ୍କ କଥା ସ୍ୱୀକାର କରି ନେଲେ । ପୃଥିବୀରେ ଥାଇ ମଧ୍ୟ ସେ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗର ରାଜା ହୋଇ ରହିଲେ ।"

ମହାରାଜ ରଜିଙ୍କର ପାଞ୍ଚଶହ ଶୂର-ବୀର, ବଳୀୟାନ୍ ତଥା ସର୍ବଗୁଣ-ସମ୍ପନ୍ନ ପୁତ୍ର ଥିଲେ । ସେମାନେ ନିଜ ଯୋଗ ପ୍ରଭାବରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ—ସର୍ବତ୍ର ଯାଇ ଆସି ପାରୁଥିଲେ । ଶେଷରେ ମହାରାଜ ରଜି ଏଇ ସଂସାରରୁ ଚିରଦିନ ପାଇଁ ବିଦାୟ ନେଲେ । ଇନ୍ଦ୍ର କହିଲେ—"ଦେଖ, ମହାରାଜ ରଜିଙ୍କ କଥା ସ୍ୱତନ୍ତ୍ର । ତୁମେମାନେ ମର୍ତ୍ତ୍ୟଲୋକର ରାଜା । ତୁମମାନଙ୍କ ପକ୍ଷେ ସ୍ୱର୍ଗ ଅଧିକାର କରି ରହିବା ଆଦୌ ସମୀଚୀନ ନୁହେଁ ।" କିନ୍ତୁ ସେମାନେ ସମସ୍ତେ ଅତ୍ୟନ୍ତ ଲୋଭୀ ଥିଲେ । ଅନେକ ବୁଝେଇବା ସତ୍ତ୍ୱେ ମଧ୍ୟ ସେମାନେ ଇନ୍ଦ୍ରଙ୍କ କଥା ମାନିଲେ ନାହିଁ । ସେମାନେ ଦେବତାମାନଙ୍କ ସହ ଯୁଦ୍ଧ କରିବା ନିମନ୍ତେ ମଧ୍ୟ ପ୍ରସ୍ତୁତ ହୋଇଗଲେ । ତେଣୁ ଦେବେନ୍ଦ୍ର ନିଜ ଗୁରୁ ଭଗବାନ ବୃହସ୍ପତିଙ୍କ ନିକଟକୁ ଗଲେ ଏବଂ କହିଲେ—"ଭଗବାନ ! ମହାରାଜ ରଜିଙ୍କ ପୁତ୍ରମାନେ ଏବେ ସ୍ୱର୍ଗରେ ପୈତୃକ ଅଧିକାର ସ୍ଥାପନ କରିବାକୁ ଚାହୁଁଛନ୍ତି । ମହାରାଜ ରଜି ଯିନା ପ୍ରଭାବଶାଳୀ ଥିଲେ । ସେ ଆତଙ୍କବେଳେ ଆମ ରକ୍ଷା

Digitized by srujanika@gmail.com

କରିଥିଲେ । ତେଣୁ ସେ ଆମର ଉପ୍ଯୁକ୍ତ ପିତା ସମାନ ଥିଲେ । ବର୍ତ୍ତମାନ ମର୍ତ୍ତ୍ୟବାସୀ ଏଇ ପାଞ୍ଚଶହ କ୍ଷତ୍ରିୟ କପରି ସ୍ୱର୍ଗର ରାଜା ହେବେ ? ମୁଁ କଣ ସେମାନଙ୍କ ସହ ଯୁଦ୍ଧ କରିବ ?"

ଦେବଗୁରୁ ବୃହସ୍ପତି କହିଲେ—"ଦେବେନ୍ଦ୍ର ! ଏମାନଙ୍କ ସହ ଯୁଦ୍ଧ କଲେ ତ ଆପଣଙ୍କର ଅପଯଶ ହେବ ।"

ଇନ୍ଦ୍ର କହିଲେ—"ତେବେ ମହାରାଜ ! କଣ କରିବା ଉଚିତ ? ଏମାନେ ତ କଥା ମାନୁନାହାନ୍ତି । ଯଜ୍ଞର ଭୋଗକୁ ମଧ୍ୟ ସେମାନେ ଭୋଗ କରୁଛନ୍ତି ।"

ସୁରଗୁରୁ କହିଲେ—"ଦେଖ ମୁଁ ଏଇ ଲୋଭୀମାନଙ୍କୁ ଭଣ୍ଡାମୀ ଶିକ୍ଷା ଦେବି । ଯେତେବେଳେ ଏମାନେ ବେଦମାର୍ଗରୁ ଭ୍ରଷ୍ଟ ହୋଇ ଯିବେ ଆପେ ଆପେ ହିଁ ସ୍ୱର୍ଗର ଅଧିକାରରୁ ବଞ୍ଚିତ ହେବେ ।"

ବୃହସ୍ପତି ଗୋଟିଏ ଭଣ୍ଡ ସନ୍ନ୍ୟାସୀର ରୂପଧରି ସେମାନଙ୍କ ପାଖକୁ ଗଲେ ଏବଂ ସେମାନଙ୍କୁ ବେଦ ବିରୁଦ୍ଧରେ ଏପରି କଥା ସବୁ ଶୁଣାଇଲେ ଯେ ସେମାନେ ସମସ୍ତେ ବୈଦିକ ସନାତନ ଧର୍ମର ବିଦ୍ୱେଷୀ ହୋଇପଡ଼ିଲେ । ତା'ପରେ ଦେବଗୁରୁ ବୃହସ୍ପତି ଅଭିଚାର-ବିଧି ସହିତ ଏପରି ଯଜ୍ଞ କରାଇଲେ ଯାହାଦ୍ୱାରା ସେମାନେ ସମସ୍ତେ ଧର୍ମଭ୍ରଷ୍ଟ ହୋଇପଡ଼ିଲେ । ସେଇ ଧର୍ମଦ୍ରୋହୀମାନଙ୍କୁ ଇନ୍ଦ୍ର ତା'ପରେ ମାରି ଦେଇଥିଲେ । ଏହା ଫଳରେ ମହାରାଜ ରଜିଙ୍କର ବଂଶ ଆଉ ବଢ଼ିପାରି ନ ଥିଲା ।

ସୂତମୁନି କହୁଛନ୍ତି—"ମୁନିମାନେ ! ମୁଁ ଅତି ସଂକ୍ଷେପରେ ବୁଧପୁତ୍ର ମହାରାଜ ପୁରୁରବାଙ୍କର ପୁତ୍ର, ଆୟୁଙ୍କର ପାଞ୍ଚ ପୁତ୍ର ମଧ୍ୟରୁ କ୍ଷତ୍ରବୃଦ୍ଧ, ରଜି ଏବଂ ଅନେନାଙ୍କ ବଂଶର ବର୍ଣ୍ଣନା କଲି ।"

ଶୌନକ ମୁନି ପଚାରିଲେ—"ସୂତ ମୁନି ! ଆପଣ କ୍ଷତ୍ରବୃଦ୍ଧଙ୍କ ପୌତ୍ର କାଶ୍ୟ, କୁଶ ଏବଂ ଗୃତ୍ସମଦ—ଏଇ ତିନିଙ୍କ କଥା କହିଥିଲେ । ଏମାନଙ୍କ ମଧ୍ୟରୁ କାଶ୍ୟ ଏବଂ ଗୃତ୍ସମଦଙ୍କ ବଂଶ ତ ଆପଣ ବର୍ଣ୍ଣନା କରିଛନ୍ତି କିନ୍ତୁ କୁଶଙ୍କର ବଂଶକୁ ତ ଛାଡ଼ି ଯାଇଛନ୍ତି । କ'ଣ କୁଶଙ୍କର କେହି ସନ୍ତାନ ନ ଥିଲେ ?"

ସୂତ ମୁନି କହିଲେ—"ମହାରାଜ ! ଏମିତି ଯଦି ଜଣ ଜଣଙ୍କ କଥା ପଚାରିବ ତେବେ ତ ଏ ବଂଶାବଳୀ କେବେ ସମାପ୍ତ ହେବନାହିଁ । ହେଉ ଏବେ କୁଶଙ୍କ ବଂଶ ବିଷୟରେ ଶୁଣ । କୁଶଙ୍କର ପୁତ୍ର ହେଲେ ପ୍ରତି, ପ୍ରତିଙ୍କର ସଞ୍ଜୟ ଏବଂ ସଞ୍ଜୟଙ୍କର ପୁତ୍ର ହେଲେ ଜୟ । ଜୟଙ୍କର କୃତ, କୃତଙ୍କର ହର୍ଯ୍ୟବନ, ହର୍ଯ୍ୟବନଙ୍କର ସହଦେବ,

Digitized by srujanika@gmail.com

ସନ୍ନଦେବଙ୍କର ଖନ, ଖନଙ୍କର ଜୟସେନ, ଜୟସେନଙ୍କର ସଂକୃତ, ସଂକୃତଙ୍କର ପୁଣି ଜୟ ତଥା ଜୟଙ୍କର କ୍ଷତ୍ରବର୍ମା ନାମକ ପୁତ୍ର ହୋଇଥିଲେ । ହେ ରାଜା ! ମୁଁ କେତେଯାଏ ବା ଗଣିବି ? ଇଏ ତ ଅନନ୍ତ ସୃଷ୍ଟି । ମୁଁ ମୁଖ୍ୟ ମୁଖ୍ୟ କେତେଜଣ ରାଜାଙ୍କର ନାମ ଗଣିଦେଲି । ବର୍ତ୍ତମାନ ମହାରାଜ ଆୟୁଙ୍କର ସବୁଠାରୁ ବଡ଼ପୁତ୍ର ନହୁଷଙ୍କ ବଂଶ ବିସ୍ତାର ଶୁଣନ୍ତୁ । ନହୁଷ ଅତ୍ୟନ୍ତ ପ୍ରଭାବଶାଳୀ ରାଜା ଥିଲେ । ତାଙ୍କର ଏପରି ପ୍ରଭାବ ଥିଲା ଯେ ଯେତେବେଳେ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା ସେ ସ୍ୱର୍ଗ ଛାଡ଼ି ଆସି ମାନସସରୋବରରେ ପଦ୍ମନାଡ଼ ଭିତରେ ଲୁଚି ରହିଲେ । ସ୍ୱର୍ଗ ଇନ୍ଦ୍ରଶୂନ୍ୟ ହୋଇଗଲା । ଋଷିମାନେ କହିଲେ—ଇନ୍ଦ୍ରଶୂନ୍ୟ ସ୍ୱର୍ଗରେ ରହିବା ଉଚିତ ନୁହେଁ । କୌଣସି ପ୍ରଭାବଶାଳୀ ପୁରୁଷଙ୍କୁ ଆଣି ଇନ୍ଦ୍ର ପଦରେ ଅଭିଷିକ୍ତ କରିବା ଉଚିତ । ଖୋଜା ଚାଲିଲା । କିନ୍ତୁ ଦେବତା, ଯକ୍ଷ, ଗନ୍ଧର୍ବ, କିନ୍ନର, ପ୍ରଭୃତିଙ୍କ ମଧ୍ୟରେ କୌଣସି ଇନ୍ଦ୍ରଯୋଗ୍ୟ ପୁରୁଷ ମିଳିଲେ ନାହିଁ । ତା'ପରେ ସବୁ ଦେବତା ଏବଂ ଋଷିମାନେ ମହାରାଜ ନହୁଷଙ୍କୁ ଇନ୍ଦ୍ରପଦରେ ଅଭିଷିକ୍ତ କଲେ । ଚନ୍ଦ୍ରବଂଶରେ ଏ ପ୍ରଧାନ ରାଜା ହୋଇଥିଲେ । ଚନ୍ଦ୍ରଙ୍କ ପୁତ୍ର ବୁଧ, ବୁଧଙ୍କର ପୁରୁରବା, ପୁରୁରବାଙ୍କର ଆୟୁ ଏବଂ ଆୟୁଙ୍କର ପୁତ୍ର ଥିଲେ ନହୁଷ । ବର୍ତ୍ତମାନ ଆପଣ ତାଙ୍କର ପବିତ୍ର ବଂଶ ଚରିତ ଶୁଣନ୍ତୁ ।"

ଏହା ଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ଆୟୁ ପୁତ୍ର ମହାରାଜ ନହୁଷଙ୍କର ନାମ ନହୁଷ କାହିଁକି ହେଲା ? ଏହାର କାରଣ ଆପଣ ପ୍ରଥମେ କହି ତା'ପରେ ନହୁଷଙ୍କର ବଂଶ ଚରିତ ଶୁଣାନ୍ତୁ ।"

ସୂତ ମୁନି କହିଲେ—"ଭଲ କଥା । ପ୍ରଥମେ ଆପଣ ମହାରାଜା ନହୁଷଙ୍କର ନହୁଷ ନାମ ହେବାର କାହାଣୀ ଶୁଣନ୍ତୁ ।"

## ଛପ୍‌ପୟ

**ଗୟେ ପିତା ପରଲୋକ ପଞ୍ଚଶତ ରାଜା ବନି କେଂ ।**
**ସବଇ ହେଁ ହମ ଇନ୍ଦ୍ର କହେ ଶତ କ୍ରତୁ ଚୈ ତନି କେଂ ॥**
**ସ୍ୱରଗ୍‌ହୁ ତେ ଅଭିଚାର ଯଜ୍ଞ କର ଭ୍ରଷ୍ଟ ବନାୟେ ।**
**ଭୟେ ଧର୍ମରତ ବୁରତ ଇନ୍ଦ୍ର ଯମ-ସଦନ ପଠାୟେ ॥**
**ଇନ୍ଦ୍ର ବଜ୍ର ତୈ ମରେ ସବ, ବଚେଁ୍ୟା ନହିଁ ରଜିବଂଶ ପୁନି ।**
**ଆୟୁ-ତନୟ ନୃପ ନହୁଷ କୋ, ବଶଦ ଚରିତ ଅବ ସୁନହୁ ମୁନି ॥**



Digitized by srujanika@gmail.com

# ନହୁଷ-ଚରିତ

ସଂକୃତସ୍ତସ୍ୟ ଚ ଜୟଃ କ୍ଷତ୍ରଧର୍ମା ମହାରଥଃ ।
କ୍ଷତ୍ରବୃଦ୍ଧାନ୍ୱୟା ଭୂପାଃ ଶୃଣୁ ବଂଶ ଚ ନାହୁଷାତ୍ ।। ✳

(ଶ୍ରୀ ଭା-୯ମ୍-୧୭ଅ-୧୮ ଶ୍ଳୋକ)

## ଛପ୍ପୟ

ଧର ଦୟୋ ଫଳ ଆୟୁ ନୃପତି-ପତ୍ନୀ ନେ ଖାୟୋ ।
ଫଳ ପ୍ରଭାବ ତେ ଇନ୍ଦୁମତୀ ନେ ସୁତ ଇକ ଜାୟୋ ।।
ନହୁଷ ନାମ ବିଖ୍ୟାତ ହୁଣ୍ଡ ନେ ତାହି ଚୁରାୟୋ ।
ପାଚକ ବାଁଧନ ଦୟୋ ପ୍ରେମବଶ କୁଅଁର ଛୁପାୟୋ ।।
ମୁନି ବଶିଷ୍ଠ ପାଳନ କରୟୋ ବଢେ ଭୟେ ରିପୁ-ହନନ ହିତ ।
ଚଲେ ଦୈତ୍ୟ ଢିଁଗ ଜାସୁ କୋ, ଶିବ-ପୁତ୍ରୀ ମହଁ ଫସେ୍ୟା ଚିତ ।।

ବିଧିର ବିଧାନ କେତେ ବିଚିତ୍ର ହୋଇଥାଏ ! ପ୍ରାଣୀ ସେ ବିଷୟରେ କେବେ ଚିନ୍ତା କରି ପାରେ ନାହିଁ । ସୁଖ, ଦୁଃଖ, ଆୟୁ, ଜାତି, ସମୃଦ୍ଧି, କୀର୍ତ୍ତି, ଯଶ, ହାନି, ଲାଭ—ଏ ସବୁ କିଛି ପୂର୍ବରୁ ହିଁ ନିର୍ଦ୍ଧିଷ୍ଟ ହୋଇଥାଏ । ଏହା ଯେପରି ନିର୍ଦ୍ଧିଷ୍ଟ ହୋଇଥାଏ, ସେଇ ଅନୁସାରେ ପ୍ରାଣୀର ପ୍ରକୃତି ହୋଇଥାଏ, ଏବଂ ସେହି ଅନୁରୂପରେ ସେ ପ୍ରଯତ୍ନ କରିଥାଏ ତଥା ସେହି ପ୍ରକାରର କାର୍ଯ୍ୟ ତା' ଜୀବନରେ ହୋଇ ଯାଇଥାଏ । ଯାହାର ଯାହା ସହିତ ବିବାହ ହେବାର ଥାଏ, ଲକ୍ଷେ ଚେଷ୍ଟା କଲେ ସୁଦ୍ଧା ତାହା

---

✳ ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଜୟସେନଙ୍କ ପୁତ୍ର ହେଲେ ସଂକୃତ, ସଂକୃତଙ୍କର ପୁତ୍ର ହେଲେ ଜୟ, ଜୟଙ୍କ ପୁତ୍ର ମହାରଥୀ କ୍ଷତ୍ରବର୍ମା । ଏମାନେ ସମସ୍ତେ କ୍ଷତ୍ରବୃଦ୍ଧଙ୍କର ବଂଶଜ ଅଟନ୍ତି । ବର୍ତ୍ତମାନ ନହୁଷଙ୍କଠାରୁ ଉତ୍ପନ୍ନ ରାଜାମାନଙ୍କର ବଂଶ ବୃତ୍ତାନ୍ତ ଶୁଣ ।"

Digitized by srujanika@gmail.com

ବନ୍ଧ ହୋଇପାରେ ନାହିଁ, ତଥା ଯାହାର ଯାହା ସହିତ ସଂଯୋଗ ନ ଥାଏ ଲକ୍ଷେ ଚେଷ୍ଟା କଲେ ମୁଦ୍ଧା ବନ୍ଧନ ହୋଇପାରେ ନାହିଁ । ପ୍ରତ୍ୟେକର ପ୍ରତ୍ୟେକ ସହିତ ସମ୍ବନ୍ଧ ପ୍ରଥମରୁ ହିଁ ସ୍ଥିର ହୋଇଥାଏ । ଏହା ହିଁ ଯେତେବେଳେ ସ୍ଥିର, ଅନ୍ୟ କଥା ଆଶା କରିବା ଅନୁଚିତ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଆପଣମାନେ ପୁରୁରବାଙ୍କର ପୁତ୍ର ଆୟୁଙ୍କର ଜ୍ୟେଷ୍ଠ ପୁତ୍ର ନହୁଷଙ୍କ ବିଷୟରେ ମୋତେ ପ୍ରଶ୍ନ କରିଛନ୍ତି । ତାହା ମୁଁ ଆପଣମାନଙ୍କୁ ଶୁଣାଉଛି । ଏହା ଅତ୍ୟନ୍ତ ସୁନ୍ଦର ତଥା ଶିକ୍ଷାପ୍ରଦ ବିଷୟ ଅଟେ । ପ୍ରତିଷ୍ଠାନ ପୁରାଧୀଶ ମହାରାଜ ଐଳଙ୍କର ଜ୍ୟେଷ୍ଠ ପୁତ୍ର ଥିଲେ ଆୟୁ । ସେ ଥିଲେ ପରମ ଧର୍ମପରାୟଣ, ଯଶସ୍ୱୀ, ବୀର ତଥା ପୁଣ୍ୟାତ୍ମା । ସେ ସମୟରେ ପୃଥିବୀରେ ତାଙ୍କପରି ପ୍ରଜାପାଳକ, ବ୍ରାହ୍ମଣ ଭକ୍ତ ତଥା ସର୍ବପ୍ରିୟ ରାଜା ଦ୍ୱିତୀୟ କେହି ନ ଥିଲେ । ସେ ଥିଲେ ସପ୍ତଦ୍ୱୀପବତୀ ବସୁନ୍ଧରାର ଏକ ମାତ୍ର ଶାସକ । ସମସ୍ତ ଭୂ ମଣ୍ଡଳ ଉପରେ ତାଙ୍କର ଆଜ୍ଞା ହିଁ ପାଳନ କରାଯାଉଥିଲା । ଏ ସବୁକିଛି ସତ୍ତ୍ୱେ ସେ ଥିଲେ ସନ୍ତାନ ଶୂନ୍ୟ । ତାଙ୍କର ପତ୍ନୀଙ୍କର ନାମ ଇନ୍ଦୁମତୀ ସେ ଅତ୍ୟନ୍ତ ସୁନ୍ଦରୀ, ସୁକୁମାରୀ, ସୁଶୀଳା ଏବଂ ସାଧ୍ୱୀ ଥିଲେ । ନିଜ ସ୍ୱାମୀଙ୍କୁ ସେ ଦେବତା ଜ୍ଞାନରେ ଦେଖୁଥିଲେ, ତଥା ତାଙ୍କର ସମସ୍ତ ଆଜ୍ଞାକୁ ନିରାଳସ୍ୟ ଭାବରେ ହସ ହସ ମୁଖରେ ପାଳନ କରୁଥିଲେ । ସ୍ୱାମୀଙ୍କ ପ୍ରତି ତାଙ୍କର ପ୍ରୀତିର ସୀମା ନଥିଲା । କିନ୍ତୁ ସନ୍ତାନ ନଥିବାରୁ ସେ ସର୍ବଦା ଉଦାସୀନା ରହୁଥିଲେ ।

ରାଜା ମନେ ମନେ ଚିନ୍ତା କଲେ—"ମୋର କ'ଣ କରିବା ଉଚିତ ? କେଉଁ ଉପାୟରେ ମୋର ଦୁଃଖ ଦୂର ହେବ ? କିପରି ମୋର ପୁତ୍ର ଲାଭ ହେବ ? ଦୁଃଖ ସମୟରେ ସାଧୁମାନେ ହିଁ ରକ୍ଷା କରି ଥାଆନ୍ତି । ତେଣୁ ମୁଁ କୌଣସି ସାଧୁଙ୍କର ସେବା କରିବି । ଏହା ଭାବି ସେ କୌଣସି ଏକ ସାଧୁଙ୍କ ସନ୍ଧାନରେ ବାହାରି ପଡ଼ିଲେ । ଠିକ୍ ସେହି ସମୟରେ ସେ ଜାଣିବାକୁ ପାଇଲେ ଯେ—ଶ୍ରୀ ବିଷ୍ଣୁଙ୍କର ଅଂଶାବତାର ଭଗବାନ ଦତ୍ତାତ୍ରେୟ ନିକଟରେ ହିଁ ଅବସ୍ଥାନ କରୁଛନ୍ତି । ଏହା ଶୁଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ସ୍ଥିର କରି ନେଲେ—"ମୁଁ ସେବାଦ୍ୱାରା ଭଗବାନ ଦତ୍ତାତ୍ରେୟଙ୍କୁ ସନ୍ତୁଷ୍ଟ କରି ତାଙ୍କଠାରୁ ପୁତ୍ରପ୍ରାପ୍ତି ନିମନ୍ତେ ବରଦାନ ନିଶ୍ଚୟ ନେବି ।" ଏହା ଭାବି ସେ ଅତ୍ରି ନନ୍ଦନ, ଅନସୂୟା ନନ୍ଦବର୍ଦ୍ଧନ ଭଗବାନ ଦତ୍ତ ପ୍ରଭୁଙ୍କ ନିକଟକୁ ଗଲେ । ଦତ୍ତପ୍ରଭୁ ନିଜକୁ ଏପରି ଅବସ୍ଥାରେ ରଖିଥିଲେ ଯେମିତି କି ତାଙ୍କୁ ଦେଖି ଲୋକେ ଘୃଣା କରିବେ, କେହି ତାଙ୍କ ପାଖ ମାଡ଼ିବେ ନାହିଁ । ସେ କୁକୁରଙ୍କ ସହିତ ଖାଉଥିଲେ, ମୃତବ୍ୟକ୍ତିର ଖପୁରୀରେ ସୁରାପାନ କରୁଥିଲେ, ମାଂସ ଖାଉଥିଲେ ଏବଂ ସଦାସର୍ବଦା ରମଣୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହୁଥିଲେ । ଏ ସବୁ କିନ୍ତୁ ତାଙ୍କର ମାୟାଜାଲ ହିଁ ଥିଲା । ବାସ୍ତବରେ ତ ସେ ଥିଲେ ଶୁଦ୍ଧ, ବୁଦ୍ଧ, ନିରଞ୍ଜନ

Digitized by srujanika@gmail.com

ଏବଂ ନଷ୍ଟଳଙ୍କ । ମହାରାଜ ଆୟୁ କିନ୍ତୁ ତାଙ୍କୁ ଭଗବାନଙ୍କର ଅଂଶାବତାର ବୋଲି ଜାଣିଥିଲେ ତେଣୁ ଏସବୁ ତାଙ୍କର ଲୀଳା ବୋଲି ବୁଝିଥିଲେ । ଏ ତ ସର୍ବସମର୍ଥ, ତେଣୁ ଯେପରି ଲୀଳା କରନ୍ତୁ ପଛେ ଆମର ତାଙ୍କୁ ଈଶ୍ୱର ଜ୍ଞାନରେ ଭକ୍ତି କରିବା ଉଚିତ ଏବଂ ସେଇ ଭାବନେଇ ତାଙ୍କର ସେବା କରିବା ଉଚିତ ।" ଏହା ଭାବି ସେ ଦୋଷ ଗୁଣ ବିଚାର ନ କରି ଶ୍ରଦ୍ଧାର ସହ ଦତ୍ତ ପ୍ରଭୁଙ୍କର ସେବା କରିବାକୁ ଲାଗିଲେ । ଭଗବାନ ଦତ୍ତାତ୍ରେୟ କିନ୍ତୁ କଥା ନ କହି ମୌନ ରହୁଥିଲେ ।

ଯେତେବେଳେ ସେ ଦେଖିଲେ ଯେ ଏତେ ସବୁ ବିପରୀତ ଆଚରଣ କରିବା ସତ୍ତ୍ୱେ ରାଜାଙ୍କର ଶ୍ରଦ୍ଧା ମୂର୍ତ୍ତି ହେଉନାହିଁ । ସେ କହିଲେ—"ହେ ରାଜା ! ଉପର ମାଟିରେ ମର୍ଜି କାହିଁକି ପୋତୁଛ ? ପାଉଁଶରେ ହୋମ କାହିଁକି କରୁଛ ? ମୋ ପରି ଆଗ୍ରହହୀନ ବ୍ୟକ୍ତିର ସେବାଶୁଶ୍ରୂଷା କରିବା ଦ୍ୱାରା ଆପଣଙ୍କର କ'ଣ ଲାଭ ହେବ ? ଆମେ ହେଲୁ ଅଘୋରୀ, ଅଖାଦ୍ୟ ଖାଉଛୁ, ଅପେୟ ପିଉଛୁ, ଆମର ଇନ୍ଦ୍ରିୟ ସବୁ ଆମର ବଶ ନୁହଁନ୍ତି । ଦେଖ ଏଇ ସ୍ତ୍ରୀ ସଦାସର୍ବଦା ଆମ ସହିତ ରହୁଛି । ସେ ଆମକୁ ନିଜର ବଶ କରି ରଖିଛି । ତୁମେ ଯାଇ କୌଣସି ସଦାଚାରୀ ବ୍ରାହ୍ମଣଙ୍କର ସେବାକର, ତୁମର ମନୋକାମନା ପୂର୍ଣ୍ଣ ହେବ । ଆମଭଳି ଆଗ୍ରହବିଗ୍ରହହୀନ ପ୍ରାଣୀଙ୍କର ସେବା କରିବା ଦ୍ୱାରା ତୁମକୁ କିଛି ମିଳିବ ନାହିଁ ।"

ମହାରାଜ ଆୟୁ କହିଲେ—"ପ୍ରଭୁ ! ଆପଣ ମନୁଷ୍ୟ ନୁହଁନ୍ତି ଈଶ୍ୱର । ଆପଣଙ୍କ ନିକଟରେ ଆଚାରବିଚାରର ଆବଶ୍ୟକତା ହିଁ କ'ଣ ? ଆପଣ ତ କିଛି ହିଁ ଖାଉନାହାଁନ୍ତି କିମ୍ବା ପିଉନାହାଁନ୍ତି । ଆପଣଙ୍କ ନିମନ୍ତେ ସବୁକିଛି ଅଖାଦ୍ୟ ତଥା ଅପେୟ ଅଟେ । ଆପଣଙ୍କ ବାମ ଭାଗରେ ଯେଉଁ ଭଗବତୀ ବିରାଜମାନ କରିଛନ୍ତି ସେ ସାକ୍ଷାତ ଜଗଦମ୍ବା ମା ଲକ୍ଷ୍ମୀ ଅଟନ୍ତି । ତାଙ୍କର ସେବାରେ ଅନ୍ୟ ସବୁ ଶକ୍ତିମାନେ ହିଁ ଏଠାରେ ବିରାଜମାନ ହୋଇଛନ୍ତି । ମୁଁ ଆପଣଙ୍କ କୃପାରୁ ହିଁ ଆପଣଙ୍କ ସ୍ୱରୂପର ପରିଚୟ ପାଇଛି । ଦୟାକରି ଆପଣ ମୋତେ ଆଉ ଭ୍ରମରେ ପକାନ୍ତୁ ନାହିଁ ।"

ଏହାଶୁଣି ଦତ୍ତ ଭଗବାନ କହିଲେ—"ଭଲ କଥା, ଏଇ ମନୁଷ୍ୟ ଖପୁରୀରେ ସୁରା ଢାଳି ମାଂସ ରାନ୍ଧ ।" ଏହା ଶୁଣିବା ମାତ୍ରେହିଁ ରାଜା ଭଗବାନଙ୍କର ଆଜ୍ଞା ପାଳନ କଲେ । ଯେତେବେଳେ ମାଂସ ରନ୍ଧା ହେଲା ଭଗବାନ କହିଲେ—"ଏହାକୁ ମୋ ପାଖକୁ ଆଣ । ରାଜା ମାଂସ ନେଇ ଭକ୍ତି ସହକାରେ ଭଗବାନଙ୍କ ନିକଟକୁ ଗଲେ । ରାଜାଙ୍କର ଏପରି ଭକ୍ତି ଦେଖି ଭଗବାନ ଦତ୍ତ ତାଙ୍କ ଉପରେ ସନ୍ତୁଷ୍ଟ ହୋଇଗଲେ ଏବଂ ହସି ହସି କହିଲେ—"ହେ ରାଜା ! ତୁମେ ନିଜର ଧୈର୍ଯ୍ୟ, ନମ୍ରତା, ସଦାଚାର ଏବଂ ଭକ୍ତିରେ ମୋତେ ଜୟ କରି ନେଇଛ । ବର୍ତ୍ତମାନ ତୁମେ ତୁମର ବାଞ୍ଛିତ ବର ମୋଠାରୁ ମାଗିନିଅ । ଆଜି ତୁମେ ଯାହା ମାଗିବ ମୁଁ ତାହା ହିଁ ତୁମକୁ ଦେବି ।"

Digitized by srujanika@gmail.com

ଏହାଶୁଣି ହାତଯୋଡ଼ି ବିନମ୍ରସ୍ୱରରେ ମହାରାଜ ଆୟୁ କହିଲେ—"ପ୍ରଭୁ ! ଯଦି ଆପଣ ପ୍ରକୃତରେ ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ତେବେ ଏପରି ଏକ ପୁତ୍ର ଦିଅନ୍ତୁ ଯାହାକୁ ଦେବତା, ଯକ୍ଷ, ରାକ୍ଷସ, ଗନ୍ଧର୍ବ କେହି ହେଲେ ବି ଜିତି ପାରିବେ ନାହିଁ । ସେ ଇନ୍ଦ୍ରସମ ପରାକ୍ରମୀ, ଶୂର-ବୀର ଏବଂ ଯଶସ୍ୱୀ ହେବ ।"

ଏହାଶୁଣି ଭଗବାନ ଦତ୍ତାତ୍ରେୟ କହିଲେ—"ହେ ରାଜା ! ଏହିପରି ହିଁ ହେବ । ତୁମର ଏକ ନୁହେଁ ପାଞ୍ଚପୁତ୍ର ହେବେ । ସବୁଠାରୁ ବଡ଼ପୁତ୍ର ଭଗବାନଙ୍କର ଅଂଶାବତାର ଏବଂ ତ୍ରିଭୁବନରେ ଅଦ୍ୱିତୀୟ ଶୂରବୀର, ବଳିଷ୍ଠାନ, ତଥା ପ୍ରଭାବଶାଳୀ ହେବ । ତୁମେ ଏଇ ଫଳ ନେଇଯାଇ ନିଜ ପତ୍ନୀଙ୍କୁ ଖାଇବାକୁ ଦେବ । ଠିକ୍ ଦଶମାସ ପରେ ତୁମର ପୁତ୍ରଜାତ ହେବ ।" ଏହା କହି ରାଜାଙ୍କୁ ଫଳ ଦେଇ ଭଗବାନ ଦତ୍ତାତ୍ରେୟ ତତ୍‌କ୍ଷଣାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ମଧ୍ୟ ଫଳ ନେଇ ପ୍ରତିଷ୍ଠାନପୁର ଚାଲିଆସିଲେ ଏବଂ ନିଜ ପତ୍ନୀ ଇନ୍ଦୁମତୀଙ୍କୁ ସେହି ଫଳ ଖାଇବାକୁ ଦେଲେ । ରାଣୀ ଅତ୍ୟନ୍ତ ଶ୍ରଦ୍ଧା ତଥା ଭକ୍ତି ସହିତ ଦତ୍ତ ଭଗବାନଙ୍କର ପ୍ରଦତ୍ତ ସେହି ଫଳ ଖାଇଦେଲେ । ଏହା ଖାଇବା ଦ୍ୱାରା ରାଣୀ ଗର୍ଭବତୀ ହେଲେ । ଗର୍ଭବତୀ ହେବା ପରେ ସେ ପ୍ରତିଦିନ ଦିବ୍ୟ ସ୍ୱପ୍ନସବୁ ଦେଖୁଥିଲେ ଏବଂ ସେ ସବୁ ରାଜାଙ୍କୁ ଶୁଣାଉଥିଲେ । ମହାରାଜ ନିଜର କୁଳ ପୁରୋହିତଙ୍କୁ ତାଙ୍କ ସ୍ୱପ୍ନର ଫଳ ବିଷୟରେ ପଚାରିଲେ । ସ୍ୱପ୍ନ ବୃତ୍ତାନ୍ତ ଶୁଣି ପୁରୋହିତ କହିଲେ—"ରାଜା ! ଦତ୍ତ ଭଗବାନ ଯେଉଁ ଫଳ ଆପଣଙ୍କୁ ଦେଇଥିଲେ, ଆପଣ ତାହା କ'ଣ କଲେ ?"

ରାଜା କହିଲେ—ଭଗବନ୍ ! ମୁଁ ତ ତାହା ମୋର ପତ୍ନୀଙ୍କୁ ଦେଇ ଦେଇଛି । ସେ ତାକୁ ଖାଇ ବି ଦେଇଛନ୍ତି । ତା'ର ପ୍ରଭାବରେ ହିଁ ତ ସେ ଗର୍ଭବତୀ ହୋଇଛନ୍ତି ।"

ଏହାଶୁଣି ପୁରୋହିତ କହିଲେ—"ହେ ରାଜା ! ଏହା ସେହି ଫଳର ପ୍ରଭାବ । ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କ ଘରେ ଏକ ପୁତ୍ରରତ୍ନ ଜାତ ହେବ, ଯେଉଁ ସଂସାରରେ ବିଖ୍ୟାତ ହେବ । ସେ ଭଗବାନଙ୍କର କଳାରୁ ହିଁ ଉତ୍ପନ୍ନ ହେବ । ଦେବତା ଋଷି ମୁନିମାନେ ମଧ୍ୟ ତା'ର ବନ୍ଦନା କରିବେ । ସେ ମନୁଷ୍ୟ ହୋଇ ମଧ୍ୟ ଇନ୍ଦ୍ରାସନ ଲାଭ କରି ଇନ୍ଦ୍ର ହୋଇ ବସିବ ।"

ଏହାଶୁଣି ରାଜା ରାଣୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ଯତ୍ନ ସହକାରେ ଗର୍ଭରକ୍ଷା କରିବାକୁ ଲାଗିଲେ । ଏପଟେ ବିପ୍ରଚଣ୍ଡ ନାମକ ରାକ୍ଷସର ପୁତ୍ର ହୁଣ୍ଡ ନିଜ ଶତ୍ରୁକୁ ରାଣୀ ଇନ୍ଦୁମତୀଙ୍କ ଗର୍ଭରେ ଦେଖି ତାକୁ ମାରିବା ଉଦ୍ଦେଶ୍ୟରେ ଲୁଚି ଛପି ଆସିଲା । ସେ ବେଶ ବଦଳାଇ ଗର୍ଭସ୍ଥ ଶିଶୁକୁ ମାରିଦେବାକୁ ଚାହୁଁଥିଲା ।

Digitized by srujanika@gmail.com

ଦଶମାସ ପୂର୍ଣ୍ଣ ହେବାପରେ ମହାରାଜ ଆୟୁଙ୍କର ସୌଭାଗ୍ୟବତୀ ମହାରାଣୀ ଏକ ପୁତ୍ରରତ୍ନ ଜନ୍ମ ଦେଲେ । ଦୈତ୍ୟରାଜ ହୁଣ୍ଡ ତ ସୁଯୋଗ ଅପେକ୍ଷାରେ ଥିଲା । ରାଣୀଙ୍କ ଧାଈ ଅପରିଷ୍କାର ରହୁଥିଲା, ପବିତ୍ରତା ବିଷୟରେ ତା'ର ଧ୍ୟାନ ମଧ୍ୟ ରହୁ ନଥିଲା । ତେଣୁ ଦୈତ୍ୟ ଏଇ ସୁଯୋଗ ପାଇ ତା'ର ଶରୀରରେ ସହଜରେ ପ୍ରବେଶ କରିଗଲା ଏବଂ ଶିଶୁପୁତ୍ରଟି ଜନ୍ମ ହେବାମାତ୍ରେ ତାକୁ ନେଇ ପଳାଇଗଲା ।

ଏହାଶୁଣି ଶୌନକ ମୁନି କହିଲେ—"ସୂତ ମୁନି ! ଆୟୁ-ପୁତ୍ର ମହାରାଜ ନହୁଷ ତ ବର୍ତ୍ତମାନ ମାତାଙ୍କ ଗର୍ଭରେ ହିଁ ଥିଲେ । ହୁଣ୍ଡ ଦୈତ୍ୟ ସହ ତାଙ୍କର ଶତ୍ରୁତା କେଉଁ କାରଣରୁ ହେଲା ?"

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ସବୁପ୍ରକାରର କଳିଗୋଳର ମୁଖ୍ୟ କାରଣ ବୋହୂ । ବୋହୂ ପାଇଁ ହିଁ ସବୁ ଝଞ୍ଜଟର ସୃଷ୍ଟି । ଯେତେବେଳଯାଏ ବିବାହ ନ ହୋଇଥାଏ, ପିତାମାତା ଏ ବିଷୟରେ ଦୁଃଖ କରୁଥାଆନ୍ତି ଏବଂ ଚିନ୍ତିତ ରହିଥାଆନ୍ତି । କାହା ସହିତ ବିବାହ ହେବ ଭାବି, କୁମାର କୁମାରୀ ମଧ୍ୟ ଚିନ୍ତାଗ୍ରସ୍ତ ଥାଆନ୍ତି । କେଉଁଠି ବିବାହ ପ୍ରସ୍ତାବ କଥାବାର୍ତ୍ତା ଚାଲିଲେ ସେ ବିଷୟ ଶୁଣିବାପାଇଁ ଆଗ୍ରହି ହୁଅନ୍ତି । ସେମାନଙ୍କର ଇଚ୍ଛା ବିରୁଦ୍ଧରେ କେଉଁଠି ସମ୍ବନ୍ଧ ହେଉଥିଲେ କଳି-ଝଗଡ଼ା ଆରମ୍ଭ ହୋଇଥାଏ । ବିବାହ ହେଲା ପରେ ମଧ୍ୟ କଳି-ଝଗଡ଼ା । ମୁନିମାନେ ! ଆପଣମାନେ ଧନ୍ୟ, ଯେ ଏଇ ବିବାହ-ବନ୍ଧନର ଅଡୁଆ ଜାଲରେ ପଡ଼ି ନାହାଁନ୍ତି । ନ ହେଲେ; ଲୁଣ-ତେଲ-କାଠ ଯୋଗାଡ଼ କରୁ କରୁ ହିଁ ଆପଣଙ୍କର ସମସ୍ତ ଚାଲିଯାଆନ୍ତା । ଏପରି କଷ୍ଟିନ୍ତରେ ସହସ୍ର ବର୍ଷ ପର୍ଯ୍ୟନ୍ତ ପୁରାଣ ଶୁଣିପାରି ନଥାନ୍ତେ । ଧନ ତଥା ପ୍ରତିଷ୍ଠାକୁ ମଧ୍ୟ ଲୋକେ କଳିର କାରଣ ବୋଲି କହନ୍ତି । କିନ୍ତୁ ଏହି କାରଣ ତ ଅତ୍ୟନ୍ତ ଗୌଣ । ମୁଖ୍ୟ କାରଣ ତ କଳା କେଶବତୀ କନ୍ୟା । କଥା ହେଲା ଯେ ନହୁଷଙ୍କ ସ୍ତ୍ରୀଙ୍କୁ ଦୈତ୍ୟରାଜ ହୁଣ୍ଡ ବିବାହ କରିବାର ଆଶାପୋଷଣ କରିଥିଲା । କିନ୍ତୁ ସେ ନହୁଷବିନା ଅନ୍ୟକାହାକୁ ପତିବୋଲି ସ୍ୱୀକାର କରିବାକୁ ଚାହୁଁ ନଥିଲା । ସେ ନହୁଷଙ୍କର ଜନ୍ମ ପ୍ରତୀକ୍ଷାରେ ହିଁ ଥିଲା । ତେଣୁ ହୁଣ୍ଡ ନହୁଷଙ୍କର ଜନ୍ମ ହେବା ମାତ୍ରେ ହିଁ ତାଙ୍କୁ ମାରିଦେବା ଉଦ୍ଦେଶ୍ୟରେ ଜଗି ରହିଥିଲା । ତେଣୁ ଜନ୍ମ ହେବା ମାତ୍ରେ ହିଁ ସେ ମାୟାବୀ ରାକ୍ଷସ ନିଜ ମାୟାବଳରେ ସଦ୍ୟୋଜାତ ନହୁଷଙ୍କୁ ଉଠାଇ ନିଜ ପୁରକୁ ନେଇ ଆସିଲା ।"

ଏହାଶୁଣି ଶୌନକ ମୁନି କହିଲେ—"ସୂତ ମୁନି ! ଆପଣ ଗୋଟାଏ ପରେ ଗୋଟାଏ ଅଦ୍ଭୁତ ତଥା କୌତୁହଳପୂର୍ଣ୍ଣ କାହାଣୀ କହୁଛନ୍ତି । ମହାରାଜ ନହୁଷ ମାତାଙ୍କ ଗର୍ଭରେ ଥିଲେ, ତାଙ୍କ ପୂର୍ବରୁ ତାଙ୍କପାଇଁ ବୋହୂ କେଉଁଠୁ ଆସିଲା ?"

Digitized by srujanika@gmail.com

ଏହାଶୁଣି ସୂତ ମୁନି ହସିଦେଲେ ଏବଂ କହିଲେ—"ମହାରାଜ ! ବିଧି ବିଧାନକୁ କେହି ଭଲଭାବରେ ଜାଣି ପାରିବ ନାହିଁ । କେବେ କେବେ ବର ପ୍ରଥମେ ଜନ୍ମ ହୋଇଥାଏ ତ ତା'ପରେ କନ୍ୟା । କେବେ କେବେ କନ୍ୟା ହିଁ ପ୍ରଥମେ ଜନ୍ମ ହୋଇଥାଏ ତ ତା'ପରେ ବର । ଦେଖନ୍ତୁ ରେବତୀ ସତ୍ୟଯୁଗରେ ଜନ୍ମ ହୋଇଥିଲେ ଏବଂ ସ୍ୱାମୀ ବଳଦେବ ଅଠାଇଶ ଗଣ୍ଡା ଯୁଗ ପରେ ଜନ୍ମ ହୋଇଥିଲେ । ଶ୍ରୀକୃଷ୍ଣ ଭଗବାନଙ୍କର ପୁତ୍ର ପ୍ରଦ୍ୟୁମ୍ନ ପଛରେ ଜନ୍ମ ହୋଇଥିଲେ ତାଙ୍କର ପତ୍ନୀ ମାୟାବତୀ ତାଙ୍କର ବହୁତ ପୂର୍ବରୁ ଜନ୍ମ ହୋଇ ଶମ୍ବରାସୁର ପାଖରେ ରହୁଥିଲେ । ସେମିତି ମହାରାଜ ନହୁଷଙ୍କର ଜନ୍ମ ପୂର୍ବରୁ ହିଁ ତାଙ୍କର ପତ୍ନୀ ଅଶୋକସୁନ୍ଦରୀ ଜନ୍ମ ହୋଇଥିଲେ । ତାଙ୍କ ବିଷୟରେ ଅତ୍ୟନ୍ତ ବିଚିତ୍ର ତଥା ମନମୁଗ୍ଧକର କାହାଣୀ ଅଛି । ତାଙ୍କର ଉତ୍ପତ୍ତି ଅଲୌକିକ ଭାବରେ ହୋଇଥିଲା । ସେ ହେଉଛନ୍ତି ମାତା ପାର୍ବତୀଙ୍କର କନ୍ୟା ।"

ଏହାଶୁଣି ଶୌନକ ମୁନି କହିଲେ—"ସୂତ ମୁନି ! ପ୍ରଥମେ ଆପଣ ଆମକୁ ଏହି ଅଦ୍ଭୁତ କଥା କୁହନ୍ତୁ । ଏହା ଶୁଣିସାରିବା ପରେ ମହାରାଜ ନହୁଷଙ୍କ ବିଷୟରେ ଶୁଣିବୁ । ଅଶୋକ ସୁନ୍ଦରୀ ମାତା ପାର୍ବତୀଙ୍କର କନ୍ୟା ହେଲେ କିପରି ? ତାଙ୍କର ଉତ୍ପତ୍ତି କେଉଁଠି ତଥା କି ପ୍ରକାର ହେଲା । କୃପା କରି ଏହା ଆମକୁ ନିଶ୍ଚୟ ଶୁଣାଇବେ । ଏହି ପ୍ରସଙ୍ଗ ଶୁଣିବାପାଇଁ ଆମର ଅତ୍ୟନ୍ତ ଆଗ୍ରହ ହେଉଛି ।"

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ଏ କଥା ଅତ୍ୟନ୍ତ ରସପୂର୍ଣ୍ଣ । ମହାତ୍ମାମାନଙ୍କ ସମ୍ମୁଖରେ ମୋତେ ଏପରି କଥା ଶୁଣାଇବା ନିମନ୍ତେ ସଙ୍କୋଚ ଲାଗୁଛି । ତଥାପି ଆପଣମାନେ ଯେତେବେଳେ ବାଧ୍ୟ କରୁଛନ୍ତି ମୁଁ ନ କହି ରହିପାରୁ ନାହିଁ । ଆପଣମାନେ ସାବଧାନରେ ଶୁଣନ୍ତୁ ।"

ଗୋଟିଏ ସମୟର କଥା ଶୈଳେଶ-ନନ୍ଦିନୀ ଭଗବତୀ ଭବାନୀ ନିଜର ପ୍ରାଣପତି ପଶୁପତି ନାଥ ଭୂତନାଥ ଭଗବାନ ଶଙ୍କରଙ୍କୁ କହିଲେ—"ପ୍ରାଣେଶ୍ୱର ! ସୁନ୍ଦର ସୁନ୍ଦର ବନ-ଉପବନ ସବୁ ଦେଖିବା ନିମନ୍ତେ ମୋର ଇଚ୍ଛା ହେଉଅଛି । ଆପଣ ମୋତେ ଉତ୍ତମରୁ ଉତ୍ତମ ବନସବୁ ଦେଖାନ୍ତୁ ।"

ତ୍ରୈଲୋକନାଥ ତ ସ୍ୱୟଂ ଭ୍ରମଣପ୍ରିୟ । ବନ ଉପବନରେ ବୁଲିବା ଦ୍ୱାରା ତାଙ୍କୁ ଅନେକ ଶାନ୍ତି ମିଳୁଥିଲା ତଥା ଆନନ୍ଦ ଆସୁଥିଲା । ସେ କହିଲେ—"ଭଲ କଥା, ଚାଲ ତୁମକୁ ଦେବତାମାନଙ୍କର କ୍ରୀଡ଼ା କରିବା ଯୋଗ୍ୟ ଉତ୍ତମରୁ ଉତ୍ତମ ବନ ଦେଖେଇ ଦେଉଛି ।"

Digitized by srujanika@gmail.com

ଏହାକହି ଭଗବାନ ଶଙ୍କର ତାଙ୍କର ବୃଷଭ ବାହନକୁ ଡାକଲେ ଏବଂ ତା'ଉପରେ ପାର୍ବତୀଙ୍କ ସହ ବସି କୈଳାସରୁ ସ୍ୱର୍ଗ ଆଡ଼କୁ ବାହାରିଗଲେ । ଦେବତା-ମାନଙ୍କର ବିହାରସ୍ଥଳ, ଯେଉଁ ଚୈତ୍ରରଥ, ବୈଭ୍ରାଜକ, ତଥା ସର୍ବତୋଭଦ୍ର ନାମକ ବନସବୁ, ସେଇଥିରେ ବୁଲୁ ବୁଲୁ ସେମାନେ ଇନ୍ଦ୍ରଙ୍କର ନନ୍ଦନକାନନରେ ପହଞ୍ଚିଗଲେ । ସେହି ବନର ଶୋଭା ଅତ୍ୟନ୍ତ ଅନୁପମ ଥିଲା । ବର୍ଷର ବାରମାସଯାକ ସେଠାରେ ବସନ୍ତ ଋତୁ ରହୁଥିଲା । ସେଠାରେ ଶୀତଳ ସୁଗନ୍ଧିତ ମନ୍ଦ ମଳୟ ସଦାସର୍ବଦା ବହୁଥିଲା । ମାତା ପାର୍ବତୀ ସେଇ ବନର ସୌନ୍ଦର୍ଯ୍ୟ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଦେଖିଲେ— ବଣରେ ମାଧବୀ, ମଲ୍ଲିକା, ମାଲତୀ, ଶ୍ୱେତ ଯୂଥିକା, ସୁବର୍ଣ୍ଣ ଯୂଥିକା ତଥା ଅନ୍ୟାନ୍ୟ ଫୁଲର ଲତା ସବୁ ବିସ୍ତାର ହୋଇରହିଛି, ଅନେକ ପ୍ରକାର ଫୁଲ ସବୁ ସେଠାରେ ବଛେଇ ହୋଇ ଫୁଟିଛି । ଅସଂଖ୍ୟ ପ୍ରକାରର ଦେବବୃକ୍ଷ ସବୁ ବଣର ଶୋଭା ବଢ଼ାଉଛନ୍ତି । ଶାଳ, ତାଳ, ତମାଳ, ପାରିମଳ, ସିନ୍ଧୁବାର, ପ୍ରିୟାଳ, ପଣସ, ଖଜୁରି, ନଡ଼ିଆ ତଥା ଅନ୍ୟାନ୍ୟ ପବିତ୍ର ବୃକ୍ଷରାଜି ସବୁ ସେ ବନର ଶୋଭାକୁ ଦ୍ୱିଗୁଣିତ କରୁଛନ୍ତି । ସ୍ଥାନେ ସ୍ଥାନେ ଅମୃତସମ ଜଳରେ ପରିପୂର୍ଣ୍ଣ ପୁଷ୍କରିଣୀ ସବୁ ରହିଛି, ଯେଉଁଥିରେ ଶ୍ୱେତ, ଲାଲ, ନୀଳ ତଥା ଆହୁରି ଅନେକ ପ୍ରକାରର ରଙ୍ଗବେରଙ୍ଗୀ ପଦ୍ମ ଫୁଲ ଫୁଟି ଅତିସୁନ୍ଦର ଦିଶୁଛି । ହଂସ, ସାରସ୍ୱତ, ତଥା ପାଣିକୁଆ ଆଦି ଅନେକ ପ୍ରକାରର ଜଳଜନ୍ତୁ କ୍ରୀଡ଼ା କରୁଛନ୍ତି । ଦେବ ଦେବ ମହାଦେବ ପାର୍ବତୀଙ୍କ ସହ ବୃକ୍ଷ ସମୂହର ପରିଚୟ କରୁ କରୁ କଳ୍ପବୃକ୍ଷ ନିକଟରେ ପହଞ୍ଚିଲେ । ତା'ର ଅନୁପମ ସୌନ୍ଦର୍ଯ୍ୟ ତଥା ଫୁଲର ଦିବ୍ୟ ସୁଗନ୍ଧରେ ପ୍ରଭାବିତ ହୋଇ ମାତା ପାର୍ବତୀ ପଚାରିଲେ— "ପ୍ରଭୁ ! ଇଏ କେଉଁ ବୃକ୍ଷ ? ଏହାର ନାମ କଅଣ ?"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଏହାର ହିଁ ନାମ ମନ୍ଦ ମୁଗ୍ଧ ଅମାୟିକ ଭାବ । ସବୁ ଜାଣି-ଶୁଣି ମଧ୍ୟ କିଛି ନ ଜାଣିଲାପରି ଅତି ସରଳଭାବରେ କୌତୁହଳୀ ହୋଇ କଳ୍ପବୃକ୍ଷ ସମ୍ବନ୍ଧରେ ପଚାରିବାକୁ ଲାଗିଲେ । ତାଙ୍କର କୌତୁହଳକୁ ଶାନ୍ତ କରାଇବା ନିମନ୍ତେ ଭଗବାନ ସଦାଶିବଙ୍କୁ କହିବାରୁ ସେ କହିଲେ—ପ୍ରିୟେ ! ଏହା କଳ୍ପବୃକ୍ଷ ଅଟେ ! ସ୍ୱର୍ଗରେ ଏହାକୁ ହିଁ ସର୍ବଶ୍ରେଷ୍ଠ ବୃକ୍ଷ ବୋଲି ଗଣନା କରାଯାଏ ।"

"ଏହାର ବିଶେଷତା କ'ଣ, ପ୍ରାଣନାଥ ?" —ଶ୍ରେଷ୍ଠ ଝିଅ ପରି ଜଗଜ୍ଜନନୀ ପ୍ରଶ୍ନ କଲେ ।

ଭଗବାନ ଶଙ୍କର ଉତ୍ତର ଦେଲେ—"ପ୍ରିୟେ ! ଏଇ ବୃକ୍ଷର ତଳେ ବସି ପ୍ରାଣୀ ଯେଉଁ ବିଷୟରେ ସଙ୍କଳ୍ପ କରେ ତାହା ତୁରନ୍ତ ପୂର୍ଣ୍ଣ ହୋଇଥାଏ । ଯେ ଯେଉଁ ବସ୍ତୁକୁ କାମନା କରିଥାଏ, ତାକୁ ସେହି ବସ୍ତୁ ନିଶ୍ଚିତଭାବେ ପ୍ରାପ୍ତ ହୋଇଥାଏ ।"

Digitized by srujanika@gmail.com

ଅନ୍ନପୂର୍ଣ୍ଣା ହୋଇ ମାଆ ଭଗବତୀ କହିଲେ—"ଆଚ୍ଛା, ଏମିତି ହୁଏ ! ଯଦି ମୁଁ କିଛି କାମନା କରିବି ତେବେ ତାହା ପୂର୍ଣ୍ଣ ହେବ ?"

ଆଜି ଭୋଳାନାଥ ମଧ୍ୟ ବାଳକ ହୋଇଯାଇଥିଲେ । ଅବସର ବିନୋଦନ ହେଉଥିଲା ପରା ! ନ ହେଲେ ଯାହାର ଇଚ୍ଛାମାତ୍ରେ ହିଁ ଏଇ ଚରାଚର ବିଶ୍ୱର ସୃଷ୍ଟି ହୋଇଯାଏ ତଥା ଯାହାର ଭ୍ରୂକୁଞ୍ଚନରେ ବିଲୀନ ହୋଇଯାଏ, ତାଙ୍କ ନିକଟରେ କଳ୍ପବୃକ୍ଷର ବା କଣ ମହତ୍ତ୍ୱ ! ଏହି କ୍ଷୟିଷ୍ଣୁ କଳ୍ପବୃକ୍ଷ କି କାମନା ପୂର୍ଣ୍ଣ କରିବ ! କଳ୍ପବୃକ୍ଷ ତ ଗୌରୀ-ଶଙ୍କର ସ୍ୱୟଂ । ତଥାପି କ୍ରୀଡ଼ା କରିବା ହିଁ ତ ତାଙ୍କର ଉଦ୍ଦେଶ୍ୟ ଥିଲା । କୌଣସି ଦୁଷ୍ଟ ଦାନବକୁ ମାରିବାକୁ ହେବ । ତାଙ୍କର ହାସ୍ୟବିନୋଦରେ ମଧ୍ୟ ଲୋକକଲ୍ୟାଣ ନିହିତ । ତେଣୁ ସେ କହିଲେ—"ହଁ ହଁ ଯାହା କିଛି କାମନା କର ଦେଖ ତାହା ପୂର୍ଣ୍ଣ ହେଉଛି କି ନାହିଁ !"

ଆଉ କ'ଣ ଥିଲା ! ପାର୍ବତୀ ତତ୍‌କ୍ଷଣାତ୍ କଳ୍ପବୃକ୍ଷ ତଳେ ବସି ଚିନ୍ତା କରିବାକୁ ଲାଗିଲେ—"ଏକ ଅତ୍ୟନ୍ତ ସୁନ୍ଦରୀ କନ୍ୟା ଏଇ କଳ୍ପବୃକ୍ଷରୁ ଉତ୍ପନ୍ନ ହେଉ ।" ସ୍ତ୍ରୀ ଲୋକମାନଙ୍କ ପାଖରେ ସୁନ୍ଦର ପୁଅ ଝିଅଙ୍କଠାରୁ ବଳି ପ୍ରିୟ ପଦାର୍ଥ ଆଉ କିଛି ନାହିଁ । ଏମାନେ ଯେତେବେଳେ ବି ଇଚ୍ଛା କରିବେ ପ୍ରାୟ ଏହା ହିଁ କାମନା କରିବେ ।

ମାଆ ପାର୍ବତୀଙ୍କର ସଂକଳ୍ପ ମାତ୍ରେ ହିଁ ସେଇ ବୃକ୍ଷରୁ ଏକ ଅତ୍ୟନ୍ତ ସୁନ୍ଦରୀ ଷୋଡ଼ଶୀ ବାଳିକା ବାହାରି ଆସି ଧୀରେ ଧୀରେ ପାର୍ବତୀଙ୍କ ନିକଟକୁ ଅଗ୍ରସର ହେଲା । ତା'ର ରୂପଲାବଣ୍ୟ ଅନୁପମ ଥିଲା । ମାତା ପାର୍ବତୀ ଏଇ ରୂପରାଶି, ସୁନ୍ଦର ତା'ର ସାକାର ମୂର୍ତ୍ତିକୁ ଦେଖି ଆଶ୍ଚର୍ଯ୍ୟ ଚକିତ ଦୃଷ୍ଟିରେ ତା'ଆଡ଼କୁ ଚାହିଁ ରହିଲେ । ଉତ୍ତପ୍ତ ସୁବର୍ଣ୍ଣର ବର୍ଣ୍ଣ ଥିଲା ତା'ର ଦେହର ବର୍ଣ୍ଣ; ତା'ର ଶରୀରରୁ ଫୁଲର ମଧୁର ବାସ୍ନା ଆସୁଥିଲା । ତା'ର ଓଠ, ନଖ, ପାଦତଳ ତଥା କରତଳ କୋମଳ ଓ ଉଦୟ ସୂର୍ଯ୍ୟଙ୍କ ପରି ଲୋହିତ ଥିଲା । କଳକଜ୍ଜ୍ୱଳ କୁଞ୍ଚିତ କେଶରାଶି ମଧ୍ୟରେ ପଦ୍ମଫୁଲ ପରି ତା'ର ସୁନ୍ଦର ମୁହଁ ଅତ୍ୟନ୍ତ ଆକର୍ଷଣୀୟ ଦେଖାଯାଉଥିଲା । ତା'ର କେଶରାଶିରେ ମୋତି ସବୁ ଗୁନ୍ଥାଯାଇ ସବୁଜଘାସ ଉପରେ କାକରବିନ୍ଦୁ ପଡ଼ିଥିବା ପରି ଦେଖାଯାଉଥିଲା । କେଶର-କସ୍ତୁରୀ ମିଶ୍ରିତ ତା'ର ତିଳକ ଅତ୍ୟନ୍ତ ମନୋମୁଗ୍‌ଧକର ଦେଖାଯାଉଥିଲା । ତା'ର ସୁନ୍ଦର ମୁହଁରେ ମନ୍ଦହାସ୍ୟ ଚନ୍ଦ୍ରର ଚନ୍ଦ୍ରିକା ବିଚ୍ଛୁରିତ ହେଲାପରି ଦିଶୁଥିଲା । ତା'ର ଗୋଲାକାର କପାଳରେ ସୁବର୍ଣ୍ଣର କୁଣ୍ଡଳ ଝୁଲୁଥିଲା । ସତେ କି ଆକାଶରେ ବିଦ୍ୟୁତ୍‌ଛଟା ଝଲକି ଯାଉଥିଲା ! ତା'ର ପ୍ରତି ଅଂଶରେ ସୌନ୍ଦର୍ଯ୍ୟର ଦୀପ୍ତି ଝଲକି ଦଶ ଦିଗକୁ ଉଦ୍ଭାସିତ କରୁଥିଲା । ସେ ଧୀର ପଦକ୍ଷେପରେ ହରପାର୍ବତୀଙ୍କ ନିକଟକୁ ଆସୁଥିଲା । ତା'ର

Digitized by srujanika@gmail.com

ପଶ୍ଚାତ୍‌ଭାଗରେ ଅନେକ ଦେବକନ୍ୟା ତାଙ୍କୁ ଅନୁସରଣ କରୁଥିବାର ଦେଖି ପାର୍ବତୀ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଭଗବାନ ଶିବଙ୍କୁ କହିଲେ—"ପ୍ରାଣବଲ୍ଲଭ ! ଆପଣ ଏଇ କଳ୍ପବୃକ୍ଷର ଯେପରି ମାହାତ୍ମ୍ୟ ବଖାଣିଥିଲେ ସେହିପରି ହିଁ ହେଲା । ଦେଖନ୍ତୁ, ମୁଁ ଏକ ଅତ୍ୟନ୍ତ ସୁନ୍ଦରୀ କନ୍ୟାର ସଙ୍କଳ୍ପ କରିଥିଲି, ତେଣୁ କିପରି ସୁନ୍ଦର କନ୍ୟା ସୃଷ୍ଟି ହୋଇଗଲା । ଏ ତ ସତେ ଯେମିତି ସୌନ୍ଦର୍ଯ୍ୟ ମାଧୁର୍ଯ୍ୟର ସାକ୍ଷାତ ସଜୀବ ପ୍ରତିମା । ସଂସାରରେ ସେହି ପୁରୁଷ ଧନ୍ୟ ହେବ, ଯେ ଏପରି କନ୍ୟାର ପାଣି ଗ୍ରହଣ କରି ଏହାକୁ ପତ୍ନୀରୂପେ ଗ୍ରହଣ କରିବ ।"

ପାର୍ବତୀ ଏହା କହୁଥିବା ସମୟରେ ସେହି କନ୍ୟା ସଲ୍ଲଜ ଭାବରେ ଆସି ଶିବ-ପାର୍ବତୀଙ୍କର ପାଦପଦ୍ମରେ ପ୍ରଣାମ କଲା ତଥା ହାତଯୋଡ଼ି ବିନୀତ ଭାବରେ କୋକିଳା କଣ୍ଠରେ ଧୀରେ ଧୀରେ କହିଲା—"ମାତା ! ମୋତେ କେଉଁ କାର୍ଯ୍ୟ ନିମନ୍ତେ ସୃଷ୍ଟି କଲେ ? ମୋ ପାଇଁ କ'ଣ ଆଦେଶ ଅଛି ?"

ଏହାଶୁଣି ପାର୍ବତୀ ହସି ହସି କହିଲେ—"ପ୍ରିୟେ ! ମୁଁ କୌଣସି ବିଶେଷ କାରଣରୁ ତୋର ସୃଷ୍ଟି କରି ନାହିଁ । ଏମିତି କୌତୂହଳୀ ହୋଇ କଳ୍ପବୃକ୍ଷର ମାହାତ୍ମ୍ୟ ଜାଣିବା ନିମିତ୍ତ ମୁଁ ତୋତେ ମୋର ସଙ୍କଳ୍ପରୁ ସୃଷ୍ଟି କରିଛି ।"

ଏହାଶୁଣି ସେହି ସୁନ୍ଦରୀ କନ୍ୟା କହିଲା—"ତେବେ ମାତା ! ବର୍ତ୍ତମାନ ମୁଁ କ'ଣ କରିବି ? ଆପଣଙ୍କର ତ ଏହା କ୍ରୀଡ଼ା ମାତ୍ର ହେଲା । ବର୍ତ୍ତମାନ ମୁଁ ମୋର ଜୀବନ କିପରି ବିତାଇବି ? କାହାକୁ ମୋର ମାତା-ପିତା ବୋଲି ପରିଚୟ ଦେବି ? କେଉଁଠି ରହିବି ଆଉ··· ··· ··· ·· "

ମାତା ପାର୍ବତୀ ସ୍ନେହ ସହିତ କହିଲେ—"ପ୍ରିୟେ ! ମାତା ପିତା ଆଉ କାହାକୁ କରିବୁ ? ମୁଁ ତୋ'ର ମାତା ଏବଂ ପ୍ରଭୁ ଶଙ୍କର ତୋର ପିତା, ଷଡ଼ାନନ କାର୍ତ୍ତିକେୟ ଏବଂ ଗଣେଶ ତୋର ଭାଇ । ଆଜିଠାରୁ ତୁ ଆମର କନ୍ୟା ହେଲୁ । ତୁ ଏହି ନନ୍ଦନ-କାନନରେ ବିଚରଣ କର । ଏ ସମସ୍ତେ ତୋର ସଖୀ ସହଚରୀ ।"

ସଲ୍ଲଜ ଭାବରେ ସେଇ କନ୍ୟା କହିଲା—"ତାହାହେଲେ ମୋତେ କୌଣସି ନାମରେ ଡାକନ୍ତୁ । କେତେବେଳଯାଏ ମୁଁ ଏହିପରି ଏଠାରେ ବିଚରଣ କରିବି ? କେତେବେଳଯାଏ ମୋତେ ଏଠାରେ ରହିବାପାଇଁ ପଡ଼ିବ ?"

ମାତା ପାର୍ବତୀ କହିଲେ—"ପ୍ରିୟେ ! ମୁଁ ତୋର ମନକଥା ବୁଝିଗଲି । କିନ୍ତୁ ତୋତେ ହଜାରେ ବର୍ଷ ପର୍ଯ୍ୟନ୍ତ ପତି ମିଳିବେ ନାହିଁ । ପ୍ରତିଷ୍ଠାନପୁରର ମହାରାଜଙ୍କ

Digitized by srujanika@gmail.com

ପୁତ୍ର ଅଛନ୍ତି । ତାଙ୍କର ନହୁଷ ନାମକ ଧର୍ମାତ୍ମା ରାଜର୍ଷି ପୁତ୍ର ହେବ । ତା'ର ସାଥିରେ ତୋର ବିବାହ ହେବ । ସେ ତୋତେ ପତ୍ନୀ-ରୂପରେ ଗ୍ରହଣ କରିବେ । ତୁ ତପସ୍ୟା କରି ତୋ ଜୀବନକୁ ସଦାଚାରମୟ କରି ନହୁଷ ଜନ୍ମ ପାଇଁ ଅପେକ୍ଷା କରି ରହ । ତୋ' ମୁହଁରେ ଚିନ୍ତା ତଥା ଶୋକର ଚିହ୍ନ ବିନ୍ଦୁ ନାହିଁ । ତୁ ସଦାସର୍ବଦା ହସ ହସ ମୁହଁରେ ରହୁଛୁ । ତେଣୁ ତୋ ନାମ ଆଜିଠାରୁ ରହିଲା 'ଅଶୋକ-ସୁନ୍ଦରୀ' । ତୁ ଏହି ଉପବନରେ ନିଜ ସଖୀ ସହଚରୀଙ୍କ ସହ ରହ ।" ଏତିକି କହି ପାର୍ବତୀ ତାହାକୁ ଆଶୀର୍ବାଦ ଦେଇ ମହାଦେବଙ୍କ ସହ ବୃଷଭ ଉପରେ ବିରାଜମାନ ହୋଇ କୈଳାସ ପୁରକୁ ଚାଲିଗଲେ ।"

ଅଶୋକସୁନ୍ଦରୀ ନିଜ ସଖୀଙ୍କ ଗହଣରେ ସେହି ଉପବନରେ ଦିନ କଟାଇବାକୁ ଲାଗିଲା । ଯେତେବେଳେ ସେ ସଖୀମାନଙ୍କ ଗହଣରେ ନନ୍ଦନବନରେ ବୁଲୁଥିଲା, ଲାଗୁଥିଲା ସତେଯେପରି ସେ ହିଁ ଏଇ ବଣର ଅଧିଷ୍ଠାତ୍ରୀ ଦେବୀ । ସେ ହାତରେ ପଦ୍ମଫୁଲ ଧରି ଚାଲିଯାଉଥିଲା ବେଳେ ସାକ୍ଷାତ ଲକ୍ଷ୍ମୀଙ୍କ ପରି ଦେଖାଯାଉଥିଲା । ଦେବତାମାନେ ତାକୁ ଲକ୍ଷ୍ମୀ ମନେ କରି ପ୍ରଣାମ ମଧ୍ୟ କରି ପକାଉଥିଲେ । କେବେ କେବେ ଶଚୀଦେବୀ ବନବିହାର ପାଇଁ ଆସୁଥିବା ବେଳେ ତା'ର ସୌନ୍ଦର୍ଯ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇ ରହିଯାଉଥିଲେ ।

କାମଦେବଙ୍କ ପତ୍ନୀ ରତି ତାକୁ ଈର୍ଷା କରିବାକୁ ଲାଗିଲେ । ସେ ଭାବୁଥିଲେ—"କୌଣସି ପ୍ରକାରେ ଏ ଏଠାରୁ ଚାଲିଗଲେ ଭଲ, ତା'ହେଲେ ଏଠାରେ ମୋର ହିଁ ପ୍ରାଧାନ୍ୟ ରହିବ । ମୋତେ ନ ହେଲେ ଏହାର ସୌନ୍ଦର୍ଯ୍ୟ ଆଗରେ କିଏ କାହିଁକି ପଚାରିବ ?

ଦିନେ ବିପ୍ରଚିତ୍ତି ଦୈତ୍ୟର ପୁତ୍ର ହୁଣ୍ଡ ବୁଲି ବୁଲି ଆସି ନନ୍ଦନବନରେ ପହଞ୍ଚିଲା । ସେ ସମୟରେ ତା'ର ପ୍ରଭାବ ଅନେକ ବିସ୍ତାର ଲାଭ କରିଥିଲା । ଇନ୍ଦ୍ର, ପ୍ରଭୃତି ସବୁ ଦେବତା ତା'ର ନାମ ଶୁଣି ଶୁଣି ଥରହର ହେଉଥିଲେ । ସ୍ୱର୍ଗରେ ସେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲା । ତା'ଭୟରେ କେହି ପାଟି ଫିଟାଉ ନଥିଲେ । ସ୍ୱର୍ଗର ସମସ୍ତ ଅପ୍ସରାଗଣ ତା'ର ସେବା କରୁଥିଲେ । ସବୁଠାରେ ତା'ର ପ୍ରାଧାନ୍ୟ ଥିଲା । ନନ୍ଦନବନକୁ ଆସି ପ୍ରଥମେ ତା'ର ଦୃଷ୍ଟି ପଡ଼ିଗଲା ଅଶୋକ ସୁନ୍ଦରୀ ଉପରେ । ସେ ଏପରି ଏକ ପରମ ସୁନ୍ଦରୀକୁ ଦେଖି ଆଶ୍ଚର୍ଯ୍ୟଚକିତ ହୋଇ ରହିଗଲା । ଏହା ପୂର୍ବରୁ ସେ ସ୍ୱର୍ଗରେ ଏପରି ସୁନ୍ଦର ସ୍ତ୍ରୀ କେବେ ବି ଦେଖି ନଥିଲା । ଉର୍ବଶୀ, ରମ୍ଭା, ତିଲୋତ୍ତମା, ମେନକା ତଥା ଅନ୍ୟାନ୍ୟ ଯେତେ ସ୍ୱର୍ଗର ଶ୍ରେଷ୍ଠ ଅପ୍ସରା ଥିଲେ ସେମାନେ ସମସ୍ତେ ଏହା ପାଖରେ କିଛି ନଥିଲେ । ପ୍ରଥମେ ତ ସେ ଭାବିଲା, 'ମା ଲକ୍ଷ୍ମୀ

Digitized by srujanika@gmail.com

ବୋଧେ ବନବହାର କରୁଛନ୍ତି’ । ପୁଣି ତା’ର ସନ୍ଦେହ ହେଲା ଯେ ମା’ ଲକ୍ଷ୍ମୀ ନାରାୟଣଙ୍କ ଗୃହ ଏକାକିନୀ ତ କେବେ ଆସିବେନି ! ବୋଧହୁଏ ଇନ୍ଦ୍ରଙ୍କର ପତ୍ନୀ ଶଚୀ । କିନ୍ତୁ ଶଚୀ ତ ଏତେ ସୁନ୍ଦରୀ ନୁହଁନ୍ତି । ତାଙ୍କୁ ତ ମୁଁ ଅନେକ ଥର ଦେଖିଛି ସେ ତ ଆମ ଦୈତ୍ୟବଂଶର କନ୍ୟା । ଏ ଅନ୍ୟ କେହି, ଏହାଭାବି ସେ ସେହି ସୁନ୍ଦରୀ ନିକଟକୁ ଯାଇ କହିଲା—“ଦେବି ! ତୁମେ କିଏ ? କାହାର ପତ୍ନୀ ? ଏଠାରେ ନନ୍ଦନବନରେ ଏପରି ଏକାକୀ କାହିଁକି ବୁଲୁଛ ?”

ଅଶୋକସୁନ୍ଦରୀ କହିଲା—“ଦାନବେନ୍ଦ୍ର ! ମୁଁ ଭଗବତୀ ପାର୍ବତୀଙ୍କର କନ୍ୟା ।”

ଦୈତ୍ୟରାଜ ହୁଣ୍ଡ କହିଲା—“ମାତା ପାର୍ବତୀଙ୍କର ତ କେହି କନ୍ୟା ନାହାଁନ୍ତି । ତୁମେ ତାଙ୍କର କନ୍ୟା କିପରି ହେଲ ?”

ଏହାଶୁଣି ଅଶୋକସୁନ୍ଦରୀ କହିଲା—“ଦୈତ୍ୟେନ୍ଦ୍ର ! ମୋତେ ମାତା କଳ୍ପବୃକ୍ଷରୁ ସଂକଳ୍ପ ଦ୍ୱାରା ଉତ୍ପନ୍ନ କରିଛନ୍ତି । ପ୍ରଭୁ ମହାଦେବଙ୍କ ସମ୍ମୁଖରେ ହିଁ ସେ ମୋତେ ନିଜର କନ୍ୟା ବୋଲି ସ୍ୱୀକାର କରିଛନ୍ତି । ମୋତେ ସୃଷ୍ଟି କରିବା ପରେ ଏଇଠି ରହିବାପାଇଁ ସେ ମୋତେ ନିର୍ଦ୍ଦେଶ ଦେଇଛନ୍ତି ।”

ଦୈତ୍ୟରାଜ ହୁଣ୍ଡ ଏହାଶୁଣି ଅତ୍ୟନ୍ତ ଆନନ୍ଦିତ ହେଲା । ସେ କହିଲା—“ହଁ ଠିକ୍ ତ ହୋଇଛି । ମାତା ପାର୍ବତୀଙ୍କର ସନ୍ତାନ ହିଁ ସମସ୍ତେ । ଆଚ୍ଛା, ମୁଁ ଗୋଟେ କଥା କହିବି ତୁମେ ମାନିବ ତ ?”

ଅଶୋକସୁନ୍ଦରୀ କହିଲା—“କଣ କଥା ଶୁଣିବା ପୂର୍ବରୁ ମୁଁ କିପରି କହିବି ଯେ ମୁଁ ତାହା ମାନିଯିବି । ପ୍ରଥମେ ଆପଣ କହନ୍ତୁ କି କଥା, ତା’ପରେ ମୁଁ ତାହା ମୋର ମାନିବା ଯୋଗ୍ୟ କି ନୁହେଁ ବିଚାର କରି କହିବି ।”

ହୁଣ୍ଡ କହିଲା—“ଦେବି ! ମୁଁ ଦୈତ୍ୟରାଜ ବିପ୍ରଚିତ୍ତିଙ୍କ ପୁତ୍ର ହୁଣ୍ଡ । ତିନି-ଲୋକରେ ମୋର ଶକ୍ତି ଏବଂ ପରାକ୍ରମର ଖ୍ୟାତି ଅଛି । ଇନ୍ଦ୍ର ମୋର ନାମ ଶୁଣି ଶୁଣି ଥରୁଛନ୍ତି । ତୁମେ ମୋ ସହ ବିବାହ କର ।”

ଏହାଶୁଣି ଅଶୋକ ସୁନ୍ଦରୀ କ୍ରୋଧରେ ଆଖି ଲାଲବର୍ଣ୍ଣ ଧାରଣ କଲା । ସେ କ୍ରୋଧାନ୍ୱିତ ହୋଇ କହିଲା—“ଦୁଷ୍ଟ, ମାତା ପାର୍ବତୀଙ୍କର କନ୍ୟାକୁ ବିବାହ ହେବା-ପାଇଁ ଇଚ୍ଛା ହୋଇଗଲା ଯା, ଦର୍ପଣରେ ଯାଇ ମୁହଁ ଦେଖ୍ । ଏଇ ମୁହଁ ନେଇ ତୁ ବିବାହ କରିବାକୁ ଆସିଗଲୁ । ସାବଧାନ ! ପୁଣି ଏମିତି କଥା କହିଲୁ ତ ଆଦୌ ଭଲ ହେବନି ।”

Digitized by srujanika@gmail.com

ବିନୟପୂର୍ଣ୍ଣ ସ୍ୱରରେ ହୁଣ୍ଡ କହିଲା—"ତୁମେ ତ ଅସନ୍ତୁଷ୍ଟ ହୋଇଗଲ । ବିବାହ ତ ତୁମକୁ କରିବାକୁ ହିଁ ପଡ଼ିବ । ପୁଣି ବର୍ତ୍ତମାନ ସଂସାରରେ ମୋ ଠାରୁ ଉତ୍ତମ ବର ଆଉ କିଏ ଅଛି ? ମୁଁ ତୁମକୁ ମୋର ଅନ୍ତରର ରାଣୀ କରି ରଖିବି । ମୋର ସମସ୍ତ ପତ୍ନୀମାନଙ୍କ ମଧ୍ୟରେ ତୁମକୁ ଶ୍ରେଷ୍ଠ କରି ରଖିବି, ତୁମର ଦାସ ହୋଇ ତୁମର ପ୍ରତ୍ୟେକ ଇଚ୍ଛା ପୂର୍ଣ୍ଣ କରିବି । ଆଉ କଣ ଚାହଁ ?"

ଅଶୋକ ସୁନ୍ଦରୀ କହିଲା—"ବିବାହ ତ ଅଲଗା କଥା, ମୁଁ ତୋ ମୁହଁରେ ଛେପ ବି ପକାଇବି ନାହିଁ । ତୁ ସିଧା ସିଧା ତୋ ନିଜ ଘରକୁ ଚାଲିଯା । ମୋର ବିବାହ ମୋ ମାତା ପ୍ରଥମରୁ ହିଁ ସ୍ଥିର କରି ସାରିଛନ୍ତି ।"

ହୁଣ୍ଡ କହିଲା—"ଅଚ୍ଛା ! ତାହାହେଲେ ଶୁଣେ ମୁଁ, କିଏ କାହା ସାଥିରେ ତୁମର ବିବାହ ସ୍ଥିର ହୋଇଛି ? କିଏ ସେହି ଭାଗ୍ୟବାନ ବ୍ୟକ୍ତି ?"

ଅଶୋକ ସୁନ୍ଦରୀ କହିଲା—"ମୋର ବିବାହ ଚକ୍ରବର୍ତ୍ତୀ ମହାରାଜ ଆୟୁଙ୍କର ପୁତ୍ର ରାଜର୍ଷି ନହୁଷଙ୍କ ସାଥିରେ ହେବ ।"

ଆଶ୍ଚର୍ଯ୍ୟ ହୋଇ ହୁଣ୍ଡ କହିଲା—"ମୁଁ ଏକଙ୍କର ପୁତ୍ର ଆୟୁଙ୍କୁ ଭଲଭାବେ ଜାଣେ । ତାଙ୍କର ତ କୌଣସି ପୁତ୍ର ନାହିଁ ।"

ଅଶୋକସୁନ୍ଦରୀ କହିଲା—"ହଁ ତାଙ୍କର କୌଣସି ପୁତ୍ର ନାହିଁ । କିନ୍ତୁ କିଛି ଦିନପରେ ତାଙ୍କର ପୁତ୍ର ହେବ, ତା'ର ସାଥିରେ ମୋର ବିବାହ ହେବ ।"

ଏହାଶୁଣି ଦୈତ୍ୟରାଜ ହୁଣ୍ଡ ବହୁତ ଜୋରରେ ହସିଲା—ବାଃ ବଢ଼ିଆ କଥା ତ ! ବର ଏବେ ଜନ୍ମ ବି ହୋଇନି, ଆଉ କନ୍ୟା ମାଆ ହେବାପାଇଁ ଯୋଗ୍ୟ ହୋଇ ସାରିଲାଣି ! କିଏ ଜାଣିଛି କେତେ ସହସ୍ର ବର୍ଷ ପରେ ମହାରାଜ ଆୟୁଙ୍କର ପୁତ୍ର ହେବ ! ହେବ କି ନାହିଁ ତା ବି ଠିକ୍ ନାହିଁ । ଆଉ ସେତେବେଳକୁ ତୁମେ ତ ବୁଢ଼ୀ ହୋଇଯାଇଥିବ । ତେଣୁ ଯୌବନସୁଖରୁ ତୁମେ ଚିରଦିନ ପାଇଁ ବଞ୍ଚିତ ହେବ । ପ୍ରାଣୀମାନଙ୍କର ଆୟୁଷ ଚଞ୍ଚଳ, କ୍ଷଣ ଭଙ୍ଗୁର, ସେଥିରେ ପୁଣି ଯୌବନ ଅତ୍ୟନ୍ତ କ୍ଷଣସ୍ଥାୟୀ । ମୁଁ ଉପଦେଶ ଦେଉଛି ତୁମର ଏହି ଅମୂଲ୍ୟ ଅବସ୍ଥା ବ୍ୟର୍ଥ ନ ହେଉ । ଦେବି ! ଯେ କୋଳରେ ଅଛି ତାକୁ ନ ଉଠାଇ ପେଟ ଭିତରର ଚିନ୍ତା କାହିଁକି କରୁଛ ? ସମ୍ମୁଖରେ ଥିବା ପ୍ରତ୍ୟକ୍ଷକୁ ଛାଡ଼ି ବ୍ୟର୍ଥ ଆଶାକୁ ଭରସା କରି ଜୀବନକୁ ଏପରି ସଙ୍କଟରେ କାହିଁକି ରଖୁଛ ? ଆଗରେ ଥିବା ଗଙ୍ଗାଜଳକୁ ଛାଡ଼ି ମରୀଚିକା ପଛରେ କାହିଁକି ଦୌଡ଼ୁଛ ? କାଳ୍ପନିକ ନହୁଷର ଆଶା ଛାଡ଼ିଦିଅ । ମୁଁ ତୁମର ଦାସ, ତୁମ ସମ୍ମୁଖରେ ଉପସ୍ଥିତ ହୋଇଛି । ତୁମର ଏହି କାଳ୍ପନିକ ପୁତ୍ର

Digitized by srujanika@gmail.com

କଥା ଯିଏ ବି ଶୁଣିବ ସେ ହସିବ । ମନେକର ହଜାରେ—ପାଞ୍ଚଶହ ବର୍ଷ ପରେ ମହାରାଜ ଆୟୁଙ୍କର ପୁତ୍ର ହେଲ, ତୁମେ ତାହାର ପତ୍ନୀ ହେବ ନା ଆଈ ହେବ ? ତେଣୁ ମୋ କଥା ମାନି ଏହି ପାଗଳାମି ଛାଡ଼ିଦିଅ । ମୋ ସହିତ ବିବାହ କରି ସଂସାରର ସମସ୍ତ ସୁଖକୁ ଉପଭୋଗ କର ଏବଂ ନିଜ ଯୁବାବସ୍ଥାକୁ ସାର୍ଥକ କର ।”

ଅଶୋକ ସୁନ୍ଦରୀ ଏହାଶୁଣି ଅତ୍ୟନ୍ତ କୃଦ୍ଧା ହୋଇ କହିଲ—“ଦୈତ୍ୟରାଜ ! ମୁଁ ତୁମକୁ ଭଲରେ କହୁଛି ତୁମେ ଏଠାରୁ ଚାଲିଯାଅ । ମୁଁ ତୁମର ଶ୍ରଦ୍ଧାହୀନ କାମବାସନା ପୂର୍ଣ୍ଣ ଏ ପ୍ରକାର କଥା ଶୁଣିବାପାଇଁ ଆଦୌ ପ୍ରସ୍ତୁତ ନୁହେଁ । ଏହାପରେ ଯଦି ପାଟି ଫିଟାଅ, ତେବେ ଭଲ ହେବ ନାହିଁ ।”

ହୁଣ୍ଡ କହିଲା—“ଦେବି ! ମୁଁ ତୁମକୁ ନିବେଦନ କରୁଛି, ତ୍ରୈଲୋକ୍ୟବିଜୟୀ ହୁଣ୍ଡ ତୁମର ଦାସ ମାତ୍ର, ତୁମ ପ୍ରେମର ଭିକ୍ଷା ମାଗୁଛି । ମହାରାଜ ଆୟୁଙ୍କର ରାଣୀ କେବେ ଗର୍ଭବତୀ ହେବେ, କେବେ ତାଙ୍କର ପୁତ୍ର ହେବ, ପୁତ୍ର ଜନ୍ମ ହେଉ ହେଉ ତ ସେ ବିବାହ କରିବ ନାହିଁ ? ବାଳକ ହେବ, କୁମାର ହେବ, କିଶୋର ହେବ ତା ପରେ ଯାଇ ଯୁବାବସ୍ଥାରେ ସେ ପଦାର୍ପଣ କରିବ । ସେତେବେଳକୁ ତୁମର ଯୁବାବସ୍ଥା ସମାପ୍ତ ହୋଇ ଯାଇଥିବ । ଯୁବାବସ୍ଥା ହିଁ ତ ଜୀବନ । ବିଶେଷ କରି ନାରୀମାନଙ୍କର ଏ ଯୁବାବସ୍ଥା ହିଁ ଉତ୍କୃଷ୍ଟ । ତୁମେ ଜିଦ୍ କର ନାହିଁ । ମୋତେ ନିଜର ସହଚର ବୋଲି ସ୍ୱୀକାର କରି ମୋତେ କୃତାର୍ଥ କର ।”

ଅଶୋକ ସୁନ୍ଦରୀ କହିଲ—“ଦୈତ୍ୟରାଜ ! ତୁମକୁ ଲାଜ ଲାଗିବା ଉଚିତ । କାମରୂପୀ ପାଗଳା ହାତୀ ତୁମକୁ ହଲେଇ ଦେଇ ସାରିଲାଣି । ସେଇଥିପାଇଁ ତୁମେ ଏ ପ୍ରକାର ବାତୁଳ ହେଉଛ । ଆରେ ଦୁଷ୍ଟ, ଯାହା କପାଳରେ ବିଧାତା ଲେଖି ଦେଇଛନ୍ତି । ଯେଉଁ ସଂଯୋଗକୁ ଜଗନ୍ମାତା ମାତା ପାର୍ବତୀ ସ୍ୱୟଂ ତାଙ୍କ ଶ୍ରୀମୁଖରୁ କହିଛନ୍ତି, ଏହି ସକଳବିଶ୍ୱ ଚରାଚରର ସ୍ୱାମୀ ଶଙ୍କର ଯାହାର ସମର୍ଥନ କରିଛନ୍ତି ତାକୁ ଅନ୍ୟଥା କରିବାର ସାମର୍ଥ୍ୟ କାହାର ଅଛି ? ତୁମେ ଏଠାରୁ ପଳାଇ ଯାଅ । ନ ହେଲେ ମୁଁ ତୋତେ ଅଭିଶାପ ଦେବି ।”

ସୂତ ମୁନି କହୁଛନ୍ତି—“ମୁନିମାନେ ! ସତୀ ସ୍ତ୍ରୀ ସମ୍ମୁଖରେ ଜିଦ କରିବା ପାଇଁ କାହାର ସାମର୍ଥ୍ୟ ଅଛି ? ହୁଣ୍ଡ ମୁହଁ ପୋଡ଼ି ଚାଲିଗଲା, କିନ୍ତୁ ସେ ଅଶୋକ କୁମାରୀକୁ ପାଇବାର ଆଶା ଛାଡ଼ି ନଥିଲା । ମହାରାଜ ! ଯାହା ମନରେ ଯେଉଁ କଥା ଗଣ୍ଠି ହୋଇ ରହିଯାଏ ସେ ତାହା ପାଇବା ନିମିତ୍ତ ପ୍ରାଣପଣେ ଚେଷ୍ଟା କରେ । ହୁଣ୍ଡ ଯେତେବେଳେ ଦେଖିଲା ତା'ର ମନୋରଥ ଏପରି ପୂର୍ଣ୍ଣ ହୋଇ ପାରିଲା ନାହିଁ, ସେଠୁ ସେ ମାୟାର ଆଶ୍ରୟ ନେଲା ।”

Digitized by srujanika@gmail.com

ଏପଟେ ଅଶୋକ ସୁନ୍ଦରୀ ତପସ୍ୟା କରି ନିଜ ସ୍ୱାମୀଙ୍କର ଜନ୍ମ ପାଇଁ ପ୍ରତୀକ୍ଷା କରି ରହିଲା । ଦିନେ ସେ ଦେଖିଲା, ଗୋଟିଏ ସୁନ୍ଦରୀ ସ୍ତ୍ରୀ ତା' ନିକଟରେ ଆସି କାନ୍ଦିବାକୁ ଲାଗିଲା । ସେ ଦୟା ପରବଶ ହୋଇ କହିଲା—"ଭଉଣୀ ! ତୁମେ କାହିଁକି କାନ୍ଦୁଛ ?"

ସେ ସ୍ତ୍ରୀ ଉତ୍ତର ଦେଲା—"ମୋର ପତିକୁ ଦୁଷ୍ଟ ଦୈତ୍ୟ ହୁଣ୍ଡ ମାରି ଦେଇଛି, ମୁଁ ସେଇ ଦୁଃଖରେ ବୁଲୁଛି ।"

ଅଶୋକ ସୁନ୍ଦରୀ କହିଲା—"ଭଉଣୀ ! ହୁଣ୍ଡ ତ ଭୀଷଣ କାମୀ । ସେ ଦୁଷ୍ଟ ମୋ ନିକଟକୁ ମଧ୍ୟ ଆସିଥିଲା । ହଉ, କିଛି କଥା ନାହିଁ । ତୁମେ ପଛକଥା ସବୁ ଭୁଲିଯାଇ ଏଇଠି ମୋ ପାଖରେ ରହି ତପସ୍ୟା କର ।" ଏହାଶୁଣି ସେଇ ସ୍ତ୍ରୀ ଅଶୋକ ସୁନ୍ଦରୀ ନିକଟରେ ରହିଲା ନାହିଁ; କିନ୍ତୁ ଦିନରେ ଅନେକଥର ତା' ନିକଟକୁ ଆସୁଥିଲା ।"

ଦିନେ ସେ କହିଲା—"ଦେବି ! ତୁମେ କେବେ ଦିନେ ମୋ ଘରକୁ ଚାଲ, ବହୁତ ଭଲ ହେବ ।"

ଅଶୋକ ସୁନ୍ଦରୀ କହିଲା—"ଭଉଣୀ ! ତୁମ ଘର କେଉଁଠାରେ ?"

ସେ କହିଲା—"ଏହି ଗଙ୍ଗା ତଟରେ ହିଁ ମୋ ଘର । ତୁମେ ସେଇ ଘରକୁ ନିଜ ପାଦଧୂଳି ପକାଇ ପବିତ୍ର କର ।"

ଅଶୋକ ସୁନ୍ଦରୀ କହିଲା—"ଭଉଣୀ ! ତୁମେ କିପରି କଥା କହୁଛ ? ତୁମ ଘରେ ଯିଏ ମୋ ଘର ବି ତ ସିଏ । ଗଙ୍ଗାତୀରରେ ଥିବାରୁ ତାହା ତୀର୍ଥ ଅଟେ । ମୁଁ ତାଲି ନିଶ୍ଚୟ ତୁମ ସାଥୀରେ ଯିବି । ଗଙ୍ଗାସ୍ନାନ ବି ହେବ, ତୁମ ଘର ମଧ୍ୟ ଦେଖି ନେବି ।" ଏହାଶୁଣି ସେଇ ସ୍ତ୍ରୀଟି ବହୁତ ଖୁସି ହୋଇଗଲା ।

ତା' ପରଦିନ ଅଶୋକ ସୁନ୍ଦରୀକୁ ନେଇ ସେଇ ସ୍ତ୍ରୀ ଗଲା । ସେ ତାକୁ ଗଙ୍ଗାତୀରକୁ ନ ନେଇ ସୁମେରୁ-ଶିଖରରେ ଥିବା ବୈଦୁର୍ଯ୍ୟ ନାମକ ପର୍ବତ ଉପରକୁ ନେଇଗଲା । ସେଠାରେ ସୁବର୍ଣ୍ଣ ଭବନଗୁଡ଼ିକ ସ୍ୱର୍ଗଠୁ ମଧ୍ୟ ଅଧିକ ଆକର୍ଷଣୀୟ କରିଥିଲା । ସେ ଜାଗାର ଶୋଭାକୁ ଦେଖି ଅଶୋକ ସୁନ୍ଦରୀ କହିଲା—"ଭଉଣୀ ! ଇଏ ତ ଅତି ସୁନ୍ଦର ଜାଗା । ଏହା କାହାର ରାଜ୍ୟ ? ତୁମେ ତ କହିଥିଲ ଗଙ୍ଗାତୀରରେ ତୁମର ଘର । ଏ ତ ସୁମେରୁର ସୁନ୍ଦର ଶିଖର । ତୁମେ ମୋତେ କାହା ଘରକୁ ନେଇ ଆସିଲ ?"

Digitized by srujanika@gmail.com

ସେଇ ସ୍ତ୍ରୀଟି କହିଲା—"ଦେବ ! ଏହା ଦୈତ୍ୟରାଜ ହୁଣ୍ଡର ଘର । ମୁଁ ଛଳନା କରି ତୁମକୁ ଏଠାକୁ ନେଇ ଆସିଛି । ମୁଁ ସ୍ତ୍ରୀ ନୁହେଁ । ମାୟାରେ ମୁଁ ସ୍ତ୍ରୀ ରୂପ ହୋଇଥିଲି । ମୁଁ ବିପ୍ରଚଣ୍ଡି ଦୈତ୍ୟରାଜଙ୍କର ପୁତ୍ର ହୁଣ୍ଡ ।" ଏହା କହି ସେ ନିଜର ମାୟା ଦ୍ୱାରା ସୃଷ୍ଟ ସ୍ତ୍ରୀ ବେଶ ଛାଡ଼ି ଦୈତ୍ୟବେଶ ହୋଇଗଲା । ହୁଣ୍ଡକୁ ଦେଖି ଅଶୋକ କୁମାରୀଙ୍କର ଭୀଷଣ କ୍ରୋଧ ହେଲା । ସେ କହିଲା—"ଅରେ ଦୁଷ୍ଟ ! ତୁ ନିଜର ମୃତ୍ୟୁପାଇଁ ହିଁ ମୋତେ ଛଳନା କରି ଏଠାକୁ ଆଣିଛୁ । ତୁ ମୋତେ ଜାଣି ନାହୁଁ ଯେ ସାକ୍ଷାତ ନିଜ ମୃତ୍ୟୁକୁ ତୋ ନିଜ ଘରକୁ ଧରି ଚାଲି ଆସିଛୁ ।"

ସୁସଜ୍ଜିତ ସୁବର୍ଣ୍ଣ ସିଂହାସନ ଉପରେ ଅଶୋକ ସୁନ୍ଦରୀଙ୍କୁ ବସାଇ, ହାତ ଯୋଡ଼ି, ବିନମ୍ରଭାବରେ ହୁଣ୍ଡ କହିଲା—"ତୁମେ ମୋ ଉପରେ ଦୟାକର । ମୁଁ କାମବାଣରେ ଦଗ୍ଧ ହୋଇଅଛି । ତୁମ ବିନା ଜୀବିତ ରହିପାରିବି ନାହିଁ । ତୁମର କଳ୍ପିତ ନହୁଷକୁ ତୁମେ ଭୁଲିଯାଇ ମୋତେ ସ୍ୱୀକାର କର ।"

ଅଶୋକ ସୁନ୍ଦରୀ କହିଲା—"ତୋ ପରି କାମୁକ କୁକୁରକୁ ମୁଁ ଆଖି ଉଠାଇ ଦେଖି ବି ପାରିବି ନାହିଁ । ସ୍ତ୍ରୀକୁ କେହି ତା'ର ଇଚ୍ଛା ବିରୁଦ୍ଧରେ ନିଜର ବଶ କରି ପାରିବ ନାହିଁ । ମୁଁ ତୋତେ ଅଭିଶାପ ଦେଉଛି ମୋର ସ୍ୱାମୀ ମହାରାଜ ନହୁଷ ଜନ୍ମ ହୋଇ ତୋତେ ନିଶ୍ଚୟ ବଧ କରିବେ । ଏବଯାଏ ମୋର ତପସ୍ୟା ପତି-ପ୍ରାପ୍ତି ନିମନ୍ତେ ଉଦ୍ଦିଷ୍ଟ ଥିଲା । କିନ୍ତୁ ବର୍ତ୍ତମାନଠାରୁ ତୋ'ର ବିନାଶ ଉଦ୍ଦେଶ୍ୟରେ ତାହା ଲାଗିବ ।"

ଏହିପରି ଶାପଦେଇ ସେହି ସଙ୍ଗ-କନ୍ୟା ତତ୍‌କ୍ଷଣାତ୍ ସେଠାରୁ ଚାଲିଗଲା । ତା'ର ତେଜ ଦେଖି ହୁଣ୍ଡ ଏପରି ହତବାକ୍ ହୋଇଗଲା ଯେ ତାକୁ ବାଧା ମଧ୍ୟ ଦେଇପାରିଲା ନାହିଁ । ଗଙ୍ଗା ତୀରରେ ଯାଇ ସେ ତପସ୍ୟାରେ ନିମଗ୍ନ ହୋଇଗଲା ।

ଏହା ଦେଖି ହୁଣ୍ଡର କାମନା-ନିଶା ଏକାଥରେ ଛାଡ଼ିଗଲା । ନେବା ଜାଗାରେ ଦେବାକୁ ପଡ଼ିଗଲା । କେଉଁଠି ଜୀବନକୁ ସୁଖମୟ କରିବା ପାଇଁ ସେ ଅଶୋକ ସୁନ୍ଦରୀଙ୍କୁ ଆଣିଥିଲା ଅଥଚ ଜୀବନକୁ ହିଁ ଏଥିରେ ଆହୁତି ଦେବାକୁ ପଡ଼ିଲା । ବର୍ତ୍ତମାନ ନିଜ ପ୍ରାଣରକ୍ଷା କରିବା ଚିନ୍ତା ତା' ମନରେ ଉଦୟ ହେବାକୁ ଲାଗିଲା । ସେ ଭାବିଲା— ଅଶୋକ ସୁନ୍ଦରୀ ମୋର ମୃତ୍ୟୁ ମହାରାଜ ଆୟୁଙ୍କ ପୁତ୍ର ନହୁଷ ହାତରେ ହେବ ବୋଲି ଅଭିଶାପ ଦେଇଛି । ବର୍ତ୍ତମାନ ଯାଏଁ ତ ଆୟୁଙ୍କର ପୁତ୍ର ହିଁ ହୋଇ ନାହିଁ । ଶୁଣିବାକୁ ପାଉଛି ଯେ ଆୟୁଙ୍କର ରାଣୀ ଇନ୍ଦୁମତୀ ଗର୍ଭବତୀ ହୋଇଛନ୍ତି । ତାଙ୍କର ଗର୍ଭରେ ଏବେ ନହୁଷ ଥିବ । ମୁଁ ଏପରି ଉପାୟ କରିବି ଯେପରି ସେ ଗର୍ଭ ହିଁ ନଷ୍ଟ ହୋଇଯିବ । ଯଦି ଗର୍ଭରେ ସେ ନଷ୍ଟ ହୋଇ ନ ପାରିଲା ତେବେ ଜନ୍ମ ହେଉ ହେଉ ହିଁ ତାକୁ

Digitized by srujanika@gmail.com

ମାରି ଦେବ ।" ଏହା ଭାବି ସେ ଇନ୍ଦୁମତୀଙ୍କ ଗର୍ଭ ନଷ୍ଟ କରିବା ଉଦ୍ଦେଶ୍ୟରେ ଛକି ରହିଲା । ଇନ୍ଦୁମତୀ ଏତେ ପବିତ୍ର ଭାବରେ ରହୁଥିଲେ ଯେ ଦୈତ୍ୟର ତାଙ୍କ ପାଖରେ ପ୍ରବେଶ କରିବା ସମ୍ଭବ ହେଲା ନାହିଁ । ତେଣୁ ଯେତେବେଳେ ମହାରାଜ ଆୟୁଙ୍କର ପତ୍ନୀ ପୁତ୍ର ଜନ୍ମ କଲେ, ଏକ ଅପବିତ୍ର ଧାଈ ଶରୀରରେ ପ୍ରବେଶ କରି ହୁଣ୍ଡ ସୂତିକା ଘର ଭିତରେ ପ୍ରବେଶ କଲା ଏବଂ ଶିଶୁଟିକୁ ଜୀବିତାବସ୍ଥାରେ ନିଜ ଘରକୁ ନେଇ ଆସିଲା ।"

ଏହାଶୁଣି ଶୌନକ ମୁନି ପଚାରିଲେ—"ହଁ, ସୂତ ମୁନି ! ଏଇ କଥାକୁ ଆପଣ ଆମକୁ ବିସ୍ତାର କରି କୁହନ୍ତୁ । ସେଇ ରାକ୍ଷସ ସେ ଶିଶୁକୁ ନେଇ କ'ଣ କଲା ? ସେ ତ ତାକୁ ଜୀବନରେ ହିଁ ମାରି ଦେଇଥିବ ? ପୁଣି ଅଶୋକ ସୁନ୍ଦରୀର ବିବାହ କିପରି କାହା ସାଥିରେ ହେଲା ?"

ସୂତ ମୁନି କହିଲେ—"ମହାରାଜ ! ଯାହାର ଆୟୁଷ ଥାଏ, ତାକୁ କିଏ ମାରି ପାରିବ ? ଯାହାର ଯାହା ସହିତ ସମ୍ବନ୍ଧ ହେବା ନିଶ୍ଚିତ ଥାଏ ତାକୁ ଅନ୍ୟଥା କରିବାର ଶକ୍ତି କାହାର ଅଛି ? ନହୁଷ ଦୈତ୍ୟ ହାତରେ ପଡ଼ି ମଧ୍ୟ ସୌଭାଗ୍ୟବଶତଃ ବଞ୍ଚିଗଲେ । ଆପଣମାନେ ଧୈର୍ଯ୍ୟଧରି ଶୁଣନ୍ତୁ । ମୁଁ ଆପଣଙ୍କୁ ସମ୍ପୂର୍ଣ୍ଣ କାହାଣୀ କହୁଛି ।"

ଶୌନକ ମୁନି କହିଲେ—"ହଁ ସୂତ ମୁନି ! ଏହା ତ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଘଟଣା ।"

ସୂତ ମୁନି ଆରମ୍ଭ କଲେ—"ହଉ ତେବେ ଶୁଣ ! ସୂତିକା ଗୃହରୁ କୁମାର ନହୁଷଙ୍କୁ ଚୋରେଇ ନେଇ ହୁଣ୍ଡ ତାଙ୍କୁ ନିଜ ସ୍ତ୍ରୀ ବିପୁଳାକୁ ଦେଇଦେଲା ଏବଂ କହିଲା—"ପ୍ରିୟେ, ଏହାକୁ ମାରି ପାଚକକୁ ଦେବ । ଆଜି ମୁଁ ଏହାର ମାଂସ ଖାଇବି ।"

ଏହାଶୁଣି ବିପୁଳା କହିଲା—"ପ୍ରାଣନାଥ ! ଆପଣଙ୍କ ଦୟା ବି ଆସୁ ନାହିଁ । କେଡ଼େ ସୁନ୍ଦର ଏହି ସରଳ ବାଳକ ! ଦେଖିଲେ ମନେହେଉଛି ସତେ ଯେପରି ଆଜି ହିଁ ତା'ର ଜନ୍ମ ହୋଇଛି । ଆପଣ କାହିଁକି ଏପରି ନିନ୍ଦିତ, ଲୋକଗର୍ହିତ କ୍ରୁର କର୍ମ କରିବା ପାଇଁ କହୁଛନ୍ତି ? ଏଇ ନିରପରାଧ ସରଳମତି ଶିଶୁର ପ୍ରାଣନେବା ପାଇଁ କାହିଁକି ଇଚ୍ଛା କରୁଛନ୍ତି ?"

ହୁଣ୍ଡ କହିଲା—"ପ୍ରିୟେ ! ଇଏ ମୋର ଶତ୍ରୁ । ଅଶୋକ ସୁନ୍ଦରୀ ମୋତେ ଅଭିଶାପ ଦେଇଛି, ମୋର ମୃତ୍ୟୁ ଏହାର ହାତରେ ହିଁ ହେବ । ତେଣୁ ମଧ୍ୟ ମୁଁ

Digitized by srujanika@gmail.com

ଏହି ଭବିଷ୍ୟବାଣୀ ଶୁଣିଥିଲି; ଶତ୍ରୁକୁ ଦୟା ଦେଖାଇବା ଉଚିତ ନୁହେଁ । ତେଣୁ ଏହାକୁ ତୁମେ ଆଜ ହିଁ ମାରି ରାନ୍ଧି ଦିଅ । ତା'ର ମାଂସ ଖାଇବା ପରେ ମୁଁ ନିଶ୍ଚିନ୍ତ ହେବି ।"

ଏହାଶୁଣି ତା'ର ପତ୍ନୀ ବିପୁଳା କହିଲା—"ଯଦି ଏପରି କଥା, ତେବେ ଏହାକୁ ନିଶ୍ଚିତ ରୂପେ ମାରିଦେବା ଉଚିତ । ମୁଁ ବର୍ତ୍ତମାନ ହିଁ ଏହାର ମାଂସ ରାନ୍ଧିଆଣି ଆପଣଙ୍କୁ ଭୋଜନ ପରିଷୁଛି ।" ଏହା କହି ବିପୁଳା ଭୋଜନଶାଳାକୁ ଗଲା ଏବଂ ମେକଳା ବୋଲି ଏକ ପାଚିକାକୁ ଡାକି କହିଲା—"ମେକଳା ! ତୁ ଏହି ଶିଶୁକୁ ସଙ୍ଗେ ସଙ୍ଗେ ନେଇଯା । ତାକୁ ମାରି ତା'ର ମାଂସକୁ ଟିକି ଟିକି କରି ସେଥିରେ ବହୁତ ସୁଗନ୍ଧିତ ମସଲା ଦେଇ ବର୍ତ୍ତମାନ ହିଁ ରାନ୍ଧି ସ୍ୱାମୀଙ୍କୁ ଭୋଜନ କରିବାକୁ ଦିଅ । ଦେଖ୍ ଟିକେ ବି ଭୁଲ ହେବନି ଯେପରି !"

ମେକଳା ପାଚିକା ଉପରେ ବିପୁଳାର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ସେ ତା'ର ପ୍ରତ୍ୟେକ ଆଜ୍ଞାକୁ ଯଥାରୀତି ପାଳନ କରୁଥିଲା । ତା'ଉପରେ ବିଶ୍ୱାସ ଥିଲା ବୋଲି ବିପୁଳା ତାକୁ ଶିଶୁକୁ ଦେଇଆସିଲା । ମେକଳା ମଧ୍ୟ ସ୍ୱୀକାରୋକ୍ତି କରି ଶିଶୁଟିକୁ ଭୋଜନଶାଳାକୁ ନେଇଆସିଲା ।"

ମେକଳା ପାକକର୍ତ୍ତା ସୁଦକୁ କହିଲା—"ଦେଖ ରାଜାଙ୍କର ଆଦେଶ; ଏଇ ବାଳକର ମାଂସକୁ ସ୍ୱାଦିଷ୍ଟ ବ୍ୟଞ୍ଜନ କରି ଦାନବେନ୍ଦ୍ରଙ୍କର ରାତ୍ରିଭୋଜନ ନିମନ୍ତେ ଦେବ । ବର୍ତ୍ତମାନ ଏହାକୁ ତୁମେ ବଧକର ।

ଏହାଶୁଣି ସୁଦ ତୀକ୍ଷ୍ଣ ଖଣ୍ଡାନେଇ ଶିଶୁକୁ ବଧ କରିବା ପାଇଁ ଉଦ୍ୟତ ହେଲା । କିନ୍ତୁ ଏହି ବାଳକର ରକ୍ଷା ତ ଦତ୍ତାତ୍ରେୟଙ୍କର ତେଜ କରୁଥିଲା । ଖଣ୍ଡାକୁ ଦେଖି ଶିଶୁଟି ହସିବାକୁ ଲାଗିଲା । ବାଳକର ହସ ଦେଖି ମେକଳାର ମାତୃ ହୃଦୟରେ ଦୟା ଜାତ ହେଲା । ସେ ସୁଦକୁ କହିଲା—"ସୁଦ ! ଦେଖ କେତେ ସରଳ ଏଇ ବାଳକ । ଏହାର ଲକ୍ଷଣରୁ ଜଣାପଡୁଛି ଯେ ଏ କେଉଁ ରାଜଚକ୍ରବର୍ତ୍ତୀଙ୍କ ପୁତ୍ର । ଏଇ ଦୁଷ୍ଟ ଦାନବ କେଉଁଠୁ କେଜାଣି ଏ ଶିଶୁଟିକୁ ଉଠାଇ ଆଣିଛି । ଏ ତ ନିର୍ଦ୍ଦୟୀ ଦୟାମାୟାହୀନ ନିଷ୍ଠୁର ଅସୁର । ଏଇ ସରଳ ଶିଶୁ ଭଲା ତା'ର କଣ ଅପକାର କରି ପାରିବ ? ସେ ଫୁଲ ପରି ଏଇ ଶିଶୁଟିକୁ ମାରିବା ପାଇଁ ସେ କହୁଛି । ତୁମେ ଏହାକୁ ମାର ନାହିଁ, ଏଇ ଅବୋଧ ବାଳକ ପ୍ରତି ଦୟାକର ।"

ପାକକର୍ତ୍ତା କହିଲା—"ଦେବି ! ତୁମେ ସତ୍ୟକଥା କହୁଛ । ସମସ୍ତ ଶୁଭ ଲକ୍ଷଣଯୁକ୍ତ ଏହି ବାଳକ ସର୍ବଥା ଅବଧ୍ୟ । ତୁମେ ଏହାକୁ ଶୀଘ୍ର ବାହାରକୁ ନେଇ

Digitized by srujanika@gmail.com

କେଉଁଠି ରଖିଦେଇ ଆସ । ଏପରି ସ୍ଥାନରେ ରଖିବ ଯେଉଁଠି କୃପାଳୁ ପୁରୁଷ ରହୁଥିବେ । ମୁଁ ଗୋଟିଏ ଶ୍ୱେତ ହରିଣକୁ କାଟି ସେଇ ମାଂସ ରାକ୍ଷସରାଜଙ୍କ ପାଇଁ ରାନ୍ଧି ଦେଉଛି ।”

ଦୟାପରବଶ ହୋଇ ମେକଳା ତା’ କଥା ମାନିନେଲା । ଭାଗ୍ୟବଶତଃ ତା’ ମନରେ ପିଲାଟି ପ୍ରତି ମମତା ହୋଇଥିଲା । ତେଣୁ ସେ ସଙ୍ଗେ ସଙ୍ଗେ ସେଇ ଶିଶୁଟିକୁ ନେଇ ଉତ୍ତରଗଲା ଏବଂ ଭଗବାନ ବଶିଷ୍ଠଙ୍କର ଆଶ୍ରମ ନିକଟରେ ରଖି ଫେରିଆସିଲା । ଏପଟେ ପାକକର୍ତ୍ତା ହରିଣ ଛୁଆର ମାଂସ ରାନ୍ଧି ସେଥିରେ ଅନେକ ପ୍ରକାର ସ୍ୱାଦିଷ୍ଟ ସୁଗନ୍ଧିତ ମସଲା ସବୁ ଦେଇ ଦୈତ୍ୟରାଜ ଦୁଷ୍ଟର ଥାଳରେ ରଖି ଆସିଲା । ଦୁଷ୍ଟ ଅତି ଆନନ୍ଦରେ ସେଗୁଡ଼ିକ ଗଳାଧଃକରଣ କଲା । ଖାଇସାରିବା ପରେ ହସି ହସି କହିଲା—“ମୁଁ ମୋର ନିଜ ପୁରୁଷାର୍ଥ ବଳରେ ଅଶୋକ ସୁନ୍ଦରୀର ଅଭିଶାପକୁ ଅନ୍ୟଥା କରି ଦେଲି । ସ୍ୱର୍ଗ ଦେବତାମାନଙ୍କର ବଚନକୁ ମଧ୍ୟ ମୁଁ ମିଥ୍ୟା ସିଦ୍ଧ କରି ଦେଲି ।” ସେ ମନେ ମନେ ଅତ୍ୟନ୍ତ ସନ୍ତୋଷ ଲାଭକଲା ।

ଏପଟେ ଭଗବାନ ବଶିଷ୍ଠ ପ୍ରାତଃକାଳରେ ଉଠି ସ୍ନାନ ନିମନ୍ତେ ଯିବାବେଳେ ଆଶ୍ରମ ନିକଟରେ ପଡ଼ିଥିବା ସେଇ ସୁନ୍ଦର ଶିଶୁକୁ ଦେଖିଲେ । ସେଇ ସୁନ୍ଦର ସଦ୍ୟଜାତ ପୁତ୍ରକୁ ଦେଖି ମୁନି ପରମ ବିସ୍ମିତ ହେଲେ । ସେ ସାଙ୍ଗେ ସାଙ୍ଗେ ଅନ୍ୟାନ୍ୟ ଋଷି-ମାନଙ୍କୁ ଡାକଲେ । ସମସ୍ତେ ସେହି ବାଳକର ଅଲୌକିକ ରୂପ ଅନୁପମ ତେଜ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ଭଗବାନ ବଶିଷ୍ଠ ନିଜ ଦିବ୍ୟଜ୍ଞାନରେ ସବୁକଥା ଜାଣିପାରିଲେ । ତାଙ୍କୁ ଏହା ମଧ୍ୟ ଜଣା ପଡ଼ିଗଲା ଯେ ଶିଶୁଟିକୁ ପ୍ରସୂତି ଗୃହରୁ ଦୁଷ୍ଟ ଉଠାଇ ନେଇଆସିଛି । କିନ୍ତୁ ତା’ର ଆୟୁଷ ଥିବା ଯୋଗୁ ସେ ବଞ୍ଚିଯାଇଛି । ଏ ଦୈତ୍ୟରାଜ ଦୁଷ୍ଟକୁ ନିଶ୍ଚୟ ବଧ କରିବ । ମୋତେ ବର୍ତ୍ତମାନ ହିଁ ଏହାର ରକ୍ଷା କରିବା ପାଇଁ ପଡ଼ିବ । ଯଦି ଦୁଷ୍ଟକୁ ଏ କଥା ଜଣାପଡ଼ିବ ଯେ ଶତ୍ରୁ ମରିନାହିଁ ଜୀବିତ ଅଛି ତେବେ ସେ ପ୍ରତ୍ୟହ ମାରିବାପାଇଁ କିଛି ନା କିଛି ଉପାୟ ବାହାର କରିବ । ଏହିସବୁ କଥା ଚିନ୍ତାକରି ଭଗବାନ ବଶିଷ୍ଠ ଶ୍ରଦ୍ଧା ସହିତ ଦୁଇ ହାତରେ ଶିଶୁକୁ ଉଠାଇ ନେଇ ଆଶ୍ରମକୁ ନେଇ ଆସିଲେ ଏବଂ ଅତ୍ୟନ୍ତ ସ୍ନେହରେ ପୁତ୍ର ପରି ତା’ର ଲାଳନପାଳନ କଲେ ।

କ୍ରମେ କ୍ରମେ ଆଶ୍ରମରେ ରହି ସେ ବାଳକ ଶୁକ୍ଳପକ୍ଷର ଚନ୍ଦ୍ରମା ପରି ବଢ଼ିବାରେ ଲାଗିଲା । ମୁନି କହିଲେ—“ଏ ବାଳକ ଜନ୍ମ ନେବାମାତ୍ରେ ଦୂଷିତ ହେଲାନାହିଁ ତେଣୁ ଏହାର ନାମ ସଂସାରରେ ନିର୍ଦ୍ଦୋଷ ହିଁ ହେବ । ସେହି ଦିନଠାରୁ

Digitized by srujanika@gmail.com

ଆଶ୍ରମବାସୀ ତାଙ୍କୁ ନହୁଷ ନାମରେ ଡାକିବାକୁ ଲାଗିଲେ । ମୁନି ବଶିଷ୍ଠ ବାଳକର ସମସ୍ତ କ୍ଷତ୍ରିୟୋଚିତ କର୍ମ କରାଇଲେ । ଉପଯୁକ୍ତ ଅବସ୍ଥା ଆସିବାରୁ ମୁନି ତାଙ୍କୁ ସମସ୍ତ ଧନୁର୍ବେଦ ସଙ୍ଗେ ସଙ୍ଗେ ଅସ୍ତ୍ରଶସ୍ତ୍ରର ଶିକ୍ଷା ମଧ୍ୟ ଉତ୍ତମ ଭାବରେ ଶିଖାଇଲେ । କିଛି ଦିନ ମଧ୍ୟରେ କୁମାର ନହୁଷ ସବୁଥିରେ ଧୁରନ୍ଧର ହୋଇଗଲା । ଗୁରୁ ବଶିଷ୍ଠଙ୍କ କୃପାରୁ ସେ ସଂସାରରେ ଅଦ୍ୱିତୀୟ ହୋଇଗଲା ।"

ଏଣେ ଇନ୍ଦୁମତୀଙ୍କ ସୂତିକାଗୃହରୁ ବାଳକ ଅଦୃଶ୍ୟ ହୋଇ ଯିବାଠାରୁ ରାଜା-ରାଣୀ ଅତ୍ୟନ୍ତ ଉଦାସୀନ ହୋଇପଡ଼ିଲେ । ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେ ଅଗ୍ରନକଭାବେ ପ୍ରସୂତିଗୃହରୁ ଶିଶୁଙ୍କୁ ଉଠାଇ ନେଲା କିଏ ? ଅନେକ ଖୋଜା ଖୋଜି ପରେ ମଧ୍ୟ ତା'ର ଖବର କିଛି ମିଳିଲା ନାହିଁ । କାନ୍ଦି କାନ୍ଦି ରାଣୀଙ୍କର ଆଖି ଫୁଲିଗଲା । ଏହି ସମୟରେ ବୀଣା ବଜାଇ ବଜାଇ ହରିନାମ ଧରି ନାରଦ ମୁନି ଆୟୁଙ୍କ ନିକଟରେ ପହଞ୍ଚିଲେ । ଦେବର୍ଷିଙ୍କୁ ଦେଖି ମହାରାଜ ତାଙ୍କର ସ୍ୱାଗତ ସତ୍କାର କଲେ । ଉଭୟଙ୍କ ତରଫରୁ କୁଶଳ ପ୍ରଶ୍ନ ଶେଷ ହେବା ପରେ ନାରଦ ମୁନି ପଚାରିଲେ—"ହେ ରାଜା ! ତୁମେ ଉଦାସ କାହିଁକି ଦେଖାଯାଉଛ ? ମୋତେ ନିଜ ଦୁଃଖର କାରଣ କହି ବୁଝ ।" ରାଜା ହାତଯୋଡ଼ି କହିଲେ—"ଭଗବାନ ! ଯେ ଜାଣି ନଥାଏ ତାଙ୍କୁ ସିନା ଦୁଃଖ କ'ଣ କୁହାଯାଏ । ଆପଣ ତ ସର୍ବଜ୍ଞ, ତ୍ରିକାଳଦର୍ଶୀ କଥା ଆପଣ ସବୁ ଜାଣନ୍ତି । ଆପଣଙ୍କୁ ମୁଁ କ'ଣ ବା କହିବି ! କିନ୍ତୁ ଯେହେତୁ ଆପଣ ଆଦେଶ କରୁଛନ୍ତି ମୁଁ କହୁଛି । ଭଗବାନ ଦତ୍ତାତ୍ରେୟଙ୍କ କୃପାରୁ ମୋର ଗୋଟିଏ ପୁତ୍ର ହେଲା; କିନ୍ତୁ କେଜାଣି କିଏ ତାଙ୍କୁ ପ୍ରସୂତି ଗୃହରୁ ଉଠେଇ ନେଇଗଲା । ଭଗବନ୍ ! ଅନେକ ତପସ୍ୟା କରିବା ପରେ ତ ମୁଁ ସେଇ ପୁତ୍ରକୁ ପାଇଥିଲି । ସେଇ ପୁତ୍ରକୁ ହରେଇବା ଫଳରେ ମୋର ଆନ୍ତରିକ କଷ୍ଟ ହେଉଛି । ମୋ ଦୁଃଖ ତ ସହ୍ୟ କିନ୍ତୁ ତା' ମାତାଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । କାନ୍ଦି କାନ୍ଦି ସେ ଅନ୍ଧୁଣୀ ହୋଇ ଗଲେଣି !"

ନାରଦ ମୁନି କହିଲେ—"ହେ ରାଜା ! ଆପଣ ଆପଣଙ୍କ ପୁତ୍ର ନିମନ୍ତେ ଚିନ୍ତା କରନ୍ତୁ ନାହିଁ । ସେ ସୁରକ୍ଷିତ ଅବସ୍ଥାରେ ଅଛି । ଦତ୍ତ ଭଗବାନଙ୍କର କୃପାରୁ ଜନ୍ମ ହୋଇଥିବା ପୁତ୍ରର ଅନିଷ୍ଟ ସଂସାରରେ କିଏ କରି ପାରିବ ? ସେ ସର୍ବଗୁଣ ସମ୍ପନ୍ନ ଅଦ୍ୱିତୀୟ ସୁନ୍ଦର ହୋଇ ନିଜ ଶତ୍ରୁକୁ ବଧକରି ପରମସୁନ୍ଦରୀ ସ୍ତ୍ରୀକୁ ବିବାହ କରି ଖୁବ୍ ଶୀଘ୍ର ହିଁ ତୁମର ଦର୍ଶନ କରିବ ।"

ଏହାଶୁଣି ରାଜା ପଚାରିଲେ—"ଭଗବନ୍ ! ମୋର ପୁତ୍ର କେଉଁଠି ଅଛି ? ଥରେ ଯାଇ ମୁଁ ତାଙ୍କୁ ଦେଖି ଆସନ୍ତି !"

Digitized by srujanika@gmail.com

ମୁନି କହିଲେ—"ଦେଖ, ଏପରି ଧୈର୍ଯ୍ୟହରା ହେଲେ କିଛି ଲାଭ ହେବନାହିଁ । ବର୍ତ୍ତମାନ ତୁମେ ତାଙ୍କୁ ଦେଖିବାର ଇଚ୍ଛା ପରିତ୍ୟାଗ କର । ଅଳ୍ପ ଦିନ ଭିତରେ ହିଁ ସେ ଏକା ନୁହଁ ସୁନ୍ଦରୀ ପତ୍ନୀକୁ ସଙ୍ଗରେ ନେଇ ତୁମ ନିକଟକୁ ସେ ଫେରି ଆସିବ ।" ଏତିକି କହି ନାରଦ ମୁନି ସେଠାରୁ ସାଙ୍ଗେ ସାଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲେ । ନାରଦ ମୁନିଙ୍କର କଥା ଶୁଣି ରାଜା-ରାଣୀଙ୍କର ଧୈର୍ଯ୍ୟ ଫେରିଆସିଲା । ସେମାନେ ଅତ୍ୟନ୍ତ ଉତ୍ସୁକତାର ସହିତ ପୁତ୍ରର ପ୍ରତ୍ୟାବର୍ତ୍ତନକୁ ପ୍ରତୀକ୍ଷା କରି ରହିଲେ ।

ଏପଟେ କୁମାର ନହୁଷ ବଶିଷ୍ଠ ମୁନିଙ୍କ ଆଶ୍ରମରେ ରହି ଋଷି ମୁନିଙ୍କର ସ୍ନେହ ମମତାରେ ଶୁକ୍ଳ ପକ୍ଷର ଚନ୍ଦ୍ରମା ପରି ବଢ଼ିବାରେ ଲାଗିଲେ । ଦେଖୁ ଦେଖୁ ସେ ଅତ୍ୟନ୍ତ ସୁନ୍ଦର, ତେଜସ୍ୱୀ, ଏବଂ ପ୍ରଭାବଶାଳୀ ମନେ ହେଉଥିଲେ । ଭଗବାନ ବଶିଷ୍ଠଙ୍କ ଠାରୁ ସେ ସମ୍ପୂର୍ଣ୍ଣ ଧନୁର୍ବେଦ ତଥା ବିଧିପୂର୍ବକ ସମସ୍ତ ଦିବ୍ୟ ଅସ୍ତ୍ରର ଉପସଂହାର ସହିତ ପ୍ରୟୋଗ ମଧ୍ୟ ଶିଖିଗଲେ । ସେ ଋଷିମାନଙ୍କ ମୁହଁରୁ ଶୁଣିଥିଲେ ଯେ ହୁଣ୍ଡ ଦୈତ୍ୟ ତାଙ୍କର ଶତ୍ରୁ । ସେ ହିଁ ତାଙ୍କୁ ଚୋରି କରି ଆଣିଥିଲା । ତେଣୁ ହୁଣ୍ଡକୁ ମାରିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା । ଦେବତାମାନେ ତ ଏହା ହିଁ ଚାହୁଁଥିଲେ । କୌଣସି ପ୍ରକାରେ ହୁଣ୍ଡ ମରିଯାଉ । ସେମାନଙ୍କର ହିଁ ଏହା ଷଡ଼ଯନ୍ତ୍ର ଥିଲା । ସେମାନେ ଜାଣିଥିଲେ, ଦୈତ୍ୟ ତ ସେମାନଙ୍କ ଦ୍ୱାରା ମରିବା ସମ୍ଭବ ନୁହଁ । ଆୟୁପୁତ୍ର ନହୁଷ ହିଁ ଏହାକୁ ମାରିବେ । ତେଣୁ ସେମାନେ ଅନେକ ଉପାୟରେ ନହୁଷର ରକ୍ଷା କରିବାକୁ ଲାଗିଲେ, ତାଙ୍କୁ ଅନେକ ପ୍ରକାରର ଅସ୍ତ୍ର-ଶସ୍ତ୍ର ମଧ୍ୟ ଶିକ୍ଷା ଦେଲେ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ସଂସାରରେ କେତେ ପ୍ରକାରର ବିଚିତ୍ରତା ଦେଖାଯାଏ । ସମସ୍ତଙ୍କର ମନକଥା ଅଲଗା ଅଲଗା । ଦେବତାମାନେ ହୁଣ୍ଡକୁ ମାରିବାପାଇଁ ଚାହୁଁଥିଲେ । ବଶିଷ୍ଠ ନିଜ ଶିଷ୍ୟର ଅଭ୍ୟୁଦୟ ହେବା କଥା ଭାବୁଥିଲେ । ମହାରାଜ ଆୟୁ ନିଜ ପୁତ୍ରର ଫେରିବାବାଟକୁ ବ୍ୟାକୁଳ ହୋଇ ଚାହିଁ ରହିଥିଲେ, ତାଙ୍କ ପତ୍ନୀ ନିଜ ପୁତ୍ରର ମଙ୍ଗଳ କାମନା କରୁଥିଲେ, ନହୁଷ ହୁଣ୍ଡ ଦୈତ୍ୟଙ୍କୁ ମାରି ଅଶୋକ ସୁନ୍ଦରୀକୁ ବିବାହ କରିବା କଥା ଭାବୁଥିଲେ, ଏବଂ ହୁଣ୍ଡ ଦୈତ୍ୟ ଏହାଭାବି ନିଶ୍ଚିନ୍ତ ଥିଲା ଯେ ମୁଁ ଶତ୍ରୁର ମାଂସ ଖାଇ ଦେଇ ଅକାମ୍ର ହୋଇଯାଇଛି । ମୃଗ ମାଂସକୁ ନହୁଷ ମାଂସ ବୋଲି ଭାବି ଅତ୍ୟନ୍ତ ତୃପ୍ତିରେ ସେ ଖାଇଲା । ଖାଇ ପିଇ ଗଙ୍ଗା ତୀରରେ ତପସ୍ୟା କରୁଥିବା ଅଶୋକ ସୁନ୍ଦରୀ ନିକଟକୁ ସେ ଗଲା ଏବଂ କହିଲା—ସୁନ୍ଦରୀ ! ତୁମେ ଏବେ ତୁମର ଜିଦ୍ ଛାଡ଼ି ମୋ ସହ ବିବାହ କର । ତୁମର ଭାବୀପତି ନହୁଷକୁ ମୁଁ ମାରି ଖାଇ ଦେଇଛି ।"

Digitized by srujanika@gmail.com

କିନ୍ତୁ ଏହା ଶୁଣି ଅଶୋକ ସୁନ୍ଦରୀ କହିଲା—"ତୁ କାମୁକ ମିଥ୍ୟାବାଦୀ, ନିର୍ଲଜ । କେବେହେଲେ, ମାତା ପାର୍ବତୀଙ୍କ କଥା ମିଥ୍ୟା ହୋଇପାରେ ? ଆୟୁପୁତ୍ର ନହୁଷଙ୍କୁ କ'ଣ କେହି ମାରି ପାରିବ ?"

ହୁଣ୍ଡ କହିଲା—"ତୁମେ ଏବେ ମୋ କଥା ବିଶ୍ୱାସ ନ କର ପଛେ ଦେଖିବ କିଛିଦିନ ମଧ୍ୟରେ ସବୁକଥା ଜଣା ପଡ଼ିଯିବ । ଜନ୍ମ ହେବାମାତ୍ରେ ହିଁ ମୁଁ ତାକୁ ସୂତିକା ଗୃହରୁ ଉଠେଇ ଆଣି, ମାରିଦେଇ, ତା'ର ମାଂସ ରାନ୍ଧି ଖାଇଛି । ନହୁଷ ଯେତେବେଳେ ମରିଗଲାଣି ତୁମକୁ ମୋ ସହିତ ବିବାହ କରିବାକୁ ହେବ ହିଁ, ବର୍ତ୍ତମାନ ମୁଁ ଯାଉଛି । ତୁମେ ଭାବି ଠିକ୍ କର ।" ଏହା କହି ସେ ତା'ର ମହୋଦଧିପୁରକୁ ଫେରି ଆସିଲା ।"

ଏ ସବୁ ଶୁଣି ଅଶୋକ ସୁନ୍ଦରୀ ମନରେ ସନ୍ଦେହ ହେବାକୁ ଲାଗିଲା । ସେ ଭାବିଲା—"ଏ ତ ଦୁଷ୍ଟ ଦାନବ, ନିଶ୍ଚୟ ନିଜର ମାୟାବଳରେ ଆୟୁପୁତ୍ରଙ୍କୁ ଆଣି ମାରି ଖାଇ ଦେଇଛି । କିନ୍ତୁ ମାଆ ପାର୍ବତୀଙ୍କର କଥା କିପରି ଅନ୍ୟଥା ହେବ ? ହାୟ ! ମୁଁ କ'ଣ କରିବି ? କେଉଁଠାକୁ ଯିବି ? କାହାକୁ କହିବି ? ମୋ କଥା କିଏ ଶୁଣିବ ?"

ଏହିପରି ଅନେକ କଥା ଭାବି ଅଶୋକ ସୁନ୍ଦରୀ ବିଳାପ କରୁଥିଲା । ଏହି ସମୟରେ ବିଦୁର ନାମକ ଗନ୍ଧର୍ବ ଆସି କହିଲା—"ଦେବି ! ତୁମେ କାହିଁକି ଏତେ ଚିନ୍ତା କରୁଛ ? ମୁଁ ତୁମ ମନୋବ୍ୟଥା ଜାଣିଛି । ଏଇ ଦୁଷ୍ଟ ହୁଣ୍ଡ ଆୟୁ-ପୁତ୍ରଙ୍କୁ ସୂତିକାଗୃହରୁ ଅବଶ୍ୟ ଉଠାଇ ଆଣିଥିଲା କିନ୍ତୁ ମାରିପାରି ନାହିଁ । ସେ ତ ମହାଆନନ୍ଦରେ ବଶିଷ୍ଠ ମୁନିଙ୍କର ଆଶ୍ରମରେ ବଢ଼ୁଛନ୍ତି । ତୁମେ ତାଙ୍କ ପାଇଁ ଆଦୌ ଚିନ୍ତା କର ନାହିଁ । ସେ ବହୁତ ଶୀଘ୍ର ଆସି ଏଇ ଦୁଷ୍ଟ ହୁଣ୍ଡକୁ ମାରି ତୁମକୁ ବିବାହ କରିବେ । ତୁମେ ମୋ କଥା ବିଶ୍ୱାସ କର । ଦେବତାମାନେ ହିଁ ମୋତେ ତୁମ ପାଖକୁ ଏହି ଖବର ଦେବାକୁ ପଠାଇଛନ୍ତି ।" ଏହା କହି ବିଦୁର ଗନ୍ଧର୍ବ ଚାଲିଗଲା । ଏସବୁ ଶୁଣିବା ପରେ ଅଶୋକ ସୁନ୍ଦରୀ ଆହୁରି ମନଯୋଗ ଦେଇ ତପସ୍ୟା କରିବାକୁ ଲାଗିଲା । ତା'ର ତପସ୍ୟା କରିବାରେ ଅନେକ ଦିନ ଚାଲିଗଲା ।"

ଏଣେ କୁମାର ନହୁଷ ବଡ଼ ହୋଇ, ଭଗବାନ ବଶିଷ୍ଠଙ୍କଠାରୁ ହୁଣ୍ଡ-ବଧ କରିବାପାଇଁ ଅନୁମତି ମାଗିଲେ । ମୁନି ତାଙ୍କର ଯୋଗ୍ୟତା ତଥା ଅସ୍ତ୍ରଶସ୍ତ୍ର ଚାଳନାର କୁଶଳତା ଦେଖି ଆନନ୍ଦରେ ତାଙ୍କୁ ଅନୁମତି ଦେଇ ଦେଲେ । କୁମାର ନହୁଷଙ୍କର ଆନନ୍ଦରସୀମା ରହିଲା ନାହିଁ । ସେ ଅସ୍ତ୍ରଶସ୍ତ୍ର ସହିତ ହୁଣ୍ଡକୁ ମାରିବା ପାଇଁ ବାହାରିଲେ । ମୁନି ବଶିଷ୍ଠ ତାଙ୍କର ସ୍ୱସ୍ତ୍ୟୟନ କଲେ ତଥା ଦେବତାମାନେ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ମନ୍ଦମଳୟ ବହିବାକୁ ଲାଗିଲା । ଦେବରାଜ ଇନ୍ଦ୍ର

Digitized by srujanika@gmail.com

ଯେତେବେଳେ କୁମାର ନହୁଷଙ୍କୁ ଖାଲି ପାଦରେ ହୁଣ୍ଡ ସହ ଯୁଦ୍ଧ କରିବାପାଇଁ ଯାଉଥିବାର ଦେଖିଲେ ସେ ନିଜ ସାରଥୀ ମାତଳିଙ୍କୁ ନିଜ ରଥ ସହ ତାଙ୍କ ନିକଟକୁ ପଠାଇଦେଲେ । ଇନ୍ଦ୍ରଙ୍କ ଦିବ୍ୟରଥକୁ ଦେଖି ନହୁଷ ଅତ୍ୟନ୍ତ ଖୁସି ହେଲେ । ତା'ଉପରେ ଚଢ଼ି ସେ ଯୁଦ୍ଧ ପାଇଁ ବାହାରିଗଲେ । ସେ ଅଶୋକ ସୁନ୍ଦରୀ ତପସ୍ୟା କରୁଥିବା ଜାଗାରେ ପହଞ୍ଚିଲେ । ନହୁଷ ତ କିଛି ଜାଣି ନଥିଲେ । ସେ ସେଇଠାରେ ହିଁ ତାଙ୍କର ବିଶ୍ରାମ ପାଇଁ ବ୍ୟବସ୍ଥା କଲେ । ସ୍ୱର୍ଗର ଅପ୍ସରାମାନେ ଆସି ନହୁଷଙ୍କ ସମ୍ମୁଖରେ ନୃତ୍ୟ କରିବାକୁ ଲାଗିଲେ । ଗନ୍ଧର୍ବମାନେ ଗୀତ ଗାଇବାକୁ ଲାଗିଲେ । କାମଦେବ ସଦୃଶ କୁମାର ନହୁଷ ଦିବ୍ୟ ସୁନ୍ଦର ସିଂହାସନ ଉପରେ ବସି ସଙ୍ଗୀତ ଶୁଣୁଥିଲେ ।

ସଙ୍ଗୀତର ମଧୁର ଧ୍ୱନି ଶୁଣି ଅଶୋକ ସୁନ୍ଦରୀର ମନରେ ଉତ୍କଣ୍ଠା ହେଲା । ଏପରି ଭାବି ସେ ଏକ ମୋଟା ଗଛ ଉହାଡ଼ରେ ରହି ଦେଖିଲା—ସ୍ୱର୍ଗର ଶ୍ରେଷ୍ଠ ଅପ୍ସରାମାନେ ନୃତ୍ୟ କରୁଛନ୍ତି ଓ ସେମାନଙ୍କ ନୃତ୍ୟକୁ ଜଣେ ଅତ୍ୟନ୍ତ ସୁନ୍ଦର ପୁରୁଷ ବସି ଉପଭୋଗ କରୁଛନ୍ତି । ଅଶୋକ ସୁନ୍ଦରୀ ସେହି ପୁରୁଷଙ୍କୁ ଦେଖିବା ମାତ୍ରେ ନିଜର ସବୁକିଛି ଭୁଲିଗଲା । ତା'ର ଆଖିର ପଲକ ମଧ୍ୟ ପଡ଼ିଲା ନାହିଁ । ତା'ର ଆଖି ସେଇଠି ଲାଖି ରହିଯାଇଥିଲା । ଯେପରି ସେ ତା'ର ମନକୁ ଯେତେ ଚେଷ୍ଟା କଲେ ମଧ୍ୟ ସଂଯତ କରି ପାରୁ ନଥିଲା । ମନ ତ ତା' ପାଖରୁ ଚାଲିଯାଇଥିଲା । ମନକୁ ଛାଡ଼ି ସେ ନିର୍ଜୀବ ପିତୁଳା ପରି ସେଇଠି ଛିଡ଼ା ହୋଇ ରହିଲେ । ଏତିକିବେଳେ ରମ୍ଭା ଅପ୍ସରା ତା' ନିକଟକୁ ଚାଲି ଆସି କହିଲେ—"ପୁଅୀ ! କ'ଣ ଦେଖୁଛ ? ତପସ୍ୱିନୀମାନଙ୍କ ପକ୍ଷେ ଏମିତି ଲୁଚି ଲୁଚି ଯୁବାପୁରୁଷଙ୍କୁ ଦେଖିବା ଉଚିତ ନୁହଁ । ଯାଅ, ତପସ୍ୟା କର ।"

ଅଶୋକ ସୁନ୍ଦରୀ କହିଲା—"ଭଉଣୀ ! ମୁଁ ମଧ୍ୟ ସେଇଆ ଭାବୁଛି । ମୋ ମନ କେବେ କୌଣସି ପୁରୁଷଙ୍କୁ ଦେଖି ଚଞ୍ଚଳ ହୋଇଯାଏନି । କିନ୍ତୁ କେଜାଣି କାହିଁକି ଏହାଙ୍କୁ ଦେଖି ମୋର ମନ ଚଞ୍ଚଳ ହୋଇ ପଡ଼ୁଛି । ଏହାର କ'ଣ କାରଣ ହୋଇପାରେ ମୁଁ ଏତେବେଳଯାଏ ଜାଣିପାରିଲି ନାହିଁ । ମୁଁ ଏ ସ୍ଥାନ ଛାଡ଼ି ଚାଲି ଯିବାକୁ ଚାହୁଁଛି । କିନ୍ତୁ ମୋର ପାଦ ଏଠୁ ଉଠୁନାହିଁ । ମନ ହେଉଛି, ମୁଁ ଏ ସୁପୁରୁଷଙ୍କୁ ଏମିତି ଚାହିଁ ରହିଥିବି ।"

ଏହା ଶୁଣି ରମ୍ଭା କହିଲା—"ଦେବି ! ତୁମେ ମାତା ପାର୍ବତୀଙ୍କ କନ୍ୟା, ତପସ୍ୱିନୀ, ତୁମର ଚିତ୍ତ କୌଣସି ଅଧର୍ମ ଆଡ଼କୁ କେବେହେଲେ ଯାଇପାରିବ ନାହିଁ । ଦେବତାମାନେ ଯାହା ସହିତ ତୁମର ବିବାହ ସ୍ଥିର କରିଛନ୍ତି, ମାତା ପାର୍ବତୀ ତୁମକୁ ଯେପରି ଆଶୀର୍ବାଦ ଦେଇଛନ୍ତି, ବ୍ରହ୍ମା ଯାହା ସହିତ ତୁମର ସମ୍ବନ୍ଧ ଲେଖି ସାରିଛନ୍ତି ସେହି ମହାରାଜ ଆୟୁ-ପୁତ୍ର ନହୁଷ ତୁମ ଆଗରେ ବସିଛନ୍ତି । ଯେମିତି ନିଜ ପଦାର୍ଥକୁ ମନ

Digitized by srujanika@gmail.com

ଦୃଷ୍ଟଂ ହିଁ ଜାଣି ଦେଇଥାଏ ସେମିତି ତୁମେ ତୁମର ପ୍ରାଣେଶ୍ୱରଙ୍କୁ ପରିଚୟ ବିନା ହିଁ ଚହ୍ନି ଦେଇପାରିଲ । ପୂର୍ବଜନ୍ମର ସମ୍ବନ୍ଧ ବିନା ଏପରି ପ୍ରେମ ହଠାତ୍ ହୋଇପାରେ ନାହିଁ । ଏ ହିଁ ତୁମର ଭାଗ୍ୟନିର୍ଦ୍ଦିଷ୍ଟ ପତି । ତୁମେ ସଙ୍କୋଚ ଛାଡ଼ି ତାଙ୍କୁ ନିଜ ପତିପଦରେ ବରଣ କର ।"

ଏହା ଶୁଣି ଅଶୋକ ସୁନ୍ଦରୀ କହିଲା—"ଭଉଣି, ଏମିତି ହଠାତ୍ ତାଙ୍କ ନିକଟକୁ ଯିବା ଉଚିତ ନୁହଁ । କେଜାଣି ସେ କ'ଣ ଭାବିବେ । ତେଣୁ ପ୍ରଥମେ ତୁମେ ଯାଇ ମୋ ସମ୍ବନ୍ଧରେ ତାଙ୍କୁ କୁହ । ତାହା ଶୁଣିସାରିବା ପରେ ସେ ଯାହା କହିବେ ମୋତେ ଆସି କୁହ । ସେ ଯଦି ଡାକିବେ ତେବେ ଯାଇ ମୁଁ ଯିବି ।"

ରମ୍ଭା କହିଲା—"ଭଲ କଥା, ମୁଁ ତୁମର ଦୂତୀ ହୋଇ କାମ କରିବି । କିନ୍ତୁ ମୋତେ କ'ଣ ମିଳିବ ?"

ଅଶୋକ ସୁନ୍ଦରୀ ହସି ହସି କହିଲା—"ତୁମକୁ ସବୁକିଛି ମିଳିବ ! ମୁଁ ତ ତୁମର, ସେ ବି ତୁମର ହୋଇଯିବେ ।"

ରମ୍ଭା କହିଲା—"ଏ ତ ଶିଷ୍ଟାଚାରର କଥା । କିନ୍ତୁ ମୋ ପାଇଁ ତୁମ ଦୁହିଁଙ୍କର ମିଳନ ହିଁ ସବୁଠାରୁ ବଡ଼ କଥା ହେବ । ତୁମେ ଦୁହେଁ ଏକାଠି ହୋଇ ଖୁସିରେ ରହିବ । ସେତିକି ମୋ ପାଇଁ ଯଥେଷ୍ଟ । ପରମାର୍ଥ ନିମନ୍ତେ ଲୋକେ କେତେ କେତେ କଷ୍ଟ ସ୍ୱୀକାର କରୁଛନ୍ତି । ମୋ ଯୋଗୁଁ ଯଦି କାହାର କଲ୍ୟାଣ ସାଧିତ ହୁଏ ସେଇ କ'ଣ କମ୍ ହେବ ! ଆଚ୍ଛା ହେଉ, ମୁଁ ଯାଉଛି ।" ଏହା କହି ସେ କୁମାର ନହୁଷଙ୍କ ନିକଟକୁ ଆସିଲା ।

ରମ୍ଭା କୁମାର ନହୁଷଙ୍କୁ ପ୍ରଣାମ କରି ଅଶୋକ ସୁନ୍ଦରୀ ବିଷୟରେ ଆଦ୍ୟରୁ ପ୍ରାନ୍ତଯାଏ ସବୁକିଛି କହିଗଲା । ଶେଷରେ କହିଲା—"ସେ ଆପଣଙ୍କ ନିମନ୍ତେ କେଉଁ ଯୁଗରୁ ତପସ୍ୟା କରୁଛନ୍ତି । ଆପଣ ତାଙ୍କୁ ପତ୍ନୀରୂପେ ଗ୍ରହଣ କରନ୍ତୁ ।"

କୁମାର ନହୁଷ କହିଲେ—"ରମ୍ଭା ! ମୁଁ ସବୁ କିଛି ଜାଣେ । ମୋର ଗୁରୁଦେବ ବଶିଷ୍ଠ ମୋତେ ଅଶୋକ ସୁନ୍ଦରୀର ଜନ୍ମ, ତା'ର ତପସ୍ୟା, ହୁଣ୍ଡ ପ୍ରତାରଣା କରି ତାଙ୍କୁ ନେଇଯିବା ବୃତ୍ତାନ୍ତ ତଥା ସେ ହୁଣ୍ଡକୁ ଦେଇଥିବା ଅଭିଶାପ ବିଷୟରେ ମଧ୍ୟ କହିସାରିଛନ୍ତି । ମୁଁ ଏହା ଜାଣେ ଯେ ଅଶୋକ ସୁନ୍ଦରୀର ଜନ୍ମ ମୋର ନିମନ୍ତେ ହିଁ ଉଦ୍ଦିଷ୍ଟ । ସେ ହିଁ ମୋର ଧର୍ମପତ୍ନୀ ହେବ । ତାକୁ ପାଇବାପାଇଁ ଇଚ୍ଛା କରି ଦୁଷ୍ଟ ଦାନବ ହୁଣ୍ଡ, ମୁଁ ଜନ୍ମ ହେଲାମାତ୍ରେ ମୋତେ ହରଣ କରି ନେଇ ଆସିଥିଲା । ଭାଗ୍ୟବଶତଃ ମୁଁ ବଞ୍ଚିଗଲି । ଭଗବାନ ବଶିଷ୍ଠ ମୋତେ ରକ୍ଷା କଲେ । ବର୍ତ୍ତମାନ

Digitized by srujanika@gmail.com

ଯେପର୍ଯ୍ୟନ୍ତ ମୁଁ ଦୈତ୍ୟରାଜ ହୁଣ୍ଡକୁ ବଧ ନ କରିଛି ସେତେବେଳ ଯାଏ ଅଶୋକ ସୁନ୍ଦରୀଙ୍କୁ ବିବାହ କରି ପାରିବି ନାହିଁ । କିଛି ଦିନ ନିମନ୍ତେ ତୁମେ ଧୈର୍ଯ୍ୟ ରଖ । ମୁଁ ହୁଣ୍ଡକୁ ହିଁ ମାରିବା ପାଇଁ ଆସିଛି ।" ରମ୍ଭା ନହୁଷଙ୍କଠାରୁ ସବୁକଥା ଶୁଣି ଅଶୋକ ସୁନ୍ଦରୀଙ୍କୁ ଯାଇ କହିଦେଲା । ଅଶୋକ ସୁନ୍ଦରୀ ଏହା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ହୁଣ୍ଡର ବଧ ନିମନ୍ତେ ପ୍ରତୀକ୍ଷା କରି ଘୋରତରରେ ପୁଣି ତପସ୍ୟାରେ ନିମଗ୍ନ ହୋଇଗଲେ ।

ଏପଟେ ହୁଣ୍ଡର ଗୁପ୍ତଚର ନହୁଷଙ୍କ ଆଗମନ ସମ୍ବାଦ ତଥା ରମ୍ଭାସହ ହୋଇଥିବା ତାଙ୍କର ସବୁ କଥାବାର୍ତ୍ତା ହୁଣ୍ଡ ଆଗରେ କହିଦେଲା । ଦୈତ୍ୟରାଜ ହୁଣ୍ଡ ଏହାଶୁଣି ଅତ୍ୟନ୍ତ କ୍ରୁଦ୍ଧ ହେଲା । ସେ ତତ୍‌କ୍ଷଣାତ୍ ଆଦେଶ ଦେଲା—"ସେଇ ଧୂର୍ତ୍ତୁଣୀ, ସେଇ ଦୁଷ୍ଟା ଦାସୀ, ସେମାନେ ମିଶି ମୋ ସହିତ ପ୍ରତାରଣା କରିଛନ୍ତି । ମୁଁ ସମସ୍ତଙ୍କୁ ବଧ କରିବି । ତୁମେମାନେ ସେଇ ଦୁଷ୍ଟ ନହୁଷକୁ ହିଁ ବଧ କରିବ । ମୋର ଚତୁରଙ୍ଗିଣୀ ସୈନ୍ୟ ସଜାଅ, ମୋର ସମସ୍ତ ବୀର ସୈନିକ ଯାଇ ସେ ଅଳ୍ପବୀର୍ଯ୍ୟ ରାଜପୁତ୍ରକୁ ଘେରିଯାଅ । ବ୍ୟୂହ ରଚନା କରି ସମସ୍ତେ ଏକାବେଳେକେ ତା' ଉପରେ ଆକ୍ରମଣ ଆରମ୍ଭ କର । ଧର୍ମ ଅଧର୍ମର କିଛି ବିଚାର କର ନାହିଁ । ଯେଉଁ ଭାବରେ ହେଉ ପଛେ ସେ ଭାବରେ ତାକୁ ମାରିବାକୁ ହିଁ ହେବ । ରାଜାଙ୍କର ଆଜ୍ଞାପାଇ ଦୈତ୍ୟ-ଦାନବମାନେ ନିଜ ନିଜ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ନହୁଷଙ୍କୁ ମାରିବାପାଇଁ ବାହାରି ପଡ଼ିଲେ । ହୁଣ୍ଡ ନିଜର ସୁବର୍ଣ୍ଣମଣ୍ଡିତ ଦିବ୍ୟରଥ ଉପରେ ଚଢ଼ି ନହୁଷଙ୍କ ସହ ଯୁଦ୍ଧ କରିବାପାଇଁ ଚାଲିଲା । ଦୈତ୍ୟମାନେ ଚାରି ଦିଗରୁ ରାଜକୁମାର ନହୁଷଙ୍କୁ ଘେରିଯାଇ ନେଲେ । ଦୁଇ ପକ୍ଷରୁ ବାଣର ବର୍ଷା ହେବାରେ ଲାଗିଲା । ଦାନବମାନେ ଅନେକ ପ୍ରକାରର ମାୟା ରଚନା କଲେ । ହୁଣ୍ଡ ନିଜର ସମ୍ପୂର୍ଣ୍ଣ ଶକ୍ତି ଲଗାଇ ଲଢ଼ିଲା, କିନ୍ତୁ ଦତ୍ତାତ୍ରେୟଙ୍କର ତେଜ ତଥା ବଶିଷ୍ଠଙ୍କର ଆଶୀର୍ବାଦ ଯୋଗୁ ମହାରାଜ ନହୁଷଙ୍କର କେଶ ମଧ୍ୟ ସ୍ପର୍ଶ କରି ପାରିଲା ନାହିଁ । ସେ ହୁଣ୍ଡ ସାଥିରେ ଘମାଘୋଟ ଯୁଦ୍ଧ କଲେ । ଶେଷରେ ସେ ଏପରି ଏକ ଶକ୍ତି ନିକ୍ଷେପ କଲେ ଯାହାର ଆଘାତରେ ଦୁଷ୍ଟ ଦାନବ ହୁଣ୍ଡ ପୃଥିବୀ ଉପରେ ମରି ଢଳି ପଡ଼ିଲା । ତା'ର ମୃତ୍ୟୁ ହେବାମାତ୍ରେ ଦେବତାମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେ, ଅପ୍‌ସରାମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ଏବଂ ଗନ୍ଧର୍ବମାନେ ସଙ୍ଗୀତ ଗାନ କରିବାକୁ ଲାଗିଲେ । ସର୍ବତ୍ର ଆନନ୍ଦର ଢେଉ ଖେଳିଗଲା ।"

ହୁଣ୍ଡର ମୃତ୍ୟୁପରେ ରମ୍ଭାକୁ ସଙ୍ଗରେ ନେଇ ଅଶୋକ ସୁନ୍ଦରୀ, କୁମାର ନହୁଷଙ୍କ ନିକଟକୁ ଆସି ସଲଜ ଭାବରେ କହିଲେ—"ରାଜକୁମାର ! ଧର୍ମତଃ ମୁଁ

Digitized by srujanika@gmail.com

ତୁମର ହିଁ ପତ୍ନୀ, ମୋର ମାତା ପାର୍ବତୀ, ଆପଣ ଦୈତ୍ୟରାଜ ହୁଣ୍ଡକୁ ମାରି ମୋତେ ବିବାହ କରିବେ ବୋଲି ଆଶୀର୍ବାଦ କରିଥିଲେ । ତେଣୁ ବିଧିବଦ୍ଧ ଭାବେ ବିବାହ କରି ମୋତେ ଆପଣ ଦାସୀଭାବେ ସ୍ୱୀକାର କରନ୍ତୁ ।"

ଏହାଶୁଣି ନହୁଷ କହିଲେ—"ସୁନ୍ଦରି ! ମୁଁ ସମସ୍ତ କଥା ପ୍ରଥମରୁ ହିଁ ଜାଣିଛି । ମୋର ଗୁରୁ ଭଗବାନ ବଶିଷ୍ଠ ମୋତେ ଏ ସବୁ କଥା କହିଥିଲେ । ତୁମର ତପସ୍ୟା କଥା ମଧ୍ୟ ସେ କହିଥିଲେ । କିନ୍ତୁ ସୁନ୍ଦରି ! ବିବାହ କରିବା ଲାଗିଁ ମୁଁ ସ୍ୱତନ୍ତ୍ର ନୁହେଁ । ମୁଁ ତ ମୋର ଗୁରୁଙ୍କର ଅଧୀନ । ତୁମେ ମୋ ସହିତ ଚାଲ । ମୁଁ ଭଗବାନ ବଶିଷ୍ଠଙ୍କୁ ପ୍ରାର୍ଥନା କରିବି । ସେ ଶୁଭ ମୁହୂର୍ତ୍ତରେ, ଶୁଭ ଲଗ୍ନରେ ମୋ ସହିତ ତୁମର ବିବାହ କରାଇବେ ।"

ଏହାଶୁଣି ଅଶୋକ ସୁନ୍ଦରୀ ପରମ ଆନନ୍ଦିତ ହେଲେ । ସେ ନିଜର ସଖୀ ରମ୍ଭା ସହିତ କୁମାରଙ୍କ ଆଦେଶରେ ଇନ୍ଦ୍ରଙ୍କ ରଥ ଉପରେ ବସିଲେ । କୁମାର ସେ ଦୁଇ କନ୍ୟାଙ୍କୁ ନେଇ ବଶିଷ୍ଠଙ୍କ ଆଶ୍ରମକୁ ଆସିଲେ । ସେ ହୁଣ୍ଡକୁ କିପରି ମାରିଲେ, କିପରି ଘମାଘୋଟ ଯୁଦ୍ଧ ହେଲା, ଏ ସବୁ ବିଷୟରେ ବିସ୍ତାର କରି ବଶିଷ୍ଠ ମୁନିଙ୍କୁ ଶୁଣାଇଲେ ତଥା ତାଙ୍କୁ ଅଶୋକ ସୁନ୍ଦରୀର ପରିଚୟ ଦେଲେ ।

ଅଶୋକ ସୁନ୍ଦରୀଙ୍କୁ ଦେଖି ମୁନି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଶୁଭ ମୁହୂର୍ତ୍ତ ଦେଖି ଉତ୍ତମ ଲଗ୍ନରେ ବୈଦିକ ବିଧି ଅନୁସାରେ ଅଗ୍ନି ତଥା ବ୍ରାହ୍ମଣଙ୍କ ସମ୍ମୁଖରେ ନହୁଷଙ୍କର ବିବାହ ଅଶୋକ ସୁନ୍ଦରୀ ସହିତ କରି ଦେଲେ । ବଶିଷ୍ଠ ମୁନି, ଦୁହିଁଙ୍କୁ ଆଶୀର୍ବାଦ କରି କହିଲେ—"ପୁତ୍ର ! ବର୍ତ୍ତମାନ ତୁମର ଆଶ୍ରମର କାର୍ଯ୍ୟ ସମାପ୍ତ ହୋଇଗଲା । ତୁମେ ଦେଶର ଶତ୍ରୁ ଦୁଷ୍ଟ ଦାନବ ହୁଣ୍ଡକୁ ମାରି ସାରିଛ । ବର୍ତ୍ତମାନ ବୋହୂକୁ ସାଥିରେ ନେଇ ଘରକୁ ଯାଅ । ଘରେ ତୁମର ମାତା ତୁମ ବିଚ୍ଛେଦରେ ବ୍ୟାକୁଳ ହୋଇ କାଳ ଯାପନ କରୁଛନ୍ତି ।" ତଥା ତୁମର ପିତା ତୁମପାଇଁ ବିଶେଷ ଚିନ୍ତିତ ହୋଇ ଦିନରାତି ବ୍ୟସ୍ତ ବିବ୍ରତ ହେଉଛନ୍ତି । ତୁମେ ଯାଇ ସେମାନଙ୍କୁ ସାନ୍ତ୍ୱନା ଦେଇ; ଧୈର୍ଯ୍ୟ ଦେଇ ସେମାନଙ୍କର ସେବାକର ।"

ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ନହୁଷ ନିଜ ପତ୍ନୀ ତଥା ରମ୍ଭାଙ୍କୁ ସଙ୍ଗରେ ନେଇ ନିଜ ପିତାଙ୍କ ରାଜଧାନୀ ନିକଟକୁ ଆସିଲେ । ଏପଟେ ଦେବତାମାନେ ଆଗରୁ ହିଁ ମେନକା ଅପ୍ସରାକୁ ରାଣୀଙ୍କ ପାଖକୁ ପଠାଇ ଦେଇଥିଲେ । ରାଣୀ ଇନ୍ଦୁମତୀ ପୁତ୍ର ଶୋକରେ ବ୍ୟାକୁଳ ହୋଇ ମୃତବତ୍ ଜୀବନଯାପନ କରୁଥିଲେ । ମେନକା ଯାଇ

Digitized by srujanika@gmail.com

କହିଲା—"ଦେବି ! ଆଉ ଦୁଃଖ କରନାହିଁ । ତୁମର ପୁତ୍ର ପୁତ୍ରବଧୂ ସହିତ ଆଜି ହିଁ ତୁମ ନିକଟକୁ ଆସୁଛନ୍ତି ।" ଏଇ ସମାଚାର ଶୁଣିବା ମାତ୍ରେ ରାଣୀଙ୍କର ଖୁସିର ସୀମା ରହିଲା ନାହିଁ । ସେ ଶୀଘ୍ର ଶୀଘ୍ର ନିଜ ସ୍ୱାମୀଙ୍କୁ ଅନ୍ତଃପୁରକୁ ଡାକିଲେ ଏବଂ ମେନକାଠାରୁ ଯାହା ଶୁଣିଥିଲେ ତାହା ତାଙ୍କୁ କହିଲେ । ରାଜା ମଧ୍ୟ ଖୁସିରେ ପାଗଳ ପରି ହୋଇଗଲେ । ସେ କୁମାର ନହୁଷଙ୍କର ଆଗମନ ଉପଲକ୍ଷେ ବିରାଟ ଉତ୍ସବ କଲେ । ସମ୍ପୂର୍ଣ୍ଣ ନଗର ତୋରଣ ତଥା ବନ୍ଦାପନା ଥାଳୀ ଦ୍ୱାରା ସଜ୍ଜିତ ହୋଇ ରହିଲା । ଗୀତବାଦ୍ୟ ଏବଂ ଜୟ ଜୟକାର ସହିତ ପୁତ୍ରବଧୂ ତଥା ପୁତ୍ରଙ୍କୁ ପ୍ରାସାଦ ଭିତରକୁ ଅଣାଗଲା କୁମାର ନହୁଷ ଆସି ପିତାମାତାଙ୍କର ପାଦପଦ୍ମରେ ପ୍ରଣାମ କଲେ । ଅଶୋକ ସୁନ୍ଦରୀ ମଧ୍ୟ ନିଜ ଶାଶୂ ଶ୍ୱଶୁରଙ୍କର ଚରଣବନ୍ଦନା କଲା । ସର୍ବତ୍ର ଆନନ୍ଦର ଢେଉ ଖେଳୁଥିଲା । ପ୍ରଜାଗଣ ପରମ ଆନନ୍ଦ ଲାଭକଲେ । ମହାରାଜ ଆୟୁ ଅନେକ ଦାନପୁଣ୍ୟ କଲେ । ଅଶୋକ ସୁନ୍ଦରୀଙ୍କୁ ପହଞ୍ଚାଇ ରମ୍ଭା ତାହାର ଅନୁମତି ନେଇ ପୁଣି ସ୍ୱର୍ଗକୁ ଫେରିଗଲା । ନହୁଷ ଅଶୋକ ସୁନ୍ଦରୀଙ୍କୁ ପାଇ ଅତ୍ୟନ୍ତ ଖୁସି ହେଲେ । ଅଶୋକ ସୁନ୍ଦରୀ ପରମ ରୂପବତୀ, ସୁଶୀଳା, ସୁନ୍ଦରୀ, ସତୀ, ସାଧ୍ୱୀ ନାରୀ ଥିଲା ଏବଂ ସେ ନହୁଷଙ୍କୁ ପ୍ରାଣଠାରୁ ଅଧିକ ପ୍ରେମ କରୁଥିଲା ।

କିଛିକାଳପରେ ମହାରାଜ ଆୟୁ ନିଜ ରାଜ୍ୟଭାର ନହୁଷଙ୍କୁ ଅର୍ପଣ କରି ତଥା ତାଙ୍କୁ ବିଧିପୂର୍ବକ ରାଜାରୂପେ ଅଭିଷେକ କରି ନିଜ ପତ୍ନୀ ଇନ୍ଦୁମତୀଙ୍କ ସହ ତପସ୍ୟା କରିବା ନିମନ୍ତେ ବଣକୁ ଚାଲିଗଲେ । ତାଙ୍କପରେ ମହାରାଜ ନହୁଷ ଧର୍ମପୂର୍ବକ ଏଇ ସପ୍ତଦ୍ୱୀପା ବସୁମତୀର ଯତ୍ନ ସହକାରେ ପାଳନ କଲେ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମହାରାଜ ନହୁଷ ଅନେକ ଦିନ ପର୍ଯ୍ୟନ୍ତ ପୃଥିବୀକୁ ଶାସନ କଲେ । ତାଙ୍କର ଯତି, ଯଯାତି, ସଂଯତି, ଆୟତି, ବିଯତି କୃତି—ଏଇ ଛଅ ପୁତ୍ର ହେଲେ । ଏମାନେ ସମସ୍ତେ ଧର୍ମପରାୟଣ ଥିଲେ । ମହାରାଜ ନହୁଷ ଏପରି ପ୍ରଭାବଶାଳୀ ଥିଲେ ଯେ ଦେବତା ତଥା ଋଷିମାନେ ସମସ୍ତେ ମିଶି ଥରେ ତାଙ୍କୁ ଇନ୍ଦ୍ର ପଦରେ ଅଭିଷିକ୍ତ କରିଥିଲେ ।"

ଏହା ଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ଋଷିମାନେ ମହାରାଜ ନହୁଷଙ୍କୁ ସ୍ୱର୍ଗର ଇନ୍ଦ୍ର କାହିଁକି କରିଥିଲେ ? ଦେବତାମାନଙ୍କର ପ୍ରକୃତ ଇନ୍ଦ୍ର ସେତେବେଳେ କୁଆଡ଼େ ଯାଇଥିଲେ ? ସେ କେତେଦିନ ପର୍ଯ୍ୟନ୍ତ ସ୍ୱର୍ଗରେ ଇନ୍ଦ୍ର ହୋଇ ରହିଲେ, ଏ ସବୁ କଥା ଆମକୁ ବିସ୍ତୃତ କୁହନ୍ତୁ ।"

Digitized by srujanika@gmail.com

ଏହା ଶୁଣି ସୂତ ମୁନି କହିଲେ—"ଭଲ କଥା ମହାରାଜ ! ଏବେ ମୁଁ ମହାରାଜ ନହୁଷଙ୍କର ଇନ୍ଦ୍ର ହେବାର ବୃତ୍ତାନ୍ତ ଶୁଣାଉଛି । ଆପଣ ସମସ୍ତେ ଏହା ଶ୍ରଦ୍ଧାର ସହିତ ଶୁଣନ୍ତୁ ।"

## ଛପ୍‌ପୟ

ସୁରପୁର ଉମା ଅଶୋକ ସୁନ୍ଦରୀ ପୈଦା କୀନ୍ହୀ ।
କଲ୍ପବୃକ୍ଷ ତେଁ ଭଇ ଶିବ-ପୁତ୍ରୀ କର ଲୀନ୍ହୀ ॥
ନହୁଷ ହୋହିଁ ପତି ଉମା ହରଷି ଆଶିଷ ଶୁଭ ଦୀନ୍ହୀ ।
ବଜ୍ରଦତ୍ତ ସୁତ ହୁଣ୍ଡ କରି ମାୟା ସୋ ଚୀନ୍ହୀ ॥
ଜନମ୍ୟୋ ବ୍ୟାହ ନୃପ ନହୁଷ ନେ, ଗୁରୁ ଆଜ୍ଞା ତେ ହୁଣ୍ଡ ହନ ।
ଗୟେ ପିତୃ-ଗୃହ ନରଖି ସୁତ, ପ୍ରମୁଦିତ ଜନୁ ଅହି ପାଇ ମନ ॥



Digitized by srujanika@gmail.com

# ମହାରାଜ ନହୁଷଙ୍କର ଇନ୍ଦ୍ରପଦ ପ୍ରାପ୍ତି

ଯତର୍ଯାତଃ ସଂଯାତିରାୟାତିର୍ବିୟତିଃ କୃତିଃ ।
ଷଡ଼ିମେ ନହୁଷସ୍ୟାସନ୍ନିନ୍ଦ୍ରିୟାଣିବ ଦେହିନଃ ॥ *

(ଶ୍ରୀ ଭା-୯ସ୍କ-୧୮ଅ-୧ ଶ୍ଳୋକ)

**ଛପ୍‌ପୟ**

ଶଚୀ ପାଇ ଅଶୋକ ସୁନ୍ଦରୀ ସୁଖୀ ଅତି ।
ଗଲେ ଆୟୁ ବନ କରୀ ତପସ୍ୟା ଲଭି ପରମ ଗତି ॥
ସୁତ ଯତି ଓ୍ୟର ଯଯାତି ବୟତି ସଂଯତି ଯଶସ୍ୱୀ ।
ଆୟତି କୃତି ସବ ଶ୍ରେଷ୍ଠ ଭୟେ ଅତି ଜ୍ୟେଷ୍ଠ ତପସ୍ୱୀ ॥
ବୃତ୍ର ମାରି ହତ୍ୟାଗ୍ରସିତ, ହେ ଶତକ୍ରତୁ ତବ ଲୁପ ଗୟେ ॥
ତବ ସୁର ସମ୍ମତି ତେ ନହୁଷ, ସ୍ୱର୍ଗ ମାଁହି ସୁରପତି ଭୟେ ॥

ମନୁଷ୍ୟ ନିଜର ନମ୍ରତା ତଥା ସଦାଚାର ଦ୍ୱାରା ଯେ କୌଣସି ଦେବତା ହୋଇ ପାରିବ, ସେ ଯେତେବେଳଯାଏ ଅବିରାମ ଉନ୍ନତ ମାର୍ଗରେ ହିଁ ଚାଲିଥିବ । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ସଦାଚାର ତ୍ୟାଗ କରିବ, ସେ ସାଙ୍ଗେ ସାଙ୍ଗେ ଅଭିମାନର ବଶୀଭୂତ ହୋଇଯିବ ଏବଂ ତା'ର ପତନ ନିଶ୍ଚିତ ହୋଇଯିବ । ଯେ ସଦା ସର୍ବଦା ଗୁରୁଜନମାନଙ୍କୁ ଆଦର ସମ୍ମାନ ଦେଖାଇଥାଏ, ସେମାନଙ୍କଠାରୁ ଆଶୀର୍ବାଦ ନେଇ ଉନ୍ନତ ପଥରେ ଆଗେଇଥାଏ । କିନ୍ତୁ ଯେତେବେଳେ ନିଜକୁ ହିଁ ସବୁକିଛି ବୋଲି ଭାବେ, ଅନ୍ୟକୁ ଉପେକ୍ଷା କରେ, ବଡ଼ମାନଙ୍କୁ ଅପମାନ କରିଥାଏ, ସେମାନଙ୍କ ଦ୍ୱାରା ନ କରିବା କାର୍ଯ୍ୟ ମଧ୍ୟ କରାଇଥାଏ ସେତେବେଳେ ସେ ନିଜର ପତନର ପଥ

---

* ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜା ! ମହାରାଜା ନହୁଷଙ୍କର ଯତି ଯଯାତି, ସଂଯାତି, ଆଯାତି, ବିଯତି, ଏବଂ କୃତି—ଏ ଛ ପୁତ୍ର ଏଇ ପ୍ରକାରରେ ଥିଲେ ଯେପରିକ ଦେହଧାରୀ ପ୍ରତ୍ୟେକ ଜୀବର ଛ ଇନ୍ଦ୍ରିୟ ଥାଆନ୍ତି ।

Digitized by srujanika@gmail.com

ସ୍ୱୟଂ ହିଁ ପରିଷ୍କାର କରୁଛୁ ବୋଲି ଜାଣିବ । ତେଣୁ ଉନ୍ନତି-ପଥର ପଥିକମାନଙ୍କୁ ସର୍ବଦା ଶ୍ରେଷ୍ଠ ପୁରୁଷମାନଙ୍କର ସମ୍ମାନ ତଥା ସଦାଚାରାନୁକୂଳ କର୍ମ କରିବା ଆବଶ୍ୟକ ହୋଇଥାଏ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ବର୍ତ୍ତମାନ ମୁଁ ମହାରାଜ ନହୁଷଙ୍କର ଉତ୍ତର ଚରିତ ଆପଣଙ୍କୁ ଶୁଣାଉଛି । ନହୁଷଙ୍କ ପିତା ଆୟୁ ଯେତେବେଳେ ବଣକୁ ଚାଲିଗଲେ ନହୁଷ ସୁପୁତ୍ରଙ୍କ ପରି ରାଜ୍ୟଶାସନ କଲେ । ସମୟାନୁକ୍ରମେ ତାଙ୍କର କ୍ରମଶଃ ଯତି, ଯଯାତି, ସଂଯାତି, ଆଯାତି, ବିଯତି ଏବଂ କୃତି—ଏ ଛ'ପୁତ୍ର ହେଲେ । ଏମାନେ ସମସ୍ତେ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ମହାରାଜ ନହୁଷ ଅତିଥି-ଅଭ୍ୟାଗତମାନଙ୍କୁ ତଥା ଉତ୍ତମ ଉତ୍ତମ ବ୍ରାହ୍ମଣମାନଙ୍କୁ ସେମାନଙ୍କ ଇଚ୍ଛାନୁଯାୟୀ ଦାନ କରୁଥିଲେ । ସେ କେବେହେଲେ କାହାସହିତ କଟୁଭାଷା ପ୍ରୟୋଗ କରୁ ନଥିଲେ । ସମସ୍ତଙ୍କ ସହିତ ହସି ହସି କଥାବାର୍ତ୍ତା କରୁଥିଲେ । ତାଙ୍କ ଦ୍ୱାରରୁ କେହି ନିରାଶ ହୋଇ ଫେରୁ ନଥିଲେ । ସେ ଇଚ୍ଛାନୁକୂଳ ଦାନ ଦେଉଥିଲେ, ଏହାଦ୍ୱାରା ତାଙ୍କର ଯଶ ତିନିଲୋକରେ ବ୍ୟାପ୍ତ ହୋଇଥିଲା । ତାଙ୍କଦ୍ୱାରା ହେଉଥିବା ଯଜ୍ଞରେ ବ୍ରାହ୍ମଣମାନେ ଦକ୍ଷିଣା ନେଇ ନେଇ କ୍ଲାନ୍ତ ହୋଇ ଯାଉଥିଲେ । ତେଣୁ ସେ ସବୁ ପୁଣ୍ୟର ଫଳ ତାଙ୍କୁ ଶୀଘ୍ର ମିଳିବା କଥା ।"

ବୃତ୍ରାସୁରକୁ ମାରିବା ପରେ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଥିଲା; ସେ ହତ୍ୟା ଦୋଷ ଭୟରେ ମାନସରୋବର ଭିତରେ ଫୁଟିଥିବା ପଦ୍ମଫୁଲର ନାଡ଼ ଭିତରେ ଆସି ଲୁଚିଗଲେ । ଫଳରେ ସ୍ୱର୍ଗ ଇନ୍ଦ୍ର ଶୂନ୍ୟ ହୋଇଗଲା । ତିନି ଲୋକରେ ହାହାକାର ପଡ଼ିଗଲା । ଇନ୍ଦ୍ରଙ୍କ ବିନା କାମ କିପରି ଚାଲିବ ? ଏଥିପାଇଁ ସ୍ୱର୍ଗରେ ଏକ ସାର୍ବଜନୀନ ସଭା ଡକା ହେଲା । ସମସ୍ତ ଦେବତା, କିନ୍ନର, ଗନ୍ଧର୍ବ, ସୂର୍ଯ୍ୟ, ବସୁ, ମରୁତଗଣ, ଋଷି, ମହର୍ଷି, ସେ ସଭାରେ ଏକତ୍ରିତ ହେଲେ । ସମସ୍ତେ ଇନ୍ଦ୍ରଙ୍କ ଆବଶ୍ୟକତା ବିଷୟରେ ନିଜର ମତପ୍ରକାଶ କଲେ ।

ଅଗସ୍ତ୍ୟ ମୁନି ପ୍ରସ୍ତାବ ଦେଲେ—"ଯେତେବେଳଯାଏ ଦେବରାଜ ଇନ୍ଦ୍ର ପ୍ରକଟ ନ ହେଉଛନ୍ତି ସେତେବେଳ ପର୍ଯ୍ୟନ୍ତ ଅସ୍ଥାୟୀ ଇନ୍ଦ୍ର ବଛା ହୋଇ ରୁହନ୍ତୁ । ସେ ଇନ୍ଦ୍ରଙ୍କ ସ୍ଥାନରେ ରହି ତିନିଲୋକ ପାଳନ କରନ୍ତୁ ।" ଅଗସ୍ତ୍ୟ ମୁନିଙ୍କର ଏହି ପ୍ରସ୍ତାବକୁ ସମସ୍ତେ ସମର୍ଥନ କଲେ । ବର୍ତ୍ତମାନ ପ୍ରଶ୍ନ ଉଠିଲା ଯେ ଇନ୍ଦ୍ରଙ୍କର ସ୍ଥାନ କାହାକୁ ଦିଆଯିବ । ମୁଖ୍ୟ ମୁଖ୍ୟ ଦେବତାମାନଙ୍କୁ ଦାୟିତ୍ୱ ନେବାପାଇଁ ପଚରାଗଲା । ଦେବତାମାନଙ୍କ ପରି ସମସ୍ତ ଉପଦେବ ମଧ୍ୟ ସେହି କାମ କରିବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କଲେ ।

Digitized by srujanika@gmail.com

ଏହାଦେଖି ଋଷିମାନେ କହିଲେ—"ଭାଇ ! ଏମିତ ତ କାମ ଚଳିବନି । ରାଜାଙ୍କର କାମ କୌଣସି ରାଜା ହିଁ ସୁଚାରୁ ରୂପେ କରିବେ । ପୃଥିବୀର କୌଣସି ରାଜାଙ୍କୁ ଡାକି ଅସ୍ଥାୟୀ ଇନ୍ଦ୍ର କରାଯାଉ ।" ତେଣୁ ପୃଥିବୀରେ ଯୋଗ୍ୟ ରାଜାଙ୍କର ଖୋଜା ଚାଲିଲା । ସମସ୍ତେ ଏକା ସ୍ୱରରେ କହିଲେ—ବର୍ତ୍ତମାନ ରାଜା ନହୁଷ ହିଁ ପୃଥିବୀ ଉପରେ ଏକମାତ୍ର ରାଜା ଯେ ସ୍ୱର୍ଗର ରାଜା ହେବାପାଇଁ ସମ୍ପୂର୍ଣ୍ଣ ଯୋଗ୍ୟ ।"

ସର୍ବ ସମ୍ମତିକ୍ରମେ ଋଷି ମୁନିମାନଙ୍କର ଏକ ଶିଷ୍ଟ ମଣ୍ଡଳ ମହାରାଜ ନହୁଷଙ୍କ ନିକଟକୁ ଗଲେ । ସ୍ୱର୍ଗର ସମସ୍ତ ଋଷି ମହର୍ଷିମାନଙ୍କୁ ଦେଖି ମହାରାଜ ନହୁଷ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସମସ୍ତଙ୍କୁ ଆନ୍ତରିକ ସ୍ୱାଗତ ଜଣାଇଲେ, ତଥା ଉତ୍ତମ ରୂପେ ସତ୍କାର କଲେ । ଶାସ୍ତ୍ରୀୟ ବିଧି ଅନୁସାରେ ପୂଜା ଅର୍ଚ୍ଚନା କଲେ । ତାଙ୍କ ପୂଜା ବିଧି-ବିଧିଭାବେ ଗ୍ରହଣ କରିବାପରେ ମୁନିମାନେ ରାଜାଙ୍କର ରାଜକୋଷ, ମନ୍ତ୍ରୀ, ପରିବାର ତଥା ସମସ୍ତ ପ୍ରଜାଙ୍କ ବିଷୟରେ କୁଶଳ ପ୍ରଶ୍ନ କଲେ । କୁଶଳ ପ୍ରଶ୍ନ ଶେଷରେ ରାଜା ହାତଯୋଡ଼ି କହିଲେ—"ହେ ମହାତ୍ମାଗଣ ! ଆଜି ଏଇ ଅକିଞ୍ଚନ ଉପରେ ଆପଣମାନେ କିପରି ଏପରି କୃପା କଲେ । ଯଦି ମୋ ଯୋଗ୍ୟ କୌଣସି ସେବା ଥାଏ ତେବେ ଆଦେଶ କରନ୍ତୁ ।"

ଋଷିମାନେ କହିଲେ—"ହେ ରାଜା ! ଦେବରାଜ ଇନ୍ଦ୍ର ବ୍ରହ୍ମହତ୍ୟା ଭୟରେ ଅଦୃଶ୍ୟ ହୋଇଯାଇଛନ୍ତି । ଇନ୍ଦ୍ରଙ୍କ ବିନା ଯଜ୍ଞରେ ଭାଗ—କିଏ ଗ୍ରହଣ କରିବ ? ଏଥିପାଇଁ ଆମେ ସମସ୍ତେ ଆପଣଙ୍କୁ ଇନ୍ଦ୍ରଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସ୍ୱର୍ଗର ଇନ୍ଦ୍ର କରିବାପାଇଁ ଚାହୁଁଛୁ ।"

ଏହା ଶୁଣି ନିଜ କାନରେ ହାତରଖି ମହାରାଜ ନହୁଷ କହିଲେ—"ମହାତ୍ମାଗଣ ! ଆପଣମାନେ କିପରି ଏପରି ଅସମ୍ଭବ ଓ ଅନୁଚିତ କଥା କହୁଛନ୍ତି ? ଦେବତାମାନେ ଆମର ପୂଜ୍ୟ, ବନ୍ଦନୀୟ । ଆମେ ମର୍ତ୍ତ୍ୟବାସୀ ମନୁଷ୍ୟ କିପରି ସେମାନଙ୍କର ରାଜା ହୋଇ ପାରିବୁ ?"

ଋଷିମାନେ କହିଲେ—"ହେ ରାଜା ! ଦାନ, ସତ୍ସଙ୍ଗ, ମଧୁରବାଣୀ ଦେବପୂଜନ ଏବଂ ଭକ୍ତି—ଏ ସମସ୍ତ ସ୍ୱର୍ଗୀୟ ପୁଣ୍ୟ । ଯେଉଁମାନେ ଗୁଣୀ ସେ ସ୍ୱର୍ଗରେ ରହନ୍ତୁ କିମ୍ବା ମର୍ତ୍ତ୍ୟରେ, ସେମାନଙ୍କର ଗଣନା ଦେବତାମାନଙ୍କ ସହିତ ହିଁ ହୋଇଥାଏ । ଆପଣଙ୍କଠାରେ ଏ ସମସ୍ତ ଗୁଣ ବିଦ୍ୟମାନ । ତେଣୁ ଆପଣ ଆପଣଙ୍କ ଗୁଣ କର୍ମଯୋଗୁ ଦେବତା ପଦବାଚ୍ୟ । ପୃଥିବୀରେ ତ ବର୍ତ୍ତମାନ ଆପଣ ହିଁ ରାଜା । ସପ୍ତଦ୍ୱୀପବତୀ ବସୁମତୀର ପାଳନ ତ ଆପଣ ହିଁ କରୁଛନ୍ତି, ତେଣୁ ଆପଣ ସ୍ୱର୍ଗର ଭାର ମଧ୍ୟ ଗ୍ରହଣ କରନ୍ତୁ ।"

Digitized by srujanika@gmail.com

ରାଜା ନମ୍ରଭାବରେ କହିଲେ—"ନା ମହାରାଜ ! ସ୍ୱର୍ଗର ପାଳନ ଏତେ ସହଜ ତ ନୁହେଁ । ସେଠାରେ ଏକରୁ ଏକ ବଳି ତପସ୍ୱୀ, ତେଜସ୍ୱୀ, ଯଶସ୍ୱୀ ଏବଂ ପ୍ରଭାବଶାଳୀ ପୁରୁଷ ରହିଛନ୍ତି । ସମସ୍ତ ଋଷିମୁନିମାନଙ୍କୁ ଶାସନ କରିବା, ସେମାନଙ୍କୁ ଗୋଟିଏ ନିୟମରେ ଚଳାଇବା ଆଦୌ ସାଧାରଣ କଥା ନୁହଁ । ସେଠାରେ ତ ଏପରି ତେଜସ୍ୱୀ ମହାତ୍ମାମାନେ ଅଛନ୍ତି ଯେ ତାଙ୍କର ଗୋଟିଏ ଦୃଷ୍ଟିପାତରେ ମୁଁ ଭସ୍ମ ହୋଇଯିବି ।"

ଋଷିମାନେ କହିଲେ—"ନା ମହାରାଜ ! ଯେତେବେଳେ ଆମ୍ଭେମାନେ ସ୍ୱେଚ୍ଛାରେ ଆପଣଙ୍କୁ ସ୍ୱର୍ଗର ଇନ୍ଦ୍ର କରିବାପାଇଁ ଆସିଛୁ । ସେତେବେଳେ ଆମେ ଆପଣଙ୍କୁ ଭସ୍ମ କରିବା ପ୍ରଶ୍ନ ହିଁ ଉଠୁନାହିଁ ।"

ନହୁଷ କହିଲେ—"ନା ଭଗବନ୍ ! କେବଳ କରି ଦେଲେ କାମ ଚଳେନାହିଁ । ଯେତେବେଳଯାଏ ନିଜର ତେଜ ନାହିଁ ଅନ୍ୟମାନଙ୍କର କରିବାଦ୍ୱାରା ସେ କ'ଣ ହେବ ? ଏମିତି ତ ଆପଣ ଗୋଟିଏ ମାଟିପିଣ୍ଡୁଳାକୁ ମଧ୍ୟ ଇନ୍ଦ୍ରଙ୍କ ଆସନରେ ରଖିପାରିବେ । ନିଜ ଭିତରେ ଅନ୍ୟକୁ ନିୟନ୍ତ୍ରଣ କରିବାର ଶକ୍ତି, ତେଜ ତଥା ପ୍ରଭାବ ନଥିଲେ ସଭାପତି ପଦ ଗ୍ରହଣ କରିବା ଉଚିତ ନୁହେଁ । କାହାର କରିବାଦ୍ୱାରା କେହି ହୋଇଗଲେ ତା' ନିଜର କିଛି ପ୍ରଭାବ ରହେନାହିଁ । ଏପ୍ରକାର ମିଛମିଛିକା ଇନ୍ଦ୍ର ହେବାପାଇଁ ମୁଁ ଆଦୌ ଚାହୁଁନି ।"

ଋଷିମାନେ ପଚାରିଲେ—"ତେବେ ଆପଣ କ'ଣ ଚାହୁଁଛନ୍ତି ?" ରାଜା ଉତ୍ତର ଦେଲେ—"ମହାରାଜ ! ଧୃଷ୍ଟତା ପାଇଁ କ୍ଷମା ମାଗୁଛି ।" ଋଷିମାନେ କହିଲେ—"ଆପଣଙ୍କଠୁ ଅଧିକ ଯୋଗ୍ୟ ଏବଂ ପ୍ରଭାବଶାଳୀ ବ୍ୟକ୍ତି ଏ ସମୟରେ ତିନିଲୋକ ମଧ୍ୟରେ କେହି ନାହିଁ । ଋଷିମୁନିମାନେ ଅବଶ୍ୟ ଅଛନ୍ତି, ସେମାନେ କେବଳ ବରଦାନ ଦେଇ ପାରନ୍ତି, ସମୟ ପଡ଼ିଲେ ଅଭିଶାପ ମଧ୍ୟ ଦେଇପାରନ୍ତି, କିନ୍ତୁ ସେମାନେ ଶାସନ କରି ପାରିବେ ନାହିଁ । ସେଥିପାଇଁ ଆପଣଙ୍କୁ ହିଁ ସ୍ୱର୍ଗକୁ ଯାଇ ଶାସନ କରିବାପାଇଁ ପଡ଼ିବ ।"

ଏହା ଶୁଣି ନହୁଷ କହିଲେ—"ପୂଜ୍ୟ ମହାତ୍ମାଗଣ ! ଏ ତ ମୋର ଭାଗ୍ୟ, ମୋପାଇଁ ଅତ୍ୟନ୍ତ ଗୌରବର ବିଷୟ । କିନ୍ତୁ ମୁଁ ମୋର ଅଯୋଗ୍ୟତା ନିମନ୍ତେ ହିଁ କୁଣ୍ଠିତ ହେଉଛି । ଆପଣମାନଙ୍କର ଆଦେଶ ଉଲଂଘନ କରିବା ମଧ୍ୟ ଅପରାଧ । ତେଣୁ ଯଦି ଗୋଟିଏ ବର ଆପଣ ମୋତେ ଦେଇ ଦିଅନ୍ତି । ତେବେ ମୁଁ ସ୍ୱର୍ଗର ଇନ୍ଦ୍ର ହୋଇପାରିବି ।"

ଋଷିମାନେ ଏହାଶୁଣି ସନ୍ତୁଷ୍ଟ ହୋଇ କହିଲେ—"ହଁ ରାଜା ! ମାଗନ୍ତୁ, ଆପଣ ଯେ କୌଣସି ଦୁର୍ଲଭରୁ ଦୁର୍ଲଭ ବର ମାଗିବେ ତା' ଦେବାପାଇଁ ଆମେ ଆପଣଙ୍କ ପାଖରେ ବଚନବଦ୍ଧ ହେଲୁ ।"

Digitized by srujanika@gmail.com

ରାଜା କହିଲେ—"ଯଦି ଆପଣ ମୋତେ ଇନ୍ଦ୍ର କରିବାପାଇଁ ଚାହୁଁଛନ୍ତି, ତେବେ ମୋତେ ଏହି ବରଦାନ ଦିଅନ୍ତୁ—ଯେ କେହି ମୋ ସମ୍ମୁଖକୁ ଆସିଯିବ କିମ୍ବା ମୁଁ ଯାହାକୁ ଦେଖି ଦେବି, ତା'ର ଅଧା ତେଜ-ପ୍ରଭାବ ମୋ ନିକଟକୁ ସ୍ୱତଃ ଚାଲିଆସିବ।"

ଋଷିମାନଙ୍କର ତ ନିଜ ସ୍ୱାର୍ଥସାଧନ କରିବାର ଥିଲା। ସମସ୍ତେ ଏକାସ୍ୱରରେ କହିଲେ—"ଭଲକଥା, ତାହା ହିଁ ହେବ। ଆପଣଙ୍କ ସମ୍ମୁଖକୁ ଯେ ବି ଆସିବ ସେ ହତପ୍ରଭ ହୋଇଯିବ।"

ଏହି ବର ପାଇ ନହୁଷ ଅତ୍ୟନ୍ତ ଆନନ୍ଦିତ ହେଲେ। ଏଥର ସେ ଦେଖିବା ମାତ୍ରେ ସବୁ ଋଷିମୁନି ହତପ୍ରଭ ହୋଇଗଲେ। ଏହା ଦେଖି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ। ସେ ଋଷିମାନଙ୍କ ସହିତ ସ୍ୱର୍ଗକୁ ଗଲେ। ସମସ୍ତ ଋଷିମୁନିମାନେ ମିଶି ଏକତ୍ରିତ ହୋଇ ବିଧିବଦ୍ଧ ଭାବରେ ତାଙ୍କୁ ଇନ୍ଦ୍ର ପଦରେ ଅଭିଷିକ୍ତ କଲେ। ସମସ୍ତେ ନୂତନ ଇନ୍ଦ୍ରଙ୍କ ଶାସନ ମାନିବାକୁ ଲାଗିଲେ।"

ସୂତ ମୁନି କହୁଛନ୍ତି—"ମୁନିମାନେ! ଏ ପ୍ରକାର ମହାରାଜ ନହୁଷ ନିଜ ପୁଣ୍ୟପ୍ରଭାବ ଫଳରେ ମନୁଷ୍ୟ ହୋଇ ମଧ୍ୟ ସ୍ୱର୍ଗର ରାଜା ହୋଇଗଲେ। ପରେ ଅହଂକାର ତଥା କାମାବେଗ ପାଇଁ ତାଙ୍କର ପତନ ହେଲା। ଏଇ ପ୍ରସଙ୍ଗ ମଧ୍ୟ ମୁଁ ଶୁଣେଇବି। ଆପଣମାନେ ସାବଧାନରେ ଶୁଣନ୍ତୁ।"

## ଛପ୍ପୟ

ଇନ୍ଦ୍ରାସନ ପୈ ବୈଠି ନୃପତି ମନ ମାଁହିଁ ସିହାବେଁ।<br>
ଦେବ ଉରଗ ଗନ୍ଧର୍ବ ସିଦ୍ଧ ସିର ଆଇ ଝୁକାବେ॥<br>
ଋଷି-ମୁନି ବିନତୀ କରେ ଅପ୍ସରା ଚଁବର ଡୁଲାବେଁ।<br>
ଶ୍ରୁତି ଗାବେଁ ଗନ୍ଧର୍ବ ନୃତ୍ୟ ସୁର-ବଧୂ ଦିଖାବେଁ॥<br>
ଅମୃତ, ଅସନ ଭୂଷଣ ପରମ, ଦିବ୍ୟ ଗନ୍ଧ ନନ୍ଦନ-ଭ୍ରମନ।<br>
ସୁର-ଲଲନନି କୋ ସତତ ସଁଗ, ପାଇ ଭୟୋ ଉନ୍ମତ୍ତ ମନ॥



Digitized by srujanika@gmail.com

# ମହାରାଜ ନହୁଷଙ୍କର ଉତ୍‌ଥାନ-ପତନ

ରାଜ୍ୟଂ ନୈଚ୍ଛଦ୍ ଯତିଃପିତ୍ରା ଦତ୍ତଂ ତତ୍ପରିଣାମବିତ୍ ।
ଯତ୍ର ପ୍ରବିଷ୍ଟଃ ପୁରୁଷ ଆତ୍ମାନଂ ନାବବୁଧ୍ୟତେ ॥
ପିତରି ଭ୍ରଂଶିତେ ସ୍ଥାନାଦିନ୍ଦ୍ରାଣ୍ୟା ଧର୍ଷଣାଦ୍ ଦ୍ୱିଜୈଃ ।
ପ୍ରାପିତେଽଜଗରତ୍ୱଂ ବୈ ଯଯାତିରଭବନ୍ନୃପଃ ॥

(ଶ୍ରୀ ଭା ୯ ସ୍କ ୧୮ ଅଧ୍ୟାୟ ୨, ୩ ଶ୍ଳୋକ)

### ଛପ୍‌ପୟ

ପାଇ ସ୍ୱର୍ଗ କୋ ରାଜ ନହୁଷ ମନ ଗର୍ବ ଭୟୋ ଅତି ।
ଲହ୍ୟୋ ଅତୁଲ ଐଶ୍ୱର୍ଯ୍ୟ ଭୂପ କୀ ଭଇ ଭ୍ରଷ୍ଟ ମତି ॥
ଶଚୀ ସମୀପ ସନ୍ଦେଶ ପଠାୟୋ ମୋଇ ଭଜୋ ଅବ ।
ସତୀ ଭଇ ଭୟଭୀତ ବୃହସ୍ପତି ନିକଟ ଗଇ ତବ ॥
କରି ସମ୍ମତ ଗୁରୁ ତେ ଶଚୀ, କହିବାୟୋ ତବ ବରୁଙ୍ଗୀ ।
ଋଷି ଢୋବେଁ ଶିବିକା ଜବହିଁ, ଇଚ୍ଛା ପୂରୀ କରୁଙ୍ଗୀ ॥

ସଂସାରିକ ବିଷୟଭୋଗରେ ଆଜିପର୍ଯ୍ୟନ୍ତ କାହାର ହେଲେ ତୃପ୍ତି ହୋଇନାହିଁ ନା ଭବିଷ୍ୟତରେ ହେବ ନାହିଁ । ଯେତେ ଯେତେ ସେସବୁ ମିଳୁଥିବ ଆଶା ସେତିକି ସେତିକି ବଢ଼ି ଚାଲିଥିବ । ସଂସାରର ସମସ୍ତ ବିଷୟଭୋଗ ଜଣେ ବ୍ୟକ୍ତିକୁ

---

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ନହୁଷଙ୍କର ଜ୍ୟେଷ୍ଠପୁତ୍ର ଯତି ରାଜ୍ୟ ଗ୍ରହଣ କଲେନାହିଁ । କାରଣ ସେ ସବୁର ପରିଣାମ ଜାଣିଥିଲେ । ସେ ସବୁରେ ପଶିଲେ ମଣିଷ ଆତ୍ମାନୁଭୂତି ପାଇପାରିବ ନାହିଁ । ଯେତେବେଳେ ଇନ୍ଦ୍ରାଣୀ ସାଥିରେ ସମ୍ଭୋଗ କରିବାର ଅଭିଳାଷ ଯୋଗୁଁ ବ୍ରାହ୍ମଣମାନଙ୍କଦ୍ୱାରା ଅଭିଶାପ ପାଇ ପିତା ନହୁଷ ଇନ୍ଦ୍ରପଦରୁ ଖସି ପଡ଼ିଲେ ଏବଂ ଅଜଗର-ଯୋନି ପ୍ରାପ୍ତ ହେଲେ, ସେତେବେଳେ ତାଙ୍କର ପୁତ୍ର ଯଯାତି ତାଙ୍କ ସ୍ଥାନରେ ରାଜା ହେଲେ ।"

Digitized by srujanika@gmail.com

ହୋଇଗଲେ, ସେ ଜଣେ ବ୍ୟକ୍ତି ଏ ସମସ୍ତ ଉପଭୋଗ କରି ମଧ୍ୟ ସନ୍ତୁଷ୍ଟ ହେବନାହିଁ । ତା'ଛଡ଼ା ଏଇ ସୀମିତ ଭୋଗ ବିଷୟକୁ ଏତେ ଇଚ୍ଛୁକ ବ୍ୟକ୍ତି ରହିଲେ ତୃପ୍ତି କିପରି ବା ସମ୍ଭବ ହେବ ? ଯଦି ଭୋଗର ପ୍ରଚୁରତାରେ ହିଁ ସୁଖ ମିଳୁଥାଆନ୍ତା ତେବେ ତ ଇନ୍ଦ୍ର ମଧ୍ୟ ସଦାସର୍ବଦା ସୁଖରେ ରହିବା ଉଚିତ । ସ୍ୱର୍ଗରେ ଇନ୍ଦ୍ରିୟ ତୃପ୍ତି ନିମିତ୍ତ ପ୍ରିୟ ବସ୍ତୁର ବା କଅଣ ଅଭାବ । ସ୍ୱର୍ଗରେ ପିଇବାପାଇଁ ମିଳେ ଅମୃତ, ସେଠାରେ କଳ୍ପବୃକ୍ଷର ପୁଷ୍ପର ସୁଗନ୍ଧ ଯୋଜନ ଯୋଜନ ଯାଏ ବ୍ୟାପ୍ତ ହୋଇଥାଏ, ପାଖୁଡ଼ା କେବେ ସଢ଼ିଯାଏ ନାହିଁ କିମ୍ବା ମଉଳିଯାଏ ନାହିଁ । ଘ୍ରାଣେନ୍ଦ୍ରିୟକୁ ଆମୋଦିତ କଲାପରି ଅନ୍ୟ ଆହୁରି ଅନେକ ଦିବ୍ୟପଦାର୍ଥ ସେଠାରେ ଭରପୂର ହୋଇ ରହିଛି । ଉର୍ବଶୀ, ରମ୍ଭା, ମେନକା, ତିଲୋତ୍ତମାଦି ଅନେକ ସୁନ୍ଦରୀ ସେଠାରେ ଅଛନ୍ତି ଯେଉଁମାନଙ୍କୁ ଦେଖିଲେ ଆଖି ପଡ଼ା ମଧ୍ୟ ପଡ଼ିବ ନାହିଁ, ଯେଉଁମାନଙ୍କ ସମ୍ମୁଖରେ ସଂସାରର ସମସ୍ତ ସୁନ୍ଦର ବସ୍ତୁ ତୁଚ୍ଛ ଜଣାପଡ଼ିବ । ଦର୍ଶନେନ୍ଦ୍ରିୟ ପରି ଶ୍ରବଣେନ୍ଦ୍ରିୟକୁ ତୃପ୍ତ କରିବା ନିମନ୍ତେ ସୁମଧୁର ସଙ୍ଗୀତର ସ୍ୱର ସେଠାରେ ଅବିରାମ ଚାଲିଥାଏ । ଗନ୍ଧର୍ବଗଣ ନିଜ ସଙ୍ଗୀତଦ୍ୱାରା ଏବଂ ଅପ୍ସରାମାନେ ସେମାନଙ୍କର ସୁମଧୁର କଣ୍ଠରେ କୋକିଳ ସଦୃଶ ସଦାସର୍ବଦା ସଙ୍ଗୀତର ଝଙ୍କାର ତୋଳୁଥାଆନ୍ତି । ସେମାନଙ୍କର ନୂପୁରର ସୁମଧୁର ଧ୍ୱନି ଶ୍ରବଣ କରିବାଦ୍ୱାରା ଲୋକଙ୍କୁ ଅମୃତ ସ୍ୱର୍ଗର ଅନୁଭବ ମିଳୁଥାଏ । ସେଇ ସୁନ୍ଦରୀ କାମିନୀଙ୍କର କୋମଳ ସୁରଭିତ ଦେହ ସମସ୍ତ ସ୍ୱର୍ଗବାସୀଙ୍କ ସ୍ପର୍ଶ ନିମନ୍ତେ ସୁଲଭ । ଚଢ଼ିବା ନିମନ୍ତେ ଇଚ୍ଛାଧୀନ ବିମାନ, ବୁଲିବାପାଇଁ ଚୈତ୍ର ରଥ, ବିଭ୍ରାଜକ ତଥା ନନ୍ଦନ ଆଦି କାନନ ବିଦ୍ୟମାନ । କେଉଁ ଇନ୍ଦ୍ରିୟର ଆହାର ସେଠାରେ ନାହିଁ ? ତଥାପି ମଧ୍ୟ ସେଠାରେ ମାନସିକ ବ୍ୟଥା ଅଛି । ପତନର ଭୟ ଲାଗି ରହିଛି । ଅତଏବ ଦୋଷ ସେଠାରେ ମଧ୍ୟ ବିଦ୍ୟମାନ । ତେଣୁ ସେଠାରେ ମଧ୍ୟ ସୁଖ ନାହିଁ । ଯେତେ ବିଷୟଭୋଗ ମିଳୁ ସେଥିରେ ସନ୍ତୋଷ ମିଳେ ନାହିଁ । ଉପଦେବ ଦେବତା ହେବା ନିମନ୍ତେ ଇଚ୍ଛା କରନ୍ତି । ଦେବତା ଇନ୍ଦ୍ର ହେବା ନିମନ୍ତେ ତଥା ଇନ୍ଦ୍ର ବ୍ରହ୍ମ-ସୁଖପାଇଁ ବ୍ୟାକୁଳ ହୁଅନ୍ତି, ଲାଭରୁ ଲୋଭ ବଢ଼େ । ଯଦି ମନରେ ଅସନ୍ତୋଷ ହେଉଛି ତେବେ ବ୍ରହ୍ମଲୋକକୁ ଗଲେ ସୁଦ୍ଧା ସୁଖଶାନ୍ତି ମିଳେ ନାହିଁ । ଯଦି ମନ ସନ୍ତୁଷ୍ଟ ରହୁଛି—ସ୍ୱର୍ଗ, ନର୍କ, ପୃଥିବୀ, ପାତାଳ, ବ୍ରହ୍ମଲୋକ ଯେଉଁଠି ରହିଲେ ମଧ୍ୟ ସୁଖ ମିଳିବ । ସନ୍ତୋଷ ହିଁ ଉତ୍ଥାନ, ଅସନ୍ତୋଷ ହିଁ ପତନ । ବ୍ରହ୍ମାଙ୍କୁ ଛାଡ଼ି ଗୋଟିଏ ଅବସ୍ଥାରେ କେହି ବି କେବେ ରହିପାରିବ ନାହିଁ । ହୁଏତ ତା'ର ଉନ୍ନତି ହେବ କିମ୍ବା ଅବନତି । ଉତ୍ଥାନ-ପତନର ଏ ନିୟମ ବ୍ରହ୍ମଲୋକ ପର୍ଯ୍ୟନ୍ତ ଲାଗିରହିଛି ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ବର୍ତ୍ତମାନ ମୁଁ ମହାରାଜ ନହୁଷଙ୍କର ଚରିତ ସଂକ୍ଷେପରେ କହି ଏହା ସମାପ୍ତ କରିବି । ହିଁ ତେବେ ଶୁଣ, ମୁନିବୃନ୍ଦ ତଥା ଦେବତାମାନଙ୍କର ଚେଷ୍ଟାରେ ନହୁଷ ଇନ୍ଦ୍ର ହୋଇଗଲେ । କେଉଁଠି ସେ ପୃଥିବୀର

Digitized by srujanika@gmail.com

ରାଜା ଥିଲେ । ଆଉ କେଉଁଠି ଏବେ ସେ ସ୍ୱର୍ଗର ଅଧୀଶ୍ୱର ଇନ୍ଦ୍ର ! ଅମୃତପାନ କରି ନନ୍ଦନକାନନରେ ଅପ୍‌ସରାମାନଙ୍କ ସହ ସ୍ୱଚ୍ଛନ୍ଦରେ ବିହାର କରି ବିମାନରେ ଚଢ଼ି ମନଇଚ୍ଛା ବୁଲି ସେ ସମସ୍ତ କଟାଇବାରେ ଲାଗିଲେ । ସ୍ୱର୍ଗର ଶ୍ରେଷ୍ଠ ସୁନ୍ଦରୀଗଣ ସଦାସର୍ବଦା ତାଙ୍କର ସେବାରେ ଲାଗିରହୁଥିଲେ । ମଧୁରରୁ ମଧୁରତମ ସଙ୍ଗୀତ ସଦା-ସର୍ବଦା ଲାଗି ରହୁଥିଲା । ସମସ୍ତେ ତାଙ୍କ ସେବାରେ ଲାଗି ରହୁଥିଲେ । ଋଷିମୁନିମାନେ ଆସି ତାଙ୍କର ସ୍ତୁତି କରୁଥିଲେ । ଦେବତା ଏବଂ ଅନ୍ୟ ଉପଦେବ ସମସ୍ତେ ଆସି ତାଙ୍କ ସମ୍ମୁଖରେ ଅଞ୍ଜଳିବଦ୍ଧ ହୋଇ ଛିଡ଼ା ହେଉଥିଲେ । ତାଙ୍କ ସମ୍ମୁଖରେ ସମସ୍ତେ ତେଜହୀନ ହୋଇ ଯାଉଥିଲେ । ନୂତନ ଇନ୍ଦ୍ର ଯାହା ଚାହୁଁଥିଲେ କରୁଥିଲେ । ସେ କାହାଠାରୁ ସମ୍ମତି ଆଣୁ ନଥିଲେ । ସେ ଋଷିମୁନିମାନଙ୍କଦ୍ୱାରା ନିଜର ପାଲିଙ୍କି ଉଠାଉଥିଲେ । ଅନେକ ପ୍ରକାରର ସ୍ୱେଚ୍ଛାଚାର ମଧ୍ୟ କରୁଥିଲେ ।

ଯେଉଁମାନେ ପ୍ରଥମରୁ ଇନ୍ଦ୍ରଙ୍କର ଆଦର ପାଇଥିଲେ ସେମାନଙ୍କୁ ନୂତନ ଇନ୍ଦ୍ର ଆଦୌ ପଚାରୁ ନଥିଲେ । ଯେଉଁମାନଙ୍କୁ ଦାନଦକ୍ଷିଣା ମାନସମ୍ମାନ ସବୁକିଛି ମିଳୁଥିଲା, ନହୁଷ ସେମାନଙ୍କୁ ଇଚ୍ଛାକଲେ କିଛି ଦେଉଥିଲେ କିମ୍ବା ନଚାହୁଁଥିଲେ କାନଧରି ବାହାର କରି ଦେଉଥିଲେ । ପ୍ରଭୁତ୍ୱପାଇଁ ଲୋକ ଅହଙ୍କାରୀ ହୋଇଯିବା ସ୍ୱାଭାବିକ । ନହୁଷ ମଧ୍ୟ ସ୍ୱର୍ଗକୁ ପାଇ ଗର୍ବ ଅହଙ୍କାରରେ ପାଗଳ ହୋଇଗଲେ । ଧିରେ ଧିରେ ଋଷିମୁନିଙ୍କ ମଧ୍ୟରେ ବି କାନ କୁହାକୁହି ହେବା ଆରମ୍ଭ ହୋଇଗଲା । ଯେତେବେଳେ କୌଣସି ଶାସନ ପ୍ରତି ଜନତା ଅସନ୍ତୁଷ୍ଟ ହୋଇଯାଆନ୍ତି ସେତେବେଳେ ରାଜା ବିରୁଦ୍ଧରେ ଗୁପ୍ତରେ ସଭାସମିତି ଆଲୋଚନା ହୋଇଥାଏ । ଲୋକେ ଶାସନ ବିରୁଦ୍ଧରେ ଗୁପ୍ତ ଷଡ଼ଯନ୍ତ୍ର ସବୁ କରିଥାନ୍ତି । ଦେବତା ତଥା ଋଷିମୁନିମାନଙ୍କର ମଧ୍ୟ ଏକ ଗୁପ୍ତ ସଭା ଦେବଗୁରୁ ବୃହସ୍ପତିଙ୍କ ଘରେ ହେଲା । ସେ ସଭା ଏତେ ସନ୍ତର୍ପଣରେ ହେଲା ଯେ ନୂଆ ଇନ୍ଦ୍ରଙ୍କୁ ତା'ର ସୂଚନା ସୁଦ୍ଧା କିଛି ମିଳିପାରିଲା ନାହିଁ । ଯଦି ତାଙ୍କୁ ଜ୍ଞାତ ହୋଇଥାଆନ୍ତା ଏବଂ ଅଧାରେ ସେ ସେଠାରେ ପହଞ୍ଚି ଯାଇଥାଆନ୍ତେ ତେବେ ଏମାନେ ସମସ୍ତେ ହତପ୍ରଭ ହୋଇଯାଇ ଥାଆନ୍ତେ । ସମିତିରେ ଆଲୋଚନା ହେଲା, "ଅସ୍ଥାୟୀ ଇନ୍ଦ୍ର ତ ବହୁତ ଅନ୍ୟାୟ କରିବାକୁ ଆରମ୍ଭ କଲେଣି । ନିଜ ସମ୍ମୁଖରେ ଅନ୍ୟକୁ ଗୁରୁତ୍ୱ କିଛି ଦେଉ ନାହାଁନ୍ତି । ପ୍ରସଙ୍ଗାନୁସାରେ କହୁଲେଣି ମଧ୍ୟ ଏବେ ମୋତେ ଆଉ ଇନ୍ଦ୍ରାସନରୁ ହଟାଇବ କିଏ ? ଯଦି ଏ ଇନ୍ଦ୍ରାସନ ଉପରେ ସ୍ଥାୟୀ ଅଧିକାର ସ୍ଥାପନ କରିବେ ତେବେ ତ ବଡ଼ ଅନର୍ଥ ହେବ । ଏଥି ନିମନ୍ତେ କିଛି ଉପାୟ କରିବା ଦରକାର ।"

ଜଣେ ମୁନି କହିଲେ—"କ'ଣ ଉପାୟ କରାଯିବ ? ଆମେ ସବୁ ତ ଏକଥା ଜାଣି ନଥିଲେ ଯେ ନହୁଷ ଏପରି ହୋଇଯିବ । ପୃଥିବୀ ଉପରେ ତ ଏ ଅତ୍ୟନ୍ତ

Digitized by srujanika@gmail.com

ଧର୍ମାତ୍ମା ଥିଲା । ଇନ୍ଦ୍ର ହେବାମାତ୍ରେ ହିଁ ଅହଙ୍କାରରେ ପାଗଳ ହୋଇଗଲା । ତାକୁ ପ୍ରଥମରୁ ଆମେସବୁ ବର ଦେଇ ନିଜ ହାତକୁ ମଧ୍ୟ କାଟି ଦେଇଛେ । ବର୍ତ୍ତମାନ ଆଉ କ'ଣ କରି ହେବ ?"

ବୃହସ୍ପତି କହିଲେ—"କେବଳ ନିରାଶା ପ୍ରକାଶ କଲେ କାମ ତ ଚଳିବ ନାହିଁ । କିଛି ନା କିଛି ଉପାୟ ତ କରିବା ପାଇଁ ପଡ଼ିବ । କେଉଁ ମୁନିଋଷି ଓ ଦେବତାମାନେ ଅଛନ୍ତି, ତା' ଅନୁସନ୍ଧାନ କରି ତା'ପରେ ତା' ବିପକ୍ଷରେ କେତେଜଣ ଅଛନ୍ତି ବାହାର କର ।"

ସମସ୍ତେ କହିଲେ—"ସମସ୍ତେ ଅସନ୍ତୁଷ୍ଟ ହେଉଛନ୍ତି । ଉପର ମନରେ ସ୍ତୁତି କଲେ ବି ଆନ୍ତରିକଭାବେ କେହି ଜଣେ ହେଲେ ଇନ୍ଦ୍ରଙ୍କ ଉପରେ ସନ୍ତୁଷ୍ଟ ନୁହନ୍ତି । କାରଣ ସମସ୍ତେ ତା'ଦ୍ୱାରା ଅପମାନିତ ।"

ବୃହସ୍ପତି ପଚାରିଲେ—"ଆଚ୍ଛା ଏ ଅପ୍‌ସରାଗଣ କ'ଣ ତା'ଉପରେ ସନ୍ତୁଷ୍ଟ ?"

କେତେଜଣ ଅପ୍‌ସରା ମଧ୍ୟ ସେ ଗୁପ୍ତ ସଭାରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଉର୍ବଶୀ କହିଲା—"ମହାରାଜ ! କିଛି ପଚାରନ୍ତୁ ନାହିଁ, ସେ କଥା । ଆପଣମାନେ ତ ଗୋଟିଏ ମାଙ୍କଡ଼କୁ ଖଣ୍ଡା ଧରାଇ ଦେଇଛନ୍ତି । ଆମେ ସ୍ୱର୍ଗରେ ସମସ୍ତଙ୍କର ମନୋରଞ୍ଜନ କରୁଥିଲୁ, ଆମ ସମସ୍ତଙ୍କୁ ସମସ୍ତଙ୍କଠାରୁ ଶ୍ରଦ୍ଧା ସମ୍ମାନ ମିଳୁଥିଲା । ଏ ନୂଆ ଇନ୍ଦ୍ର ତ ଆମକୁ ଦାସୀ ବୋଲି ଭାବୁଛନ୍ତି । ଆମ ହାତରେ ଏପରି ନୀଚକାମ କରାଉଛନ୍ତି ଯେ ଆମ ଦାସୀମାନଙ୍କର ଦାସୀମାନେ ମଧ୍ୟ ସେପରି କାମ କେବେହେଲେ କରୁ ନଥିବେ ।"

ବୃହସ୍ପତି କହିଲେ—"ତେବେ ତ ତୁମେମାନେ ଚାହିଁଲେ ତା'କୁ ପଦଚ୍ୟୁତ କରାଇ ପାରିବ ।"

ଅପ୍‌ସରାଗଣ କହିଲେ—"ମହାରାଜ ! ଆମେ ତ ଅବଳା ଆମେ ବା କଅଣ କରିପାରିବୁ ? ଆପଣମାନେ ତେଜସ୍ୱୀ, ଆପଣ ଯାହା ଚାହିଁବେ, ତାହା କରି ପାରିବେ ।"

ଦେବଗୁରୁ କହିଲେ—"ଆମେ ସବୁ କୋଟି କୋଟି ବର୍ଷ ତପସ୍ୟା କରି ତେଜ-ତପ ସଂଗ୍ରହ କରୁ । କିନ୍ତୁ ତୁମେ ଚାହିଁଲେ ମୁହୂର୍ତ୍ତିକରେ ହିଁ ସମସ୍ତଙ୍କୁ ତେଜଶୂନ୍ୟ କରିଦେବ । ତୁମକୁ ଅବଳା କହୁଥିବା ବ୍ୟକ୍ତି ସ୍ୱୟଂ ହିଁ ଦୁର୍ବଳ । ତୁମେ ତ ଏପରି ସବଳା ଯେ କ୍ରୋଧୀତ ହେଲେ ଯାହାକୁ ଚାହିଁବ ତାକୁ ପାତାଳକୁ ପଠେଇ ଦେଇ ପାରିବ ।"

Digitized by srujanika@gmail.com

ଅପ୍‌ସରାଗଣ କହିଲେ—"ଆପଣ ଆମକୁ ଯେଉଁ ପ୍ରକାର ଆଦେଶ ଦେବେ ଆମେ ତାହା ତତ୍‌କ୍ଷଣାତ ପାଳନ କରିବୁ ।"

ବୃହସ୍ପତି କହିଲେ—"ଆଚ୍ଛା, ତୁମେ ଗୋଟିଏ କାମ କର, ପ୍ରତିଦିନ ତୁମେ ତା' ସମ୍ମୁଖରେ ଶଚୀ ଦେବୀଙ୍କର ସୌନ୍ଦର୍ଯ୍ୟର ପ୍ରଶଂସା କର, ଯାହାଦ୍ୱାରା ତା' ମନରେ ଶଚୀଙ୍କଠାରୁ ସୁନ୍ଦରୀ ନାରୀ ସଂସାରରେ ଆଉ କେହି ନାହିଁ ବୋଲି ବିଶ୍ୱାସ ହୋଇଯିବ । ପବନ ଦେବତା ପଚାରିଲେ—"ଏପରି କଲେ କ'ଣ ହେବ ?"

ଗୁରୁ ବୃହସ୍ପତି କହିଲେ—"ଏହାଦ୍ୱାରା ଯାହା ହେବ ତା' ନିଜେ ଆଖିରେ ଦେଖିବ ।"

ଉର୍ବଶୀ କହିଲା—"ଭଲକଥା, ଆଜିଠାରୁ ଆମେ ସେଇୟା ହିଁ କରିବୁ; ସେଇପରି ପରିବେଶ ସୃଷ୍ଟି କରିବୁ ।" ଏହିପରି ସ୍ଥିର ହେବା ପରେ ଗୁପ୍ତସଭା ସମାପ୍ତ ହେଲା ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ସଂସାରରେ ଯଦିଓ କୌଣସି ନୂତନତ୍ୱ ନାହିଁ ତଥାପି ବି ପ୍ରାଣୀମାନେ ନୂତନତା ଚାହାଁନ୍ତି । ଯେଉଁ ବସ୍ତୁ ଅତି ସହଜରେ ମିଳିଯାଏ ତାକୁ ବିଶେଷ ମହତ୍ତ୍ୱ ଦିଆଯାଏ ନାହିଁ । ଯେଉଁ ବସ୍ତୁ ରହସ୍ୟମୟ ତଥା ଦୁର୍ଲ୍ଲଭ ତା' ପ୍ରତି ମନ ବିଶେଷ ଭାବେ ଆକୃଷ୍ଟ ହୋଇଥାଏ । ତେଣୁ ଦେବତାମାନଙ୍କୁ ପରୋକ୍ଷପ୍ରିୟ କୁହାଯାଏ । ଭଗବାନ ଯଦି ଏମିତି ସମସ୍ତଙ୍କୁ ମିଳି ଯାଉଥାଆନ୍ତେ ତେବେ ଲୋକମାନଙ୍କର ତାଙ୍କ ପ୍ରତି ଏତେ ଅଧିକ ଲାଳସା ରହନ୍ତା ନାହିଁ । ନହୁଷଙ୍କର ସେବାରେ ସ୍ୱର୍ଗର ସମସ୍ତ ଅପ୍‌ସରାଗଣ ଯୋଡ଼ହସ୍ତ ହୋଇ ଛିଡ଼ା ହୁଅନ୍ତି । ଯେତେବେଳେ ସେ ପୃଥିବୀ ଉପରେ ଥିଲେ ତାଙ୍କ ନିକଟରେ ସ୍ୱର୍ଗର ଅପ୍‌ସରା ଥିଲା ଏକ କୌତୁହଳର ବସ୍ତୁ । ସେମାନଙ୍କ ପ୍ରତି ତାଙ୍କର ଆଦର ସମ୍ମାନ ଥିଲା । ବର୍ତ୍ତମାନ ପ୍ରତିଦିନ ସେମାନଙ୍କୁ ଦେଖିବା ଫଳରେ ସେମାନେ ତାଙ୍କ ନିକଟରେ ଅତି ସାଧାରଣ ହୋଇ ଯାଇଥିଲେ ତଥାପି ମଧ୍ୟ ସେମାନେ ଥିଲେ ଅନୁପମ ସୁନ୍ଦରୀ । ଏବେ ସେମାନେ ନିଜ ସଙ୍ଗୀତ ମାଧ୍ୟମରେ ପ୍ରତିଦିନ ଶଚୀଙ୍କର ପ୍ରଶଂସା କରିବାକୁ ଲାଗିଲେ । ବଢ଼ାଇ ଚଢ଼ାଇ ସେମାନେ ତାଙ୍କର ସୌନ୍ଦର୍ଯ୍ୟର ପ୍ରଶଂସା କରିବାକୁ ଲାଗିଲେ ।"

ଦିନେ ନହୁଷ ଉର୍ବଶୀଙ୍କୁ କହିଲେ—ମୁଁ ତ ସଦାସର୍ବଦା ଶୁଣି ଆସିଛି ଯେ ତୁମର ଉତ୍ପତ୍ତି ପ୍ରଭୁ ନାରାୟଣଙ୍କ ଉରୁରୁ ହିଁ ହୋଇଛି । ତୁମେ ସଂସାରରେ ସର୍ବଶ୍ରେଷ୍ଠ ସୁନ୍ଦରୀ । କିନ୍ତୁ ଦେଖୁଛି ଯେ ତୁମେ ଶଚୀଙ୍କ ସୌନ୍ଦର୍ଯ୍ୟକୁ ସଦାସର୍ବଦା ପ୍ରଶଂସା କରୁଛ । ସୁନ୍ଦରୀ ସ୍ତ୍ରୀମାନେ ତ ଅନ୍ୟ କୌଣସି ସ୍ତ୍ରୀର ସୌନ୍ଦର୍ଯ୍ୟର ଗୁଣଗାନ କଦାଚିତ୍ କରନ୍ତି ନାହିଁ !"

Digitized by srujanika@gmail.com

ଉର୍ବଶୀ ହାତଯୋଡ଼ି କହିଲା—"ପ୍ରଭୁ ! ଯେଉଁ ସ୍ତ୍ରୀ ଗର୍ବୀ ଅହଂକାରୀ ତଥା ଈର୍ଷା ପରାୟଣା ହୋଇଥାଆନ୍ତି ସେମାନେ ନିଜ ସମ୍ମୁଖରେ ଅନ୍ୟ କାହାରିକୁ ସୁନ୍ଦରୀ ବୋଲି କହନ୍ତି ନାହିଁ । ସଦାସର୍ବଦା ଅନ୍ୟର ଦୋଷ ଦେଖନ୍ତି । କିନ୍ତୁ ସତ୍ୟକଥା ଗୋପନ କରିବା ମହାପାପ । ଶଚୀ ଦେବୀଙ୍କର ମୋ ସହିତ ସୌନ୍ଦର୍ଯ୍ୟର କି ତୁଳନା କରିଯାଇପାରେ ! ମୁଁ ବାରବନିତା କିନ୍ତୁ ସେ ସତୀସାଧ୍ୱୀ । ମୁଁ ତ ସର୍ବଭୋଗ୍ୟା, କିନ୍ତୁ ତାଙ୍କୁ ସ୍ପର୍ଶ କରିବାର କ୍ଷମତା କେବଳ ଦେବେନ୍ଦ୍ରଙ୍କର ବ୍ୟତୀତ ଅନ୍ୟକାହାର ନାହିଁ । ଅମ୍ଭମାନଙ୍କ ଭିତରୁ କେହି ଜଣେ ହେଲେ ଯୁକା ତାଙ୍କ ପାଦର ନଖ-ସହି ସମାନ ହେବ ନାହିଁ । ସେ ରୂପ ସୌନ୍ଦର୍ଯ୍ୟର ଜୀବନ୍ତ ପ୍ରତିମା । ତାଙ୍କର ଦର୍ଶନ ମଧ୍ୟ ଭାଗ୍ୟବଳରେ ହିଁ ହୋଇଥାଏ । ରତି ତ ତାଙ୍କର ଦାସୀ ମାତ୍ର । ଆମକୁ କେବେ ଯଦି ତାଙ୍କର ପାଦ ଧୋଇବାର ସୁଯୋଗ ମିଳିଯାଏ ତେବେ ମଧ୍ୟ ଆମେ ନିଜକୁ କୃତାର୍ଥ ମନେକରୁ । ଆପଣ କ'ଣ କେବେ ତାଙ୍କର ଦର୍ଶନ କରି ନାହାନ୍ତି ?"

ନହୁଷ ହସି ହସି କହିଲେ—"ହଁ ଯେବେଠାରୁ ମୁଁ ଏଠାକୁ ଆସିଲିଣି, ସେ ତ ଇଆଡ଼େ କେବେ ବି ଆସନ୍ତି ନାହିଁ !"

ଉର୍ବଶୀ ହସିଦେଇ କହିଲା—"ସେ କ'ଣ ଖାଲି ଏମିତି ବାହାରକୁ ଆସିବେ, ମହାରାଜ ଇନ୍ଦ୍ରଙ୍କ ବିନା ତ ସେ ବାହାରକୁ ବାହାରନ୍ତି ନାହିଁ । ଆପଣ ତାଙ୍କୁ ଦେଖିଥିଲେ ଆମେ ସବୁ ଆପଣଙ୍କ ନିକଟରେ ମୂଲ୍ୟହୀନ ହୋଇଯାଇ ଥାଆନ୍ତୁ !"

ନହୁଷଙ୍କ ମନରେ ଆଘାତ ହେଲାପରି ମନେ ହେଲା । ସେ ଭାବିଲେ— "ମୋର ଇନ୍ଦ୍ର ହେବା ବ୍ୟର୍ଥ ହୋଇଗଲା । ଯଦି ଶଚୀ ମୋ ନିକଟକୁ ନ ଆସୁଛନ୍ତି, ତେବେ ଶଚୀଙ୍କ ବିନା ମୁଁ ଇନ୍ଦ୍ର କିପରି ହେଲି ?" ଶଚୀଙ୍କୁ ପାଇବା ନିମନ୍ତେ ତାଙ୍କ ମନରେ ପ୍ରବଳ ଇଚ୍ଛା ଜାଗ୍ରତ ହେଲା । ସେ ଶଚୀଙ୍କର ଅନେକ କାଳ୍ପନିକ ଚିତ୍ର କରନ୍ତି କିନ୍ତୁ ତାଙ୍କୁ କୌଣସି ଥରେ ସନ୍ତୋଷ ମିଳେ ନାହିଁ ।"

ତା' ପରଦିନ ନହୁଷ ବାୟୁ ଦେବଙ୍କୁ ଡାକି କହିଲେ—"ପବନ ! ତୁମେ ତ ସବୁ ଦିଗକୁ ଯାଉଛ । ବର୍ତ୍ତମାନ ଯାଇ ରାଣୀ ଶଚୀଦେବୀଙ୍କ ନିକଟରେ ମୋର ଖବର ପହଞ୍ଚାଅ । ତାଙ୍କୁ କୁହ—"ମୁଁ ଇନ୍ଦ୍ର, ତାଙ୍କର ମୋତେ ହିଁ ପୂଜା କରିବା ଉଚିତ । ଯେ ବି ଇନ୍ଦ୍ର ହେବ ଶଚୀଙ୍କୁ ତାଙ୍କର ରାଣୀ ହେବାକୁ ହିଁ ହେବ ।"

ପବନ ଦେବ ଆଜ୍ଞାପାଳନ କରି ଶଚୀ ଦେବୀଙ୍କ ନିକଟକୁ ଗଲେ ଏବଂ ନୂତନ ଇନ୍ଦ୍ରଙ୍କର ଆଦେଶ ତାଙ୍କୁ ନମ୍ରତା ସହକାର ଶୁଣାଇ ଦେଲେ । ଶୁଣିବାମାତ୍ରେ ସତୀ ଶଚୀ ଆଶ୍ଚର୍ଯ୍ୟ ହୋଇଗଲେ । ଏକେ ତ ପତି ବିଚ୍ଛେଦରେ ସେ ଆଗରୁ ଦୁଃଖିନୀ

Digitized by srujanika@gmail.com

ଥିଲେ । ତା’ ସହିତ ଏବେ ଏ ନୂଆ ବିପଦ ତାଙ୍କ ଉପରକୁ ଆସିଗଲା । ସେ ବାୟୁଦେବଙ୍କୁ କହିଲେ—‘ ପବନ ଦେବ ! ତୁମେ ତ ସବୁଜାଣ । ମୁଁ ମୋର ସ୍ୱାମୀଙ୍କ ଭିନ୍ନ ଅନ୍ୟକାହାକୁ ଆଖି ଉଠାଇ ଚାହିଁ ପାରିବି ନାହିଁ । ତୁମେ ନୂଆ ରାଜାଙ୍କୁ କହି ଦିଅ—“ମୋ ଧର୍ମକୁ ସେ ରକ୍ଷା କରନ୍ତୁ । ଏପରି ଅନ୍ୟାୟ କାର୍ଯ୍ୟ ତାଙ୍କ ପକ୍ଷରେ ଉଚିତ ନୁହେଁ । ସେ ତ କିଛିଦିନ ପାଇଁ ହିଁ ଇନ୍ଦ୍ର ହୋଇଛନ୍ତି । ସେ ସ୍ୱର୍ଗରେ ଏପରି ଅସଦାଚରଣ ନ କରନ୍ତୁ ।”

ବାୟୁଦେବ ଯାଇ ଏ ସମାଚାର ନହୁଷଙ୍କୁ କହିଦେଲେ । ନହୁଷ କହିଲେ—“ମୁଁ ତ ଧର୍ମର କଥା ହିଁ କହୁଛି—ଯେ ଇନ୍ଦ୍ର ହେବ ଇନ୍ଦ୍ରାଣୀ ତା’ର ହିଁ ପତ୍ନୀ ହେବେ । ଶଚୀଙ୍କୁ ମୋତେ ସ୍ୱୀକାର କରିବାପାଇଁ ହିଁ ପଡ଼ିବ । ଏବେ ତ ମୁଁ ଭଲରେ ଭଲରେ କହୁଛି । ଯଦି ସେ ମୋତେ ସ୍ୱୀକାର ନ କରନ୍ତି ତେବେ ମୁଁ ବଳ-ପ୍ରୟୋଗ କରିବାପାଇଁ ବାଧ୍ୟ ହେବି ।”

ପବନଦେବ ଏ ସମାଚାର ଯାଇ ଶଚୀଙ୍କୁ ଶୁଣାଇ ଦେଲେ । ଏହାଶୁଣି ସେ ବିବ୍ରତ ହୋଇ ପଡ଼ିଲେ । ସାଙ୍ଗେ ସାଙ୍ଗେ ସେ ଗୁରୁ ବୃହସ୍ପତିଙ୍କ ନିକଟରେ ସବୁ କଥା କହି ତାଙ୍କର ସରଣ ନେଇଲେ । ଗୁରୁ ପତ୍ନୀ ତାରା ତାଙ୍କର ଯଥେଷ୍ଟ ଆଦରଯତ୍ନ କଲେ । ଶଚୀ କାନ୍ଦି କାନ୍ଦି ଗୁରୁଙ୍କ ଚରଣରେ ପ୍ରଣାମ କଲେ ଏବଂ ଅତ୍ୟନ୍ତ ବିକଳ ହୋଇ କହିଲେ—“ଭଗବନ୍ ! ଗୁରୁଦେବଙ୍କର ଅପମାନର ଫଳ ଆମେ ଯଥେଷ୍ଟ ପାଇଗଲୁଣି । ମୋର ସ୍ୱାମୀ ଇନ୍ଦ୍ରାସନ ଛାଡ଼ି ବ୍ରହ୍ମହତ୍ୟା ଭୟରେ ଆତ୍ମଗୋପନ କରିଛନ୍ତି । ମୁଁ ତାଙ୍କ ବିୟୋଗ-ଦୁଃଖକୁ ସହି ଏଠାରେ ଦିନ କାଟୁଛି । ଯେପରି ହେଉ ପଛେ ବର୍ତ୍ତମାନଯାଏ ମୁଁ ମୋର ଧର୍ମରକ୍ଷା କରି ଆସିଛି । କିନ୍ତୁ ବର୍ତ୍ତମାନ ଦେଖୁଛି ମୋର ଆଉ ଧର୍ମରକ୍ଷା ଅସମ୍ଭବ ହୋଇଯିବ । ଏଇ ନୂଆ ଇନ୍ଦ୍ର କାମୁକ ହୋଇଗଲଣି । ତା’ର ବିଷୟାସକ୍ତି ସୀମା ଲଂଘନ କଲାଣି । ସ୍ୱର୍ଗୀୟ ଅପ୍ସରାମାନଙ୍କ ପାଖରୁ ମଧ୍ୟ ତାଙ୍କୁ ତୃପ୍ତି ମିଳୁ ନାହିଁ । ସେ ମୋତେ ତା’ର ବିଷୟ ଭୋଗର ସାଧନ କରିବାପାଇଁ ଇଚ୍ଛୁକ । ପ୍ରଭୁ ! ଆପଣଙ୍କ ଉପସ୍ଥିତିରେ ଆମର ଏପରି ଦୁର୍ଗତି ହେବ, ଏତ ଆପଣଙ୍କ ଅନୁରୂପ କଥା ନୁହେଁ ।”

ବୃହସ୍ପତି କହିଲେ—“ଝିଅ ! ତୁ ଚିନ୍ତା କର ନାହିଁ । ତା’ର ପାପ ମାଠିଆ ପୂର୍ଣ୍ଣ ହେବାକୁ ବସିଲାଣି । ତା’ର ସୁକୃତ ସମାପ୍ତ ହୋଇ ଗଲାଣି । ତା’ର ସ୍ୱର୍ଗରୁ ଖସିଯିବାର ଦିନ ନିକଟ ହୋଇ ଗଲାଣି । ଏ ସବୁ ମୋର ପ୍ରରୋଚନାରେ ହୋଇଛି । ତୁ ତା’ ନିକଟକୁ ଖବର ପଠା ଯେ କାଲି ମଧ୍ୟାହ୍ନରେ ଆପଣ ଋଷି ମୁନିମାନଙ୍କ ଦ୍ୱାରା ବୁହା ଯାଉଥିବା ପାଲିଙ୍କିରେ ବସି ନିର୍ଦ୍ଦିଷ୍ଟ ସମୟରେ ମୋ ମହଲକୁ ଆସି ଯାଆନ୍ତୁ, ମୁଁ ଆପଣଙ୍କର ସେବା କରିବି ।”

Digitized by srujanika@gmail.com

ଗୁରୁଙ୍କ ଆଜ୍ଞାକୁ ଶଚୀଦେବୀ ଶିରୋଧାର୍ଯ୍ୟ କଲେ । ପବନ ଦେବଙ୍କ ହାତରେ ଏହି ଖବର ସେ ନହୁଷଙ୍କ ନିକଟକୁ ପଠାଇ ଦେଲେ । ଏ ଖବର ପାଇ ନହୁଷ ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କର ମନୋକାମନା ପୂର୍ଣ୍ଣ ହୋଇଗଲା ଭାବି ତାଙ୍କୁ ରାତସାରା ନିଦ ବି ହେଲା ନାହିଁ । ପ୍ରାତଃକାଳରେ ହିଁ ସେ ସମସ୍ତ ଋଷି ମୁନିମାନଙ୍କୁ ଡକାଇଲେ । ସମସ୍ତେ ଭାବିଲେ ନୂଆ ଇନ୍ଦ୍ର କିଛି ଦାନଦକ୍ଷିଣା ଦେବାପାଇଁ ବୋଧେ ଡକାଇଛନ୍ତି । ତେଣୁ ସମସ୍ତ ଋଷି ମୁନିମାନେ ନିଜ ଶିଷ୍ୟ ତଥା ପୁତ୍ରମାନଙ୍କ ସହ ଆସି ପହଞ୍ଚିଲେ । କେତେଜଣ ଋଷି ଜାଣିଥିଲେ ଯେ ଆଜି ନୂଆ ଇନ୍ଦ୍ରଙ୍କର ବିଦାୟ ସଭା ହେବ । କିନ୍ତୁ ଯେଉଁମାନେ ଗୁପ୍ତ ସଭାର ସଭ୍ୟ ନ ଥିଲେ ସେମାନେ ଏ ବିଷୟରେ ଅନଭିଜ୍ଞ ଥିଲେ ।

ଋଷିମାନଙ୍କର ବରଦାନ ଥିଲା—ନହୁଷଙ୍କ ସମ୍ମୁଖକୁ ଯେ ଆସିବ ତା'ର ତେଜ ନଷ୍ଟ ହୋଇଯିବ ବୋଲି । ତେଣୁ ତାଙ୍କ ଆଗରେ ସବୁ ଋଷିମୁନିମାନେ ହତପ୍ରଭ ହୋଇ ଯାଉଥିଲେ । ସମ୍ମୁଖରେ ଏକ ବିରାଟ ଭାରପାଲିଙ୍କି ରଖାଯାଇଥିଲା । ନହୁଷ ଆଜି ନିଜକୁ ଅତ୍ୟଧିକ ଆକର୍ଷକ କରି ସଜାଇଥିଲେ, ଯାହାଦ୍ୱାରା ଶଚୀ ତାଙ୍କୁ ଦେଖି ଦେଖି ଟଳି ପଡ଼ିବେ । ନିଜକୁ ସଜାଇବାରେ ତାଙ୍କର ଅନେକ ସମୟ ଚାଲିଗଲା । ସେ ନିଜ ହାତରେ ଥିବା ଘଣ୍ଟିକା ଯନ୍ତ୍ରକୁ ଦେଖିଲେ, ନିର୍ଦ୍ଦିଷ୍ଟ ସମୟ ହେବାପାଇଁ ଆଉ କିଛି ସମୟ ଅବଶିଷ୍ଟ ଥିଲା । ସେ ଶୀଘ୍ର ଶୀଘ୍ର ଶିବିକାରେ ବସିଗଲେ ଏବଂ ଋଷିମାନଙ୍କୁ କଡ଼ାସ୍ୱରରେ କହିଲେ—"ପାଲିଙ୍କି ଉଠାଅ, ଶଚୀରାଣୀଙ୍କ ପ୍ରାସାଦ ପାଖକୁ ମୋତେ ଶୀଘ୍ର ନେଇଯାଅ ।"

ବ୍ରାହ୍ମଣମାନଙ୍କ ଆଶା ସବୁ ପାଣି ଫାଟିଗଲା । ଆମେ ସ୍ୱୟଂ ପାଲିଙ୍କିରେ ବସି ଯାଉଥିଲୁ ଅଥଚ ଆଜି ଆମକୁ ବାହକର କାର୍ଯ୍ୟ କରିବାପାଇଁ ପଡ଼ୁଛି । କିନ୍ତୁ ସେମାନେ ଏ କଥା କହିବେ କାହାକୁ ? ଏ ତ ରାଜା ଦେବେନ୍ଦ୍ର । ବିନା ପ୍ରତିବାଦରେ ଚୁପଚାପ୍ ପାଲିଙ୍କି ଉଠାଇ ନେଇ ଚାଲିଲେ । ମହାମୁନି ଅଗସ୍ତ୍ୟ ତ ଏ ଷଡ଼ଯନ୍ତ୍ରର ମୁଖ୍ୟ ଥିଲେ । ସେ ତାଙ୍କ ସମ୍ମୁଖକୁ ଆସିଲେ ନାହିଁ, ଜଣେ ମୁନିଙ୍କର ଜଟା ଭିତରେ ପଶି ଲୁଚି ରହିଗଲେ । ଶୀଘ୍ରତା ହେତୁ ନହୁଷ ଦେଖିପାରିଲେ ନାହିଁ କିଏ ଆସିଛନ୍ତି ତଥା କିଏ ଆସି ନାହାଁନ୍ତି । ତାଙ୍କୁ ତ ଶଚୀଙ୍କ ସହିତ ମିଳିତ ହେବାର ନିଶା ଧାରିଥିଲା । ତେଣୁ ସେ କେବଳ କହିଲେ—"ଚାଲ, ଚାଲ, ଆଉ ବିଳମ୍ବ କରନାହିଁ ।"

ସମସ୍ତ ଋଷିମୁନିମାନେ ପାଲିଙ୍କି ଉଠାଇଲେ ତଥା ଧୀରେ ଧୀରେ ଚାଲିବାକୁ ଲାଗିଲେ । ଯଜ୍ଞରେ ଭୋଗ ଖାଇ ଖାଇ ସେମାନଙ୍କର ଶରୀର ସବୁ ସ୍ଥୂଳ ହୋଇ ଯାଇଥିଲା । ବୋଝ ଉଠାଇବା ପରିଶ୍ରମ ସେମାନେ କେବେ କରି ନଥିଲେ । ଅଭ୍ୟାସ

Digitized by srujanika@gmail.com

ନଥିବାରୁ ସେମାନେ କେତେବେଳେ ଏ କାନ୍ଧରେ ପାଲିଙ୍କି ରଖୁଥିଲେ ତ କେବେ ଅନ୍ୟ କାନ୍ଧରେ । ନହୁଷ ଶୀଘ୍ର ଶୀଘ୍ର ହେଉଥିଲେ । ସେ ବାରମ୍ବାର ଶିବିକା ଉପରୁ ବାହକମାନଙ୍କୁ ଗୋଇଠା ମାରୁଥିଲେ ଏବଂ 'ସର୍ପ' 'ସର୍ପ' (ଶୀଘ୍ର ଚାଲ ଶୀଘ୍ର ଚାଲ) କହୁଥିଲେ । ସଂଯୋଗର କଥା ! ଯେଉଁ ମୁନିଙ୍କ କାନ୍ଧରେ ଅଗସ୍ତ୍ୟ ମୁନି ବସିଥିଲେ ସେଇଠି ତାଙ୍କ ଗୋଇଠା ବାଜିଗଲା । ଆଉ କ'ଣ ଥିଲା ! ଯେ ଗୋଟିଏ ଅଞ୍ଜୁଳିରେ ସମୁଦ୍ର ଶୋଷି ନେଇଥିଲେ, ଆତାପୀ ଖାଇ ଯେ ହଜମ କରି ଦେଇଥିଲେ, ତାଙ୍କର କ୍ରୋଧଜାତ ହୋଇଗଲା । ଏବଂ ସେ କହିଲେ—"ଯା ଦୁଷ୍ଟ, ତୁ ସର୍ପ ହୋଇଯାଆ ।"

ଆଉ କ'ଣ ଥିଲା ! ନାଟକ ସମାପ୍ତ ହୋଇଗଲା । ନହୁଷ ମୁହିଁ ତଳକୁ କରି ତଳେ ପଡ଼ିଗଲେ ତଥା ଏକ ବିରାଟ କଳା ଅଜଗରରେ ପରିଣତ ହୋଇଗଲେ । ବର୍ତ୍ତମାନ ତାଙ୍କର ଅହଙ୍କାର ଚୂର୍ଣ୍ଣୀଭୂତ ହେଲା । ବିନୀତ ହୋଇ ସେ କହିଲେ— "ପ୍ରଭୁ ! ମୋର ଉଦ୍ଧାର ହେବାର ଉପାୟ କ'ଣ କହି ଦିଅନ୍ତୁ ।"

ଅଗସ୍ତ୍ୟମୁନି ନହୁଷଙ୍କର ବିନୀତ ସ୍ୱର ଶୁଣି ଶାନ୍ତ ହୋଇଗଲେ ଏବଂ କହିଲେ—"ଭଲ କଥା ! ସର୍ପ ତ ତୋତେ ହେବାପାଇଁ ପଡ଼ିବ । କିନ୍ତୁ ତୋର ସ୍ମୃତି ତୋ' ପାଖରେ ରହିବ । ତୋ'ର ବଂଶରେ ଯେତେବେଳେ ମହାରାଜ ଯୁଧିଷ୍ଠିର ଜନ୍ମ ହେବେ ସେତେବେଳେ ତାଙ୍କ ସହ କଥାବାର୍ତ୍ତା କରି ତୋର ସର୍ପ ଯୋନିରୁ ମୁକ୍ତି ମିଳିବ ଏବଂ ତୁ ପୁଣି ସ୍ୱର୍ଗକୁ ଚାଲିଆସିବୁ ।" ଏହା ଶୁଣିବା ପରେ ସେ ଧଡ଼ାସ କରି ପୃଥିବୀ ଉପରେ ପଡ଼ିଗଲେ । ଏବଂ ସେହିଦିନଠାରୁ ଅଜଗର ହୋଇ ପୃଥିବୀରେ ସର୍ପ ରୂପେ ରହିବାକୁ ଲାଗିଲେ ।

ଏହା ଶୁଣି ଶୌନକ ମୁନି ପଚାରିଲେ—"ସୂତ ମୁନି ! ପୁଣି ମହାରାଜ ନହୁଷଙ୍କର ଉଦ୍ଧାର ହେଲା ନା ନାହିଁ ? ଯଦି ହେଲା ତେବେ କିପରି ହେଲା ? କୃପା କରି ଏସବୁ କଥା ଆପଣ ଆମକୁ ଶୁଣାନ୍ତୁ ।"

ସୂତ ମୁନି କହିଲେ—"ହଁ ମହାରାଜ ! ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ବାର୍ତ୍ତାଳାପ ପରେ ରାଜର୍ଷି ନହୁଷଙ୍କର ଉଦ୍ଧାର ହୋଇଗଲା । ଏ ପ୍ରସଙ୍ଗ ମଧ୍ୟ ମୁଁ ସଂକ୍ଷେପରେ କହି ଦେଉଛି । ଆପଣମାନେ ମନ ଧ୍ୟାନ ଦେଇ ଶୁଣନ୍ତୁ ।"

ପଶାଖେଳରେ ଯେତେବେଳେ ଧର୍ମରାଜ ଯୁଧିଷ୍ଠିର ସବୁକିଛି ହରାଇ ବନବାସ କରୁଥିଲେ, ସେତେବେଳେ ଦିନେ ସେ ଯମୁନା ତଟରେ ହିମାଳୟ ପ୍ରଦେଶର ରମଣୀୟ ପ୍ରାନ୍ତରରେ ଛିଡ଼ା ହୋଇଥିଲେ । ଅନେକ ଅଗ୍ନିହୋତ୍ରୀ-ତେଜସ୍ୱୀ-ତପସ୍ୱୀ ବ୍ରାହ୍ମଣ ମଧ୍ୟ ତାଙ୍କ ସାଥିରେ ଥିଲେ । ସେଇ ପାର୍ବତ୍ୟ ପ୍ରାନ୍ତରର ଅନୁପମ ସୌନ୍ଦର୍ଯ୍ୟ ଦେଖି ଭୀମ ଅତି ଆନନ୍ଦିତ ହେଲେ । କୌତୂହଳବଶତଃ ସେ ବୁଲି ବୁଲି ବହୁତ ଦୂରକୁ

Digitized by srujanika@gmail.com

ଚାଲିଗଲେ । ସେଠାରେ ସେ ଏକ ଝୁଞ୍ଜିଲ ବଣରେ ପାହାଡ଼ ଗୁମ୍ଫାରେ ଗୋଟେ ବେଶ୍ ମୋଟାସୋଟା ଅଜଗରକୁ ଦେଖିଲେ । ତା'ର ରଙ୍ଗ ହଳଦୀ ପରି ଏବଂ ଦେହ ଉପରେ ରଙ୍ଗ ବେରଙ୍ଗୀ ଗାର ସବୁ ପଡ଼ିଥିଲା । ଆଖି ଲାଲ ଲାଲ ହୋଇଥିଲା, ଏବଂ ସେ ଲମ୍ବା ଲମ୍ବା ନିଃଶ୍ୱାସ ଛାଡ଼ୁଥିଲା । ତା'ର ଦାନ୍ତ ତୀକ୍ଷ୍ଣ ଥିଲା, ଏବଂ ପାଟିଟା ପର୍ବତ ଗୁମ୍ଫାପରି ଦିଶୁଥିଲା । ସେଥିରେ ପୁଣି ଜିଭଟା ଲହ ଲହ ହେଉଥିଲା । ସେ ଓଠକୁ ବାରମ୍ବାର ଘୃଷୁଥିଲା । ଏହି ଭୟଙ୍କର ଅଜଗରକୁ ଦେଖି ଭୀମଙ୍କ ଲୋମମୂଳ ଟାଙ୍କୁର ଉଠିଲା । ସେ ସତର୍କ ହେବାପାଇଁ ଚେଷ୍ଟା କରୁଥିଲାବେଳେ ଅଜଗର ତାଙ୍କ ଗୋଡ଼କୁ ଧରିନେଲା । ଭୀମଙ୍କର ତ ନିଜ ଶକ୍ତି ପ୍ରତି ଅସୀମ ଅଭିମାନ ଥିଲା । ସେ ତାଙ୍କର ସମ୍ପୂର୍ଣ୍ଣ ଶକ୍ତି ଲଗାଇ ନିଜକୁ ସର୍ପଠାରୁ ଛଡ଼େଇବାକୁ ଲାଗିଲେ, କିନ୍ତୁ ସର୍ପ ତାଙ୍କର ପୂରା ଦେହକୁ ନିଜ ଅନ୍ତଃଆରେ କରି ଧକାଇଲା । ଏବଂ ହାତ ଦୁଇଟିକୁ ଛାଡ଼ିଦେଇ କହିଲା—“ଏବେ ତୁମେ ଯେତେ ଇଚ୍ଛା ସେତେ ଶକ୍ତି ଖଟାଅ ।”

ଭୀମସେନ ଅନେକ ଚେଷ୍ଟା କଲେ କିନ୍ତୁ ସଫଳ ହୋଇପାରିଲେ ନାହିଁ । ସର୍ପଠାରୁ ନିଜକୁ ଛଡ଼ାଇ ପାରିଲେ ନାହିଁ । ଶେଷରେ ନିଜର ପରାଜୟ ମାନି ସେ କହିଲେ—“ସର୍ପରାଜ ! ଆପଣ ସାଧାରଣ ସର୍ପ ନୁହନ୍ତି । ଆପଣ ନିଶ୍ଚୟ କୌଣସି ବିଶିଷ୍ଟ ବ୍ୟକ୍ତି । କାରଣ ଏତେ ଶକ୍ତି କୌଣସି ସର୍ପ ପାଖରେ ଦେଖାଯାଏ ନାହିଁ । ମୁଁ ମହାରାଜ ପାଣ୍ଡୁଙ୍କର ପୁତ୍ର ଧର୍ମରାଜ ଯୁଧିଷ୍ଠିରଙ୍କର ଶ୍ରେଷ୍ଠ ଭାଇ ଭୀମସେନ, ମୋର ଦଶସହସ୍ର ହାତୀର ଶକ୍ତି । କିନ୍ତୁ ଆପଣଙ୍କ ସମ୍ମୁଖରେ ମୋର ଶକ୍ତି ବ୍ୟର୍ଥ ହୋଇଛି । ବର୍ତ୍ତମାନ ଆପଣ ଆପଣଙ୍କର ପରିଚୟ ମୋତେ ଦିଅନ୍ତୁ ।”

ସର୍ପଟି କହିଲା—“ରାଜା ! ମୁଁ ଆପଣଙ୍କ ପୂର୍ବଜଙ୍କର ମଧ୍ୟ ପୂର୍ବଜ । ମୋର ନାମ ନହୁଷ । ଥରେ ମୁଁ ମୋର ପୁଣ୍ୟ ବଳରେ ସ୍ୱର୍ଗର ରାଜା ଇନ୍ଦ୍ର ହୋଇଥିଲି । ବ୍ରାହ୍ମଣମାନଙ୍କର ଅଭିଶାପରେ ମୋର ଏପରି ଦୁର୍ଦ୍ଦଶା ହୋଇଛି । ମୁଁ ତୁମକୁ ଛାଡ଼ି ପାରିବି ନାହିଁ । ଦେବତାମାନେ ମୋର ଏହି ଆହାର ନିର୍ଦ୍ଦିଷ୍ଟ କରିଛନ୍ତି । ଅନାୟାସରେ ଯେ ମୋ ନିକଟକୁ ଆସିଯାଆନ୍ତି ମୁଁ ସେଇମାନଙ୍କୁ ହିଁ ଆହାର କରିଥାଏ । ତୁମକୁ ମଧ୍ୟ ମୁଁ ଖାଇଦେବି ।”

ଅତ୍ୟନ୍ତ ବ୍ୟାକୁଳ ହୋଇ ଭୀମ କହିଲେ—“ସର୍ପରାଜ ! ତୁମେ ଧର୍ମାତ୍ମା ପୁରୁଷ । ମୋର ମରିବା ନିମନ୍ତେ ଭୟ ନାହିଁ । ମୋର ଭାଇ ମୋ ବିନା ଅତ୍ୟନ୍ତ ଦୁଃଖିତ ହେବେ । ମୋର ମାତା କୁନ୍ତୀ ଦେବୀ ମୋ ବିନା ନିଜ ପ୍ରାଣ ବିସର୍ଜନ କରିଦେବେ । ମୋ ତଳେ ଦୁଇଭାଇ, ମୋଠୁ ଜଣେ ବଡ଼ । ଏମାନେ ସମସ୍ତେ ଧର୍ମାତ୍ମା ।

Digitized by srujanika@gmail.com

ମୁଁ ହିଁ ସେମାନଙ୍କୁ କୋଧ ଦେଖାଇ ଯୁଦ୍ଧପାଇଁ ଉତ୍ସାହିତ କରୁଥାଏ । ବର୍ତ୍ତମାନ ସେମାନେ ବଣରେ ହିଁ ରହି ଦୁଃଖରେ ଜୀବନ କଟାଇବେ । ତୁମେ ମୋତେ ଛାଡ଼ିଦିଅ ।"

ସର୍ପ କହିଲା—"ହେ ରାଜା ! ମୁଁ ଅତ୍ୟନ୍ତ ଭୋକିଲା ହୋଇ ରହିଛି, ଆଉ ତୁମେ ମୋର ଆହାର ହୋଇ ଆସିଛ । ଏହାହିଁ ମୋର ଜୀବନଯାପନର ପ୍ରଣାଳୀ । ମୁଁ ତୁମକୁ କୌଣସିମତେ ଛାଡ଼ି ପାରିବି ନାହିଁ ।" ଏହା ଶୁଣି ଭୀମସେନ ମୂର୍ଚ୍ଛିତ ହୋଇଗଲେ ।

ଏପଟେ ଯେତେବେଳେ ଅନେକ ସମୟଯାଏ ଭୀମସେନ ଫେରିଲେନି, ଧର୍ମରାଜ ଯୁଧିଷ୍ଠିର ତାଙ୍କୁ ନ ଫେରିବାର ଦେଖି ଚିନ୍ତିତ ହୋଇ ପଡ଼ିଲେ । ତାଙ୍କୁ ଅନେକ ପ୍ରକାରର ଅଶୁଭ ସଙ୍କେତ ମଧ୍ୟ ଦେଖାଗଲା । ସେ ଦ୍ରୌପଦୀଙ୍କୁ ପଚାରିଲେ—"ତୁମେ ଭୀମଙ୍କୁ କୁଆଡ଼େ ପଠାଇ ନାହଁ ତ ?"

ଦ୍ରୌପଦୀ କହିଲେ—"ନାଁ, ମୁଁ ତ ତାଙ୍କୁ କୁଆଡ଼େ ପଠାଇ ନାହିଁ । କିନ୍ତୁ ଅନେକବେଳରୁ ସେ ବଣ ଭିତରକୁ ଯାଇଛନ୍ତି । ତାଙ୍କପାଇଁ ମୋର ବହୁତ ଚିନ୍ତା ହେଉଛି ।" ଏହା ଶୁଣିବାମାତ୍ରେ ଯୁଧିଷ୍ଠିରଙ୍କ ମନରେ ଶଙ୍କା ପଶିଲା । ଅର୍ଜୁନଙ୍କୁ ଦ୍ରୌପଦୀଙ୍କ ରକ୍ଷାଭାର ଦେଇ, ସେ ନକୁଳ ସହଦେବଙ୍କୁ ବ୍ରାହ୍ମଣମାନଙ୍କର ଯତ୍ନ ନେବାପାଇଁ ଆଦେଶ ଦେଇ, ସେ ନିଜର କୁଳ ପୁରୋହିତ ଧୌମ୍ୟଙ୍କୁ ସଙ୍ଗରେ ନେଇ ବଣକୁ ଗଲେ । ସେ ଭୀମଙ୍କର ପାଦ ଚିହ୍ନକୁ ଲକ୍ଷ୍ୟ କରି ତାଙ୍କୁ ଖୋଜି ଖୋଜି ଯାଇ ସେଇ ଜାଗାରେ ପହଞ୍ଚିଲେ ଯେଉଁଠାରେ ଭୀମ ଅଜଗରର ବନ୍ଧନ ଭିତରେ ପଡ଼ିଥିଲେ । ଧର୍ମରାଜ ଯୁଧିଷ୍ଠିର ଏହା ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ଯେ ଦଶ ସହସ୍ର ହାତୀର ଶକ୍ତି ଥିବା ଭୀମ କିପରି ଗୋଟିଏ ଅଜଗରର ବନ୍ଧନ ଭିତରେ ପଡ଼ିଯାଇଛି । ସେ ଭୀମଙ୍କୁ ତାଗିଦ୍ କରି କହିଲେ—"ଆଜି ତୁମର ଏପରି ଦୁର୍ଦ୍ଦଶା କିପରି ହେଲା ?"

ଭୀମ ତ ଅଚେତନ ଥିଲେ । ଧର୍ମରାଜଙ୍କର କଥାଶୁଣି ସେ ଆଖି ଖୋଲିଲେ । ଏହି ନିଜ କପାଳରେ ହାତରଖି ସଙ୍କେତରେ କହିଲେ—"ହେ ରାଜା ! ଭାଗ୍ୟଫଳ ହିଁ ସର୍ବଦା ପ୍ରାପ୍ତ ହୋଇଥାଏ । ଯେତେବେଳଯାଏ ଭାଗ୍ୟ ଅନୁକୂଳ ରହିବ ସେତିକବେଳଯାଏ ପୁରୁଷାର୍ଥ କାମ ଦେଖାଇବ । ଦୈବ ପ୍ରତିକୂଳ ହେଲେ ବିଦ୍ୟା, ବଳ, ପୌରୁଷ, ସ୍ଫୂର୍ତ୍ତି, କଳା, ତଥା ଅନ୍ୟ ସମସ୍ତ ଉପକରଣ ବ୍ୟର୍ଥ ହୋଇଯାଏ । ମନୁଷ୍ୟ ଦୈବାଧୀନ ଅଟେ । ଭାଗ୍ୟ ହାତରେ ସେ ଗୋଟିଏ ଖେଳଣା ମାତ୍ର । ଭାଗ୍ୟହୀନ ପୁରୁଷ ପୁରୁଷାର୍ଥ ଦେଖାଇ ପାରେନି । ଆପଣ ମୋତେ ହିଁ ଦେଖନ୍ତୁ । ମୁଁ ନିଜ ବଳ ଆଗରେ ଯକ୍ଷରାଜ ଶମ୍ଭୁଙ୍କ ସଖା କୁବେରଙ୍କୁ ମଧ୍ୟ ପାସଙ୍ଗରେ ପକାଉ ନ ଥିଲି, ତାଙ୍କ ସହିତ

Digitized by srujanika@gmail.com

ମଧ୍ୟ ଯୁଦ୍ଧ କରିବାପାଇଁ ଉଦ୍ୟତ ହୋଇ ଯାଇଥିଲି । କିନ୍ତୁ ମୁଁ ଆଜି ଗୋଟିଏ ସର୍ପର ବନ୍ଧନରୁ ବାହାରି ପାରୁ ନାହିଁ, ମୋର ସମସ୍ତ ଶକ୍ତି ଏଠାରେ ବ୍ୟର୍ଥ ହୋଇ ଯାଉଛି ।"

ଏହାଶୁଣି ଧର୍ମରାଜ ଯୁଧିଷ୍ଠିର ସର୍ପକୁ ପଚାରିଲେ—"ହେ ସର୍ପ-ଶ୍ରେଷ୍ଠ ! ତୁମେ ତ ସାଧାରଣ ସର୍ପ ପରି ମନେ ହେଉ ନାହଁ । ତୁମେ ଦେବତା, ଗନ୍ଧର୍ବ, ଯକ୍ଷ, ବା ଅନ୍ୟ କୌଣସି ଉପଦେବ ? ତୁମେ ଏହି ନିନ୍ଦିତ ଲୋକ-ନିନ୍ଦିତ ସର୍ପର ବେଶ କାହିଁକି ହୋଇଛ ? ତୁମେ ତୁମର ପ୍ରକୃତ ପରିଚୟ ଦିଅ ।"

ଏହାଶୁଣି ସର୍ପ ଉତ୍ତର ଦେଲା—"ହେ ରାଜା ! ମୁଁ ତୁମର ପୂର୍ବଜ ଅଟେ । ଚନ୍ଦ୍ରବଂଶର ପଞ୍ଚମ ପୁରୁଷରେ ମୋର ଜନ୍ମ । କଥା ପ୍ରସଙ୍ଗରେ ତୁମେ ଅବଶ୍ୟ ମୋର ନାମ ଶୁଣିଥିବ । ମୋର ନାମ ନହୁଷ ।"

ଏହାଶୁଣି ଧର୍ମରାଜ ଭୂମିଷ୍ଠ ହୋଇ ସର୍ପକୁ ପ୍ରଣାମ କଲେ ଏବଂ କହିଲେ— "ମୋର ପୂର୍ବଜନଙ୍କର ପୂର୍ବଜ ରାଜର୍ଷି ନହୁଷ ଆପଣ ? ମୁଁ ବ୍ରାହ୍ମଣମାନଙ୍କଠାରୁ ଆପଣଙ୍କର ଯଶଖ୍ୟାତି ବହୁତ ଶୁଣିଛି । ମୁଁ ଏକଥା ବି ଶୁଣିଛି ଯେ ଆପଣ ମନୁଷ୍ୟ ହୋଇ ମଧ୍ୟ ଦେବେନ୍ଦ୍ର ହୋଇଥିଲେ । କେଉଁ କାରଣରୁ ଆପଣଙ୍କୁ ଏଇ ଲୋକ-ନିନ୍ଦିତ ସର୍ପଯୋନି ପ୍ରାପ୍ତ ହୋଇଛି ?"

ସର୍ପ କହିଲା—"ହେ ରାଜା ! ଅଭିମାନ ହିଁ ପତନର କାରଣ । ମଣିଷକୁ ତାର ଅହଙ୍କାର ହିଁ ନିମ୍ନଗାମୀ କରିଥାଏ । ଇନ୍ଦ୍ର ହେବା ପରେ ମୁଁ ଗର୍ବରେ ପାଗଳ ହୋଇଯାଇଥିଲି । ମୁଁ ବେଦଜ୍ଞ ବ୍ରାହ୍ମଣମାନଙ୍କ ଦ୍ୱାରା ପାଲିଙ୍କି ଉଠାଇଲି । ଋଷି ମୁନିଙ୍କୁ ପାଲିଙ୍କି ବାହକର କାମ କରାଇଲି । ଅଗସ୍ତ୍ୟଙ୍କ ପରି ମହର୍ଷିଙ୍କୁ ମୁଁ ପଦାଘାତ କରି ଅପମାନ କଲି । ଏଇସବୁ କାରଣରୁ ମୋତେ ସର୍ପଯୋନି ପ୍ରାପ୍ତ ହେଲା । ମୁଁ ମୋର ପ୍ରାରବ୍ଧ ଭୋଗ କରୁଛି । ଭୋକରେ ଏଇଠି ପଡ଼ି ରହିଛି । ଯଦି କେହି ଜୀବ ସ୍ୱତଃପ୍ରବୃତ୍ତ ହୋଇ ଏଠାକୁ ଚାଲିଆସେ ତେବେ ତାକୁ ହିଁ ଆହାର କରି, ମୁଁ ମୋର ଭୋକ ମେଣ୍ଟାଇ ଥାଏ । ଆଜି ତୁମର ଭାଇ ଆସିଗଲା ତେଣୁ ମୁଁ ଆଜି ତାକୁ ହିଁ ଖାଇ ମୋର ଭୋକ ମେଣ୍ଟାଇବି । ତୁମେ ଶୀଘ୍ର ଏଠାରୁ ପଳାଇଯାଅ ନହେଲେ ନିଶ୍ଚିତଭାବେ କାଲି ତୁମେ ମୋର ଆହାର ହେବ ।"

ଧର୍ମରାଜ କହିଲେ—"ସର୍ପରାଜ ! ଆପଣ ଧର୍ମାତ୍ମା । ମୋ ଭାଇକୁ ଆପଣ ଛାଡ଼ିଦିଅନ୍ତୁ । ଏହା ବଦଳରେ ଅନ୍ୟ ଯାହା କିଛି ଆହାର କହିବେ ଆପଣଙ୍କପାଇଁ ମୁଁ ଆଣିଦେବି । ଅନ୍ୟ କୌଣସି କାର୍ଯ୍ୟ ଆପଣ ମୋଦ୍ୱାରା କରାଇବାକୁ ଚାହିଁଲେ ତାହା ମଧ୍ୟ କରିଦେବି ।"

Digitized by srujanika@gmail.com

ସର୍ପ କହିଲା—"ଯଦି ଆପଣ ମୋର ପ୍ରଶ୍ନର ଉପଯୁକ୍ତ ଉତ୍ତର ଦେବେ, ତେବେ ମୁଁ ଆପଣଙ୍କ ଭାଇକୁ ଛାଡ଼ିଦେବି ।"

ଧର୍ମରାଜ କହିଲେ—ସର୍ପ ରାଜ ! ଆପଣ ଯାହା ଚାହାଁନ୍ତି ମୋତେ ସେ ବିଷୟରେ ପ୍ରଶ୍ନ କରନ୍ତୁ । ମୁଁ ସେ ସବୁର ଯଥାସାଧ୍ୟ ଉତ୍ତର ଦେବି ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଏହାପରେ ଅଜଗର ଏବଂ ଧର୍ମରାଜ ଯୁଧିଷ୍ଠିରଙ୍କ ମଧ୍ୟରେ 'ବ୍ରାହ୍ମଣ କିଏ ? ବ୍ରାହ୍ମଣ କ'ଣ ?' ଇତ୍ୟାଦି ବିଷୟରେ ଅନେକ ସମୟ ପର୍ଯ୍ୟନ୍ତ ପ୍ରଶ୍ନୋତ୍ତର ହେଲା । ଶେଷରେ ଅଜଗର ଯୁଧିଷ୍ଠିରଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲା । ତାଙ୍କ ସଂସର୍ଗରେ ଆସି ସେ ବହୁତ ଆନନ୍ଦିତ ହୋଇ କହିଲା—"ହେ ରାଜା ! ଯେତେବେଳେ ମୁଁ ସ୍ୱର୍ଗରୁ ତଳେ ପଡ଼ୁଥିଲି ସେତେବେଳେ ମୁଁ ଆକୁଳ ହୋଇ ମହର୍ଷି ଅଗସ୍ତ୍ୟଙ୍କୁ ପଚାରିଥିଲି, ମୋର ଉଦ୍ଧାର କେବେ ଏବଂ କିପରି ହେବ । ସେଇ ଦୟାଳୁ ମହର୍ଷି ମୋତେ ବରଦାନ ଦେଇଥିଲେ—"ଧର୍ମରାଜ ଯୁଧିଷ୍ଠିରଙ୍କ ସଂସର୍ଗ କରିବାଦ୍ୱାରା ହିଁ ତୁମେ ସର୍ପ ଯୋନିରୁ ରକ୍ଷା ପାଇ ପୁନଶ୍ଚ ସ୍ୱର୍ଗକୁ ଫେରିଆସିବ । ସର୍ପ ଯୋନିରେ ମଧ୍ୟ ଯେ ତୁମ ସମ୍ମୁଖକୁ ଆସିବ ସେ ଶକ୍ତିହୀନ ହୋଇଯିବ । ଯେତେ ବଳୀୟାନ ଜୀବ ହେଲେ ସୁଦ୍ଧା ତୁମେ ତାକୁ ଧରି ଖାଇପାରିବ । ଧର୍ମାବତାର ଯୁଧିଷ୍ଠିର ହିଁ ତୁମକୁ ଉଦ୍ଧାର କରିବେ ।" ତେଣୁ ହେ ଆୟୁଷ୍ମାନ୍ ! ତୁମେ ମୋର ଉଦ୍ଧାର କରିଦେଲ । ତୁମେ ତୁମ ଭାଇକୁ ନେଇ ଆନନ୍ଦରେ ନିଜ ନିବାସ ସ୍ଥାନକୁ ଯାଅ । ମୁଁ ବର୍ତ୍ତମାନ ସ୍ୱର୍ଗକୁ ଯାଉଛି ।" ଏହା କହି ସର୍ପ ଭୀମସେନଙ୍କୁ ଛାଡ଼ିଦେଇ ସ୍ୱର୍ଗକୁ ଚାଲିଗଲା ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମୁଁ ଅତ୍ୟନ୍ତ ସଂକ୍ଷେପରେ ରାଜର୍ଷି ନହୁଷଙ୍କର ଚରିତ ଆପଣମାନଙ୍କୁ ଶୁଣାଇଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହାଁନ୍ତି ?"

ଶୌନକ ମୁନି କହିଲେ—"ସୂତମୁନି ! ଆପଣ କହିଥିଲେ ନହୁଷଙ୍କର ଯତି, ଯଯାତି, ସଂଯାତି, ଆଯାତି, ବିଯାତି ଏବଂ କୃତି—ଏ ଛଅପୁତ୍ର ଥିଲେ । ବର୍ତ୍ତମାନ ତାଙ୍କର ଜ୍ୟେଷ୍ଠପୁତ୍ର ଯତିଙ୍କ ବଂଶ ବୃତ୍ତାନ୍ତ ଶୁଣାନ୍ତୁ ।"

ହସି ହସି ସୂତ ମୁନି କହିଲେ—"ମୁନିମାନେ ! ଯତିଙ୍କର ବଂଶ ଆରମ୍ଭ ହୋଇପାରି ନଥିଲା । କାରଣ ସେ ବିବାହ କରି ନଥିଲେ । ଯେତେବେଳେ ସେ ଦେଖିଲେ, ତାଙ୍କର ପିତା ଇନ୍ଦ୍ର ହୋଇ ମଧ୍ୟ ସର୍ପଯୋନି ପ୍ରାପ୍ତ ହେଲେ, ସେତେବେଳେ ସାଂସାରିକ ଭୋଗରେ ଯଥାର୍ଥ ଆନନ୍ଦ ନାହିଁ ବୋଲି ତାଙ୍କର ଜ୍ଞାନ ହେଲା । ତେଣୁ ସେ ବିବାହ କଲେ ନାହିଁ । ରାଜଗାଦିରେ ମଧ୍ୟ ବସିଲେ ନାହିଁ । ସେ ବଣକୁ ଚାଲିଯିବା ପରେ ତାଙ୍କ ଶ୍ରେଷ୍ଠ ଭାଇ ଯଯାତିଙ୍କୁ ରାଜା ରୂପେ ଅଭିଷିକ୍ତ କରାଗଲା । ସେ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା ଦେବଯାନୀଙ୍କୁ ବିବାହ କରିଥିଲେ ।"

Digitized by srujanika@gmail.com

ଏହା ଶୁଣି ଶୌନକ ମୁନି ଚମକିଯାଇ କହିଲେ—"ସୂତ ମୁନି ! ଯଯାତି ତ କ୍ଷତ୍ରିୟ ଥିଲେ, ସେ ବ୍ରାହ୍ମଣ କନ୍ୟାକୁ କିପରି ବିବାହ କଲେ ତଥା ଜ୍ଞାନୀ ଶୁକ୍ରାଚାର୍ଯ୍ୟ ମଧ୍ୟ ଏହି ପ୍ରତିଲୋମ ବିବାହକୁ କିପରି ଅନୁମୋଦନ କଲେ ?"

ସୂତ ମୁନି କହିଲେ—"ମହାରାଜ ! ଦେବଯାନୀଙ୍କୁ ବୃହସ୍ପତି ପୁତ୍ର କଚଙ୍କର ଅଭିଶାପ ଥିଲା, କୌଣସି ବ୍ରାହ୍ମଣ ପତି ତାଙ୍କୁ ମିଳିବେ ନାହିଁ । ଏଥିପାଇଁ ବାଧ୍ୟହୋଇ ଶୁକ୍ରାଚାର୍ଯ୍ୟ ଏଇ ବିବାହକୁ ସମର୍ଥନ ଜଣାଇଥିଲେ ।"

ଶୌନକ ମୁନି କହିଲେ—"ତେବେ ତ ରାଜାଙ୍କ ସନ୍ତାନସନ୍ତତି ବର୍ଣ୍ଣସଙ୍କର ହୋଇଥିବେ । ସେମାନେ ତ ଶୁଦ୍ଧ କ୍ଷତ୍ରିୟ ହୋଇ ନଥିବେ ?"

ସୂତ ମୁନି ଟିକେ ଇତସ୍ତତ ହୋଇ କହିଲେ—"ନାଁ ମହାରାଜ ! ଏମିତି ଦୋଷ ଲାଗେ ନାହିଁ । ନିଜର ଅଭିଶାପ ତଥା ବରଦାନ ଫଳରେ ସବୁକିଛି ଠିକ୍‌ଠାକ୍ କରି ନିଅନ୍ତି । ଶୁକ୍ରାଚାର୍ଯ୍ୟ ତ ସବୁକିଛି ଠିକ୍ କରି ଦେଇଥିଲେ କିନ୍ତୁ ଦେବଯାନୀ ପୁତ୍ର ପିତାଙ୍କ ଅଭିଶାପରୁ କ୍ଷତ୍ରିୟବର୍ଣ୍ଣଠାରୁ ମଧ୍ୟ ହୀନ ହୋଇ ଯାଇଥିଲେ । ଋଷିପୁତ୍ରଙ୍କ ଶାପ ଅମୋଘ ଥିଲା ।"

ଶୌନକ ମୁନି ପଚାରିଲେ—"ଦେବଯାନୀ ଏପରି କି ଅପରାଧ କରିଥିଲା ଯାହାଦ୍ୱାରା କି କଚ ଏପରି ଦାରୁଣ ଅଭିଶାପ ଦେଇଥିଲା ?"

ସୂତ ମୁନି କହିଲେ—"ମହାରାଜ ! କାମନାର ବଶୀଭୂତ ହୋଇ ପ୍ରାଣୀ ଅନୁଚିତ ଇଚ୍ଛା କରେ । ଯେତେବେଳେ ତା'ର ସେ ଇଚ୍ଛା ପୂରଣ ହୁଏନାହିଁ ତା'ର କ୍ରୋଧର ପରିଣାମ ତ ଦୁଃଖ ହିଁ ହୋଇଥାଏ । ସବୁଠାରୁ ବଡ଼ ଶତ୍ରୁ ହେଉଛି କାମ । ଦେବଯାନୀଙ୍କୁ କଚ କାହିଁକି ଶାପ ଦେଇଥିଲା ସେ କଥା ମୁଁ ଆପଣମାନଙ୍କୁ ଶୁଣାଉଛି । ଆପଣମାନେ ମନଦେଇ ଶୁଣନ୍ତୁ ।"

## ଛପ୍‌ପୟ

**ଶିବିକା ମହେଁ ଋଷି ଲଗେ ନହୁଷ ଚଢ଼ି ଶଚୀ-ଗୃହ ଗମନେ ।**
**ପଦ-ପ୍ରହାର କରି 'ସର୍ପ' କହେ ମୁନି ଭୟେ ଅନମନେ ॥**
**ଦୁଷ୍ଟ କ୍ଷୋହି, ତୂ ସର୍ପ, ଶାପ କୁମ୍ଭଜମୁନି ଦୀନ୍ହୋ ।**
**ତୁରତ ସର୍ପ ହ୍ୱୈ ଗିରଯୌ, ପାପ କୋ ଫଳ ଚଖି ଲୀନ୍ହୋ ॥**
**ଧର୍ମରାଜ ସତ୍‌ସଂଗ ତେଂ, ସର୍ପ ଯୋନି ତେଂ ଛୁଟି ଗୟେ ।**
**ସବ ତଜି ନୃପ ଜବ ବନ ଗୟେ, ତବ ଯଯାତି ଭୂପତି ଭୟେ ॥**



Digitized by srujanika@gmail.com

# ଦେବଯାନୀ ଏବଂ କଚଙ୍କ
# ମଧ୍ୟରେ ଶାପ ବିନିମୟ

ନ ବ୍ରାହ୍ମଣୋ ମେ ଭବିତା ହସ୍ତଗ୍ରାହୋ ମହାଭୁଜ ।
କଚସ୍ୟ ବାର୍ହସ୍ପତ୍ୟସ୍ୟ ଶାପାତ୍ ଯମଶପଂ ପୁରା ॥

(ଶ୍ରୀ ଭା ୯ ସ୍କ ୧୮ ଅଧ୍ୟାୟ ୨୨, ଶ୍ଳୋକ) *

## ଛପ୍ପୟ

ନୃପ ଯଯାତି ନେ ବ୍ୟାହ ଶୁକ୍ର-ତନୟା ସଁଗ କୀନ୍ହେ ।
ଶୌନକ ଶଙ୍କା କରି ଧର୍ମ ନୃପ କ୍ୟୋଁ ତଜି ଦୀନ୍ହେ ॥
ସୂତ କହେ—"ମୁନି, ସୁନି, କଥା ଅବ କହୌଁ ମନୋହର ।
ଗୁରୁ-ସୁତ କଚ ସୁର-ସ୍ୱାର୍ଥ-ହେତୁ ବ୍ରତ କୀନ୍ହୋ ଦୁଷ୍କର ॥
ସୀଖନ ମୃତସଂଜୀନୀ-ବିଦ୍ୟା ଭଣନା ଢ଼ିଁଗ ଗୟେ ।
ମାରେ ଅସୁରନ ଦ୍ୱେଷ-ବଶ, ଗୁରୁ-ପ୍ରସାଦ ଜୀବିତ ଭୟେ ॥

ଗୋଟିଏ ହୃଦୟ ଯେତେବେଳେ ଅନ୍ୟ ଏକ ହୃଦୟ ସହ ମିଳନପାଇଁ ବ୍ୟାକୁଳ ହୋଇଉଠେ ସେତେବେଳେ ଲୋକ ବିବେକ ହରାଇ ଥାଏ । ଭଗବାନ କପରି ଏହି ପ୍ରେମବନ୍ଧନକୁ ବାନ୍ଧି ଦେଇଛନ୍ତି ! ବିନା ସମ୍ବନ୍ଧରେ କୌଣସି ପ୍ରେମ ସ୍ଥାୟୀ ହୁଏନାହିଁ ।

---

* ଦେବଯାନୀ ରାଜାଙ୍କୁ କହୁଛନ୍ତି—"ହେ ମହାବାହୁ ! ମୁଁ ଯେଉଁ ବୃହସ୍ପତି କୁମାରଙ୍କୁ ପ୍ରଥମେ ଶାପ ଦେଇଥିଲି, ସେ ମୋତେ ମଧ୍ୟ ଶାପ ଦେଇଥିଲେ ଯେ ତୁମକୁ ବ୍ରାହ୍ମଣ ବର ମିଳିବେ ନାହିଁ । ତେଣୁ କୌଣସି ବ୍ରାହ୍ମଣ ମୋର ପାଣିଗ୍ରହଣ କରିପାରିବେ ନାହିଁ ।"

Digitized by srujanika@gmail.com

ସଂସାରରେ ପାଞ୍ଚୋଟି ସମ୍ବନ୍ଧକୁ ମୁଖ୍ୟ ବୋଲି ଗ୍ରହଣ କରାଯାଇଛି । ପ୍ରଥମତଃ—ବ୍ୟଷ୍ଟି ସମଷ୍ଟିର ସମ୍ବନ୍ଧ, ଦ୍ୱିତୀୟ ପିତା ପୁତ୍ରର ସମ୍ବନ୍ଧ, ତୃତୀୟ ସଖା-ସଖାର ସମ୍ବନ୍ଧ, ଚତୁର୍ଥ ସ୍ୱାମୀ ସେବକର ସମ୍ବନ୍ଧ ଏବଂ ପଞ୍ଚମରେ ସ୍ୱାମୀ ସ୍ତ୍ରୀର ସମ୍ବନ୍ଧ । ପତ୍ନୀ ନିକଟରେ ଏହି ପାଞ୍ଚ ସମ୍ବନ୍ଧ ଏକାସଙ୍ଗେ ମିଳିଥାଏ । ପତ୍ନୀ ପତିର ଅର୍ଦ୍ଧାଙ୍ଗିନୀ, ମାତା-ପିତାଙ୍କ ପରି ବାତ୍ସଲ୍ୟ ପ୍ରେମକରି ସେ ପତିର ଲାଳନପାଳନ କରିଥାଏ । ସେ ଏକ ଉପଯୁକ୍ତ ସଖୀସମାନ ସବୁ ପରିସ୍ଥିତିରେ ସାହଚର୍ଯ୍ୟ ଦେଇଥାଏ । ପତ୍ନୀର କାର୍ଯ୍ୟ ତ ତା'ର ଅନିବାର୍ଯ୍ୟ । ତେଣୁ ଯୁବକ ଯୁବତୀମାନଙ୍କ ମଧ୍ୟରେ ପ୍ରେମ ହୋଇଗଲା ପରେ ସେମାନେ ପରସ୍ପର ମଧ୍ୟରେ ଏଇ ସର୍ବୋତ୍କୃଷ୍ଟ ସମ୍ବନ୍ଧ ସ୍ଥାପନ କରିବାପାଇଁ ଆଗ୍ରହୀ ହେବା ସ୍ୱାଭାବିକ । ଯଦି ସେ ଦୁହିଁଙ୍କ ମଧ୍ୟରୁ ଜଣେ ଏଇ ପ୍ରସ୍ତାବକୁ ସାମାଜିକ ବା ଧାର୍ମିକ ବନ୍ଧନ କାରଣରୁ ଗ୍ରହଣ ନକରି ପ୍ରତ୍ୟାଖ୍ୟାନ କରିଥାଏ, ତେବେ ସେ ଦୁହିଁଙ୍କ ମଧ୍ୟରେ ଦ୍ୱେଷ ଜାତ ହୋଇଯାଏ । କାରଣ ଲୌକିକ ପ୍ରେମରେ କାମର ହିଁ ପ୍ରାଧାନ୍ୟ ଥାଏ । ଏଇ କ୍ଷଣସ୍ଥାୟୀ ଦେହକୁ ନେଇ ସୃଷ୍ଟି ହୋଇଥିବା ପ୍ରେମ, ପ୍ରେମ ନହୋଇ ମୋହ ହୋଇଥାଏ । ମୋହ ଦୁଃଖର କାରଣ ହୋଇଥାଏ । ତେଣୁ ଯେଉଁମାନେ ପ୍ରେମ କରିବାକୁ ଇଚ୍ଛୁକ ସେମାନେ ଦେହ ସହିତ ପ୍ରେମ ନକରି ଆତ୍ମା, ଆତ୍ମା ସହିତ ପ୍ରେମ କରିବା ଉଚିତ । ଏହାଦ୍ୱାରା ତାକୁ କେବେ ବି ଦୁଃଖ ଉଠାଇବାକୁ ପଡ଼ିବ ନାହିଁ କାରଣ ଶ୍ରୀହରି ହିଁ ସମସ୍ତଙ୍କର ସୁହୃଦ ସର୍ବାନ୍ତର୍ଯ୍ୟାମୀ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ବର୍ତ୍ତମାନ ମୁଁ ଆପଣମାନଙ୍କୁ ଦେବଯାନୀ ଏବଂ କଚଙ୍କର ଅଭିଶାପ ବିଷୟ ଶୁଣାଇଛି । ଭଗବାନ ବ୍ରହ୍ମାଙ୍କର ପୁତ୍ର ହେଲେ ଅଙ୍ଗିରା ଏବଂ ଅଙ୍ଗିରାଙ୍କର ଦୁଇପୁତ୍ର ହେଲେ—ବଡ଼ ଉତଥ୍ୟ ଏବଂ ଶ୍ରେଷ୍ଠ ବୃହସ୍ପତି । ବୃହସ୍ପତିଙ୍କୁ ଦେବତାମାନେ ନିଜ ପୁରୋହିତ କରିନେଲେ । ତେଣୁ ସେ ସ୍ୱର୍ଗରେ ରହିଲେ । ମର୍ତ୍ତ୍ୟଲୋକର ରାଜାମାନଙ୍କର ପୁରୋହିତ କରିବା ସେ ଛାଡ଼ିଦେଲେ । ତାଙ୍କର ଜ୍ୟେଷ୍ଠପୁତ୍ର ହେଲେ କଚ । କଚ ଅତ୍ୟନ୍ତ ଧର୍ମାତ୍ମା ତଥା ସଦାଚାରୀ ଥିଲେ ।"

ବ୍ରହ୍ମାଙ୍କର ଦ୍ୱିତୀୟପୁତ୍ର ଥିଲେ ଭୃଗୁ । ତାଙ୍କର ଶୁକ୍ର ନାମକ ପୁତ୍ର ହେଲେ, ସେ ଉଶନା କବି ତଥା ଭାର୍ଗବ ଆଦି ନାମରେ ମଧ୍ୟ ବିଖ୍ୟାତ ହୋଇଥିଲେ । ସେ ଅସୁରମାନଙ୍କର ପୁରୋହିତ ହେଲେ । ସେ ସଦାବେଳେ ଅସୁରମାନଙ୍କ ସପକ୍ଷରେ ତଥା ଦେବତାମାନଙ୍କ ବିପକ୍ଷରେ ରହିଥାଆନ୍ତି ।"

ଏହା ଶୁଣି ଶୌନକ ମୁନି କହିଲେ—"ସୂତ ମୁନି ! ବ୍ରାହ୍ମଣ ହୋଇ ମଧ୍ୟ ଶୁକ୍ରାଚାର୍ଯ୍ୟ ଦେବତାମାନଙ୍କର ବିପକ୍ଷରେ କାହିଁକି ରହୁଥିଲେ !"

ସୂତ ମୁନି କହିଲେ—"ମହାରାଜ ! ଏ ତ ଭଗବାନଙ୍କର ଲୀଳା । ବିନା ପକ୍ଷରେ କ'ଣ ନାଟକ ହୋଇପାରେ ! ଏମିତି ତ ନାଟକ ମଧ୍ୟରେ ସବୁ ପାତ୍ରଙ୍କ

Digitized by srujanika@gmail.com

ମଧ୍ୟରେ ମିଳାମିଶା ଥାଏ । କିନ୍ତୁ ଯେତେବେଳେ ସେମାନେ ରଙ୍ଗମଞ୍ଚକୁ ଓହ୍ଲାଇ ଆସନ୍ତି ସେତେବେଳେ ପରସ୍ପର ସହ ଯୁଦ୍ଧ କରନ୍ତି । ଖେଳରେ ତ ସବୁକିଛି କରିବାପାଇଁ ପଡ଼େ । ଭଗବାନ ହିଁ ସେମାନଙ୍କୁ ପ୍ରେରଣା ଦେଇ ସେମାନଙ୍କଦ୍ୱାରା ସବୁକିଛି କରାନ୍ତି । କିନ୍ତୁ ଅସୁରମାନେ ସଦାସର୍ବଦା ଦେବତାମାନଙ୍କ ସହିତ ଲଢ଼େଇ କରୁଥିଲେ । ଅସୁରମାନେ ଦେବତାମାନଙ୍କୁ ମାରି ଭୃଗୁ ପତ୍ନୀଙ୍କ ଘରେ ଲୁଚି ଯାଇଥିଲେ । ଦେବତାମାନେ ସେଠାକୁ ଯାଇପାରୁ ନଥିଲେ । ଭୃଗୁ ପତ୍ନୀ ଅସୁରଙ୍କପାଇଁ ବହୁତ ପକ୍ଷପାତ କରୁଥିଲେ । ଦେବତାମାନେ ଯାଇ ଭଗବାନ ବିଷ୍ଣୁଙ୍କୁ ସବୁକଥା କହିଲେ । ଭଗବାନ କହିଲେ—"ଭଲକଥା, ଆମେ ମଧ୍ୟ ଭୃଗୁ ପତ୍ନୀଙ୍କୁ ଦେଖି ନେବା । ଏଇ ସର୍ବାନ୍ତର୍ଯ୍ୟାମୀଙ୍କ ପାଇଁ ଭଲମନ୍ଦ ବୋଲି କିଛି ନାହିଁ । ଦୈତ୍ୟମାନେ ଯେତେବେଳେ କ୍ଳାନ୍ତ ହୋଇ ଭୃଗୁ-ପତ୍ନୀଙ୍କ ଘରେ ଆସି ଲୁଚିଗଲେ, ସେତେବେଳେ ସେ ସୁଦର୍ଶନ ନେଇ ସେଇ ଘରେ ପଶି ଦୈତ୍ୟମାନଙ୍କୁ ବଧ କଲେ ଏବଂ ଭୃଗୁ ପତ୍ନୀଙ୍କର ମୁଣ୍ଡ ମଧ୍ୟ କାଟିଦେଲେ । ଏହାଦ୍ୱାରା ଭଗବାନ ଭୃଗୁ ଅତ୍ୟନ୍ତ କ୍ରୁଦ୍ଧ ହେଲେ ଏବଂ ବିଷ୍ଣୁ ଭଗବାନଙ୍କୁ ଅଭିଶାପ ଦେଲେ—"ଯାଅ ମତେ ଯେପରି ତୁମେ ପତ୍ନୀ-ହୀନ କରିଛ ସେମିତି ମର୍ତ୍ତ୍ୟରେ ତୁମେ ମନୁଷ୍ୟ ରୂପେ ଅନେକ ଦିନଯାଏ ପତ୍ନୀ-ହୀନ ହୋଇ ରୁହ ।" ଶୁକ୍ର ସେତେବେଳେ ଶ୍ରେଷ୍ଠ ଥିଲେ । ତାଙ୍କର ମଧ୍ୟ ବିଷ୍ଣୁଙ୍କ ଉପରକୁ କ୍ରୋଧଜାତ ହେଲା । ଅସୁରମାନେ ଜଣେ ପୁରୋହିତ ଖୋଜୁଥିଲେ । ତେଣୁ ଦୁଇଜଣଯାକ ପରସ୍ପରର ଅନୁକୂଳ ହେଲେ । ଶୁକ୍ର ଅସୁରମାନଙ୍କୁ ଶିଖେଇ ଶାଖେଇ ତାଙ୍କୁ ନିଜର ଶିଷ୍ୟ କରିନେଲେ । ସଜ୍ଜନ ପୁରୁଷ ଯାହାକୁ ଥରେ ସ୍ୱୀକାର କରି ନିଅନ୍ତି ତାକୁ ସାରାଜୀବନରେ ଆଉ ତ୍ୟାଗ କରନ୍ତି ନାହିଁ । ତେଣୁ ଶୁକ୍ରାଚାର୍ଯ୍ୟ ଦିନରାତି କେବଳ ଅସୁରଙ୍କ ହିତ ଚିନ୍ତା କରିଥାନ୍ତି ।"

ଶୁକ୍ରାଚାର୍ଯ୍ୟ ଯେତେବେଳେ ଶ୍ରେଷ୍ଠ ଥିଲେ ତାଙ୍କ ପିତା ମନେ ମନେ ଚିନ୍ତା କଲେ—"ଏ ମୋ ପାଖରେ ପଢ଼ିବ ନାହିଁ କାରଣ ସ୍ନେହ-ମମତା ଯୋଗୁଁ ପିତାଙ୍କ ପାଖରେ ପୁତ୍ର ପଢ଼ି ପାରନ୍ତି ନାହିଁ ।" ତେଣୁ ସେ ତାଙ୍କୁ ନିଜ ଭାଇ ଅଙ୍ଗିରାଙ୍କ ନିକଟକୁ ନେଇଗଲେ ଏବଂ ତାଙ୍କୁ କହିଲେ—"ଏଇ ଶୁକ୍ରକୁ ତୁମେ ହିଁ ଭଲଭାବେ ପଢ଼ାଇ ମଣିଷ କରି ପାରିବ ।" ଅଙ୍ଗିରା ମୁନିଙ୍କ ପାଖରେ ତାଙ୍କ ପୁତ୍ର ବୃହସ୍ପତି, ତଥା ଅନ୍ୟାନ୍ୟ ଅନେକ ଋଷିପୁତ୍ର ପଢ଼ୁଥିଲେ । ତାଙ୍କ ସାଥିରେ ଶୁକ୍ର ମଧ୍ୟ ପଢ଼ିଲେ । ପଢ଼ି ସାରିବା ପରେ ଶୁକ୍ରାଚାର୍ଯ୍ୟ ଅସୁରମାନଙ୍କର ତଥା ବୃହସ୍ପତି ଦେବତାମାନଙ୍କର ପୁରୋହିତ ହେଲେ । ତେଣୁ ଦୁଇଜଣଙ୍କର ସଦାସର୍ବଦା କିଛି ନା କିଛି ଝଗଡ଼ା ଲାଗିରହୁଥିଲା । ହୁଏତ ନିଜ ନିଜର ଯଜମାନମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସେ ଦୁହେଁ ପରସ୍ପରର ବିରୋଧ କରୁଥିଲେ କିନ୍ତୁ ବଂଶଗତ ସମ୍ବନ୍ଧ ହେତୁ ଦୁହିଁଙ୍କ ମଧ୍ୟରେ ଆନ୍ତରିକ ସଦ୍‌ଭାବ ମଧ୍ୟ ଥିଲା ।

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ ମୃତସଞ୍ଜୀବନୀ ବିଦ୍ୟା ଜାଣିଥିଲେ । ତେଣୁ ଯୁଦ୍ଧରେ ଯେଉଁ ଦୈତ୍ୟର ମୃତ୍ୟୁ ହେଉଥିଲା ତାକୁ ସେ ତୁରନ୍ତ ଜୀବନନ୍ୟାସ ଦେଇ ଦେଉଥିଲେ । ବୃହସ୍ପତିଙ୍କୁ ଏ ବିଦ୍ୟା ଜଣା ନଥିଲା । ତେଣୁ ଯୁଦ୍ଧରେ ଦେବତାମାନଙ୍କୁ ଅସୁରମାନେ ପରାଜୟ କରି ଯାଉଥିଲେ । ଦେବତାମାନେ ଭାବୁଥିଲେ—"କୌଣସି ଉପାୟରେ ଯଦି ଆମ ପୁରୋହିତ ମୃତସଞ୍ଜୀବନୀ ବିଦ୍ୟା ଜାଣି ଯାଆନ୍ତେ ତେବେ ଆମର ବହୁତ ଲାଭ ହୁଅନ୍ତା ।" ସେତେବେଳଯାଏଁ ବୋଧେ ସମୁଦ୍ର ମନ୍ଥନ ହୋଇ ନଥିଲା ।

ଦେବତାମାନେ ଏକଥା ମଧ୍ୟ ଜାଣିଥିଲେ ଯେ ମୃତସଞ୍ଜିବନୀ ବିଦ୍ୟା କେବଳ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ହିଁ ଅଛି । ଆମ ପୁରୋହିତ ତାଙ୍କ ନିକଟକୁ ଯାଇ ମଧ୍ୟ ପାରିବେ ନାହିଁ । ତେବେ ଗୁରୁ ପୁତ୍ର କଚ ତାଙ୍କ ନିକଟକୁ ଯାଇପାରନ୍ତି ।" ବଡ଼ମାନଙ୍କର ପରସ୍ପର ମଧ୍ୟରେ ଶତ୍ରୁତା ଥିଲେ ସୁଦ୍ଧା ଛୋଟମାନଙ୍କର ସେଥିରେ କିଛି ଯାଏଆସେ ନାହିଁ ।" ଏହା ଭାବି ଦେବତାମାନେ ଗୁରୁପୁତ୍ର କଚଙ୍କ ନିକଟକୁ ଗଲେ ଏବଂ କହିଲେ—"ଗୁରୁପୁତ୍ର ! ଆମର ଗୋଟାଏ ବଡ଼କାମ ଅଛି । ଆପଣ ଏକା ହିଁ ତାହା କରି ପାରିବେ । ଯେଉଁ ଉପାୟରେ ହେଉ ପଛେ ଆପଣ ଯାଇ ଶୁକ୍ରାଚାର୍ଯ୍ୟଙ୍କ ନିକଟରୁ ମୃତସଞ୍ଜିବନୀ ବିଦ୍ୟା ଶିଖି ଆସନ୍ତୁ ।"

କଚ କହିଲେ—"ଦେବତାଗଣ ! ଶୁକ୍ରାଚାର୍ଯ୍ୟ ତ ଅସୁରଙ୍କ ପକ୍ଷ ନେଇ ଆପଣଙ୍କ ସହିତ ଦ୍ୱେଷଭାବ ରଖୁଛନ୍ତି । ସେ ମୋତେ ଏହି ବିଦ୍ୟା କାହିଁକି ବା ଶିଖାଇବେ ?"

ଦେବତାମାନେ କହିଲେ—"ସେ ବ୍ରାହ୍ମଣ ! ବ୍ରହ୍ମବାଦୀ । ତାଙ୍କ ଶିଷ୍ୟ ହୋଇ ଯେ ତାଙ୍କ ନିକଟରୁ ବିଦ୍ୟା ଶିକ୍ଷା ନିମନ୍ତେ ଯିବ ତାକୁ ସେ ମନା କରିବେ ନାହିଁ । ତା'ଛଡ଼ା ଆପଣଙ୍କ ନିକଟରେ ଯେପରି ବୃହସ୍ପତି ସେହିପରି ଶୁକ୍ରାଚାର୍ଯ୍ୟ । ପିଲମାନଙ୍କ ସହିତ କେହି ଦ୍ୱେଷଭାବ ରଖନ୍ତି ନାହିଁ । ଆପଣ ଆପଣଙ୍କର ସେବାଦ୍ୱାରା, ବିନୟ ଭାବଦ୍ୱାରା, ତାଙ୍କୁ ସନ୍ତୁଷ୍ଟ କରି ନିଅନ୍ତୁ । ସେ ନିଶ୍ଚୟ ଆପଣଙ୍କୁ ଏ ବିଦ୍ୟା ପ୍ରଦାନ କରିବେ । ଆମେ ଆପଣଙ୍କୁ ଏକ ରହସ୍ୟ କଥା କହି ଦେଉଛୁ । ଶୁକ୍ରାଚାର୍ଯ୍ୟଙ୍କର ଏକମାତ୍ର କନ୍ୟା ଦେବଯାନୀ । ତା' ପ୍ରତି ଶୁକ୍ରାଚାର୍ଯ୍ୟଙ୍କର ଅକୁଣ୍ଠ ସ୍ନେହ । ସେ ଯାହା କହେ ତାହା ସେ ଏଡ଼ାଇ ଦେଇ ପାରନ୍ତି ନାହିଁ । ଆପଣ ଶୁକ୍ରାଚାର୍ଯ୍ୟଙ୍କ ଅପେକ୍ଷା ତାକୁ ହିଁ ଅଧିକ ମାନିବେ, ତା'ର ପ୍ରତ୍ୟେକ କଥା ସାବଧାନରେ ପାଳନ କରିବେ । ଯଦି ଆପଣ ତାକୁ ସନ୍ତୁଷ୍ଟ କରିଦେବେ ତେବେ ଧରିନିଅନ୍ତୁ ଯେ ଶୁକ୍ରାଚାର୍ଯ୍ୟଙ୍କୁ ଆପଣ ଗୁରୁରୂପେ ପାଇଗଲେ । ଆପଣ ବ୍ରହ୍ମଚର୍ଯ୍ୟ ପାଳନ ପୂର୍ବକ, ଯେତେବେଳଯାଏ ବିଦ୍ୟାପ୍ରାପ୍ତ ନ ହୋଇଛି ସେତେବେଳଯାଏ ଶୁକ୍ରଙ୍କ ନିକଟରେ ରହନ୍ତୁ । ଆଜିକାଲି ସେ ପୃଥିବୀର ଦୈତ୍ୟରାଜ ବୃଷପର୍ବାଙ୍କ ନିକଟରେ ହିଁ ନିବାସ କରୁଛନ୍ତି ।"

Digitized by srujanika@gmail.com

ଦେବତାମାନଙ୍କର ପ୍ରାର୍ଥନାକୁ ଗୁରୁପୁତ୍ର ସ୍ୱୀକାର କରି ନେଲେ। ସେ ସ୍ୱର୍ଗରୁ ବୃଷପର୍ବାଙ୍କ ନଗରୀକୁ ଆସିଲେ । ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଆସି ସେ ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ହାତଯୋଡ଼ି ନମ୍ରତା ସହକାରେ କହିଲେ—"ଭଗବନ୍ ! ମୁଁ ଦେବଗୁରୁ ବୃହସ୍ପତିଙ୍କର ପୁତ୍ର, ମହର୍ଷି ଅଙ୍ଗିରାଙ୍କର ପୌତ୍ର । ମୋର ନାମ କଚ । ସହସ୍ର ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ କରି ମୁଁ ଆପଣଙ୍କ ନିକଟରେ ରହିବା ନିମନ୍ତେ ଆସିଛି ।

ଏହାଶୁଣି ପ୍ରସନ୍ନତା ଦେଖାଇ ଶୁକ୍ରାଚାର୍ଯ୍ୟ କହିଲେ—"କଚ ! ତୁମେ ଆସି ଭଲ କଲ ! ତୁମେ ଭଗବାନ ଅଙ୍ଗିରାଙ୍କ ସମ୍ବନ୍ଧରୁ ଯେପରି ବୃହସ୍ପତିଙ୍କ ପୁତ୍ର ସେହିପରି ମୋର ମଧ୍ୟ ପୁତ୍ର । ତୁମେ ମୋ ନିକଟରେ ରୁହ । ମୁଁ ତୁମକୁ ବିଦ୍ୟାଦାନ ଦେବି ।" ଏହାଶୁଣି କଚ ଆନନ୍ଦିତ ହେଲେ ଏବଂ ଶୁକ୍ରାଚାର୍ଯ୍ୟଙ୍କ ଘରେ ରହିବାକୁ ଲାଗିଲେ ।

ସୂତମୁନି କହୁଛନ୍ତି—"ମୁନିମାନେ ! ପ୍ରାଚୀନ କାଳରେ ଶିଷ୍ୟମାନେ ବିବିଧ ବିଷୟ, ଅନେକ ବହି, ଲେଖନୀ ତଥା ତାଳପତ୍ର ନେଇ ବିଦ୍ୟାଳୟକୁ ନିର୍ଦ୍ଦିଷ୍ଟ ସମୟରେ ଯାଉ ନଥିଲେ । ସେ ସମୟରେ ଗୁରୁ ହିଁ ଚଳନ୍ତା ପୁସ୍ତକାଳୟ ଏବଂ ଜ୍ଞାନର ଭଣ୍ଡାର ଥିଲେ । ଶିଷ୍ୟମାନେ ତାଙ୍କ ନିକଟରେ ରହୁଥିଲେ । ଗୁରୁ ତଥା ଗୁରୁପତ୍ନୀ ତାଙ୍କୁ ପୁତ୍ରପରି ଘରେ ସସ୍ନେହ ରଖୁଥିଲେ । ପରିବାରର ଲୋକଙ୍କ ପରି ଗୁରୁଙ୍କର ଘୋଟି ବଡ଼ ସବୁପ୍ରକାରର କାର୍ଯ୍ୟ ଶିଷ୍ୟ କରୁଥିଲେ । ସେ ଗୁରୁଙ୍କ ନିକଟରୁ ଆଚାର ବ୍ୟବହାର ଶିକ୍ଷା କରୁଥିଲେ । କେବଳ ଲେଖାପଢ଼ା ଶିଖିବାକୁ ବିଦ୍ୟା କୁହାଯାଏ ନାହିଁ । ସୁନ୍ଦର ଲେଖା ଲେଖିଲେ, ଭଲଭାବରେ ବହି ପଢ଼ିଦେଲେ ବା ବ୍ୟାଖ୍ୟା କରିଦେବାକୁ କଳା ହିଁ କୁହନ୍ତି । ବିଦ୍ୟା ତ ତାକୁ ହିଁ କୁହାଯାଏ ଯାହା ଆମକୁ ମୁକ୍ତିର ମାର୍ଗ ଦେଖାଏ । ସେଥିପାଇଁ ସତ୍ୟ, ସଦାଚାର, ସହନଶୀଳତା, ସଂଯମ, ସରଳତା ଏବଂ ସଦ୍‌ଗୁଣ ପରମ ଆବଶ୍ୟକ ଅଟେ । ଏସବୁ ନିଷ୍କପଟ ଭାବରେ ସଦ୍‌ଗୁରୁଙ୍କ ସେବା କରିବାଦ୍ୱାରା ପ୍ରାପ୍ତ ହୋଇଥାଏ । ପ୍ରାଚୀନ କାଳରେ ବ୍ରହ୍ମଚାରୀ ବିଦ୍ୟାର୍ଥୀ ଏହା ହିଁ କରୁଥିଲେ । ତାଙ୍କ ନିକଟରେ ଅକ୍ଷରଜ୍ଞାନର ସେତେ ମହତ୍ତ୍ୱ ନଥିଲା । ସେ ଗୁରୁଙ୍କ ନିକଟକୁ ଯାଇ ପଢ଼ିବାପାଇଁ ପ୍ରାର୍ଥନା କରୁ ନଥିଲେ । ସେ ନିଜ ମଧ୍ୟରେ ଯୋଗ୍ୟତା ଆଣିବା ନିମନ୍ତେ ଚେଷ୍ଟା କରୁଥିଲେ । ତା'ପରେ ଗୁରୁ ସନ୍ତୁଷ୍ଟ ହୋଇ ଚାହିଁଲେ ଗୋଟିଏ ଦିନ ମଧ୍ୟରେ ତାଙ୍କୁ ସବୁ ବିଦ୍ୟା ପ୍ରଦାନ କରି ଦେଉଥିଲେ । ଅପାତ୍ରରେ ବିଦ୍ୟାଦାନ ହେଲେ ସେ ତା'ର ଦୁରୁପଯୋଗ କରିଥାଏ । ତମ୍ବା ପାତ୍ରରେ ରହିଥିବା ଅମୃତପରି ଦହି ବିଷରେ ପରିଣତ ହେବ । ପାତ୍ରତାର ପରୀକ୍ଷା କେବଳ ସଦ୍‌ଗୁରୁ ହିଁ କରିପାରନ୍ତି । ତେଣୁ ସଦ୍‌ଗୁରୁଙ୍କୁ ସନ୍ତୁଷ୍ଟ ରଖିବା ହିଁ ଶିଷ୍ୟର ପ୍ରଧାନ କର୍ତ୍ତବ୍ୟ ।"

କଚ ଅତ୍ୟନ୍ତ ସୁନ୍ଦର ଥିଲେ । ସେ ସୁଶୀଳ, ଶାନ୍ତ, ସଦାଚାରୀ, ସତ୍ୟପ୍ରତିଜ୍ଞ ସହୃଦୟ ତଥା ଉତ୍ତମ ପୁରୁଷ ଥିଲେ । ଦେବତାମାନେ ତାଙ୍କୁ କହିଥିଲେ ଯେ ତୁମେ

Digitized by srujanika@gmail.com

ଦେବଯାନୀଙ୍କୁ ସଦାସର୍ବଦା ସନ୍ତୁଷ୍ଟ ରଖୁଥିବ । ତେଣୁ ସେ ଗୁରୁଙ୍କଠାରୁ ମଧ୍ୟ ଅଧିକ ଦେବଯାନୀ ପ୍ରତି ଧ୍ୟାନ ଦେଉଥିଲେ । ସେ କହୁଥିବା କୌଣସି କାର୍ଯ୍ୟକୁ ସେ ମନା କରୁ ନଥିଲେ । ସେ ଗୀତଗାଇ ବାଜା ବଜାଇ ତାକୁ ଖୁସି କରାଉଥିଲେ । ସଦାସର୍ବଦା ସଂଯମପୂର୍ବକ ତାଙ୍କ ନିକଟରେ ରହୁଥିଲେ, ଆଖି ଉଠାଇ ତାକୁ ଚାହୁଁ ବି ନଥିଲେ । ଯେପରି ଗୋଟିଏ ଲତା ସମ୍ମୁଖରେ ଯେଉଁ ବୃକ୍ଷ ରହିଲେ ମଧ୍ୟ ସେ ତା' ଉପରେ ଲଟେଇ ହୋଇ ଉପରକୁ ଚାଲିଯାଏ, ସେହିପରି ଯୁବତୀ-ସ୍ତ୍ରୀ ନିକଟରେ ଯେପରି ପୁରୁଷ ରହିଲେ ସୁଦ୍ଧା ତା' ପ୍ରତି ତା'ର ଅନୁରାଗ ସ୍ୱାଭାବିକ ଭାବେ ଆସିଯାଏ । ଯଦି ସେ ବ୍ୟକ୍ତି ବର୍ଚ୍ଚସ୍ୱୀ, ସଦାଚାରୀ, ଉତ୍ତମ ହୃଦୟର ପ୍ରେମୀ ହୋଇଥାଏ ତେବେ ଆଉ କ'ଣ କହିବା ! ଅନୁରାଗ ଅନୁରାଗ ଫଳରେ ହିଁ ବଢ଼ିଥାଏ । ସଙ୍କୋଚ, ଶାଳୀନତା ତଥା ନୀରବତାରୁ ଉତ୍କଣ୍ଠା ବଢ଼ିଚାଲେ । ଅନୁରାଗର ଭୂଷଣ ହେଉଛି ଭାବ-ଗୋପନ । ଯେତିକି ଯେତିକି ନିଜ ପ୍ରତି ଅନୁରାଗୀ ଥିବା ବ୍ୟକ୍ତିର ଭାବ ଅଧ୍ୟୟନ କରାଯାଏ, ସେତିକି ସେତିକି ଅନୁରାଗ ବଢ଼ିଚାଲେ । ଦେବଯାନୀ ଗୋଟିଏ କାଳ୍ପନିକ ଚିତ୍ର ଆଙ୍କି ସାରିଥିଲେ । ସେ ମହର୍ଷିଙ୍କ କନ୍ୟା ଥିଲେ; ଧର୍ମଚାରିଣୀ ଥିଲେ । ସେ ଅନୁମାନ କରି ସାରିଥିଲେ ଯେ କଚ ସହସ୍ର ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ-ବ୍ରତ ରଖିଛନ୍ତି । ତେଣୁ ସେ ମନେ ମନେ ସ୍ଥିର କରିଥିଲେ ଯେତେବେଳେ ସେ ବିଧିପୂର୍ବକ ବ୍ରହ୍ମଚର୍ଯ୍ୟ ବ୍ରତ ପୂରା କରି ବ୍ରତାନ୍ତ-ସ୍ନାନ କରିବେ, ସେହି ସମୟରେ ମୁଁ ବିବାହ ପ୍ରସ୍ତାବ କରିବି । ଏ ତ ଶ୍ରେଷ୍ଠ ଶ୍ରେଷ୍ଠ କଥାକୁ ମଧ୍ୟ କେବେ ମନାକରି ନାହାନ୍ତି । ଆଉ ଏ ପ୍ରସ୍ତାବ ବା କାହିଁକି ପ୍ରତ୍ୟାଖ୍ୟାନ କରିବେ । ତା'ପରେ ଆମେ ଦୁହେଁ ପତି-ପତ୍ନୀ ରୂପେ ଆନନ୍ଦରେ ଦିନ କଟେଇବୁ । ମୋର ସମସ୍ତ ମନୋରଥ ପୂର୍ଣ୍ଣ ହୋଇଯିବ । ଏପରି ସୁନ୍ଦର, ସୁଶୀଳ, ସଂଯମୀ, ସଦାଚାରୀ, ସରସ, ସହୃଦୟ, ସତ୍ୟପ୍ରତିଜ୍ଞ, ସରଳ, ସାହସୀ, ସର୍ବସଦ୍‌ଗୁଣସମ୍ପନ୍ନ ସ୍ୱାମୀଙ୍କୁ ପାଇ ମୁଁ କୃତ କୃତ୍ୟ ହୋଇଯିବି ।'' ସେ କଚ ପ୍ରତି ମନେ ମନେ ଦାମ୍ପତ୍ୟ ଭାବ ସ୍ଥାପିତ କରି ସାରିଥିଲା । କିନ୍ତୁ ନିଜେ ଚେଷ୍ଟା କରି ଏଇ ଭାବକୁ ବ୍ୟକ୍ତ କରି ନଥିଲା । କାରଣ ସେ ତ ଗୁରୁପୁତ୍ରୀ ହିଁ ଥିଲା । ଯଦି ସେ ଆତ୍ମସମର୍ପଣ କରିଦେଇ ଥାଆନ୍ତା ତେବେ ଶାସନ କପରି କରି ଥାଆନ୍ତା ? ତା'ର ଅନୁରାଗର ସ୍ରୋତ ଫଲଗୁର ସ୍ରୋତ ପରି ଥିଲା । ଯାହା ଉପରେ ଉପରେ ଶୁଖିଲା କିନ୍ତୁ ଭିତରେ ଭିତରେ ସ୍ନେହର ପରିପୂର୍ଣ୍ଣ ଭଣ୍ଡାର ।

ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଅସୁରମାନଙ୍କୁ ଜଣା ପଡ଼ିଲା ନାହିଁ ଯେ ଏ ନବାଗତ ବିଦ୍ୟାର୍ଥୀ କିଏ ଏବଂ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ କାହିଁକି ରହୁଛି । ପରେ ସେମାନେ ଜାଣିପାରିଲେ, ଏ ତ ଆମ ଶତ୍ରୁମାନଙ୍କର ପୁରୋହିତଙ୍କ ପୁତ୍ର କଚ; ଆମ ପୁରୋହିତଙ୍କ-ଠାରୁ ମୃତସଞ୍ଜୀବନୀ ବିଦ୍ୟା ଶିଖିବାପାଇଁ ଆସିଛି । ଯଦି ଶିଖିବା ପରେ ଚାଲିଯିବ ତେବେ ଦେବତାମାନେ ମଧ୍ୟ ଆମ ସହ ସମାନ ହୋଇଯିବେ । ତେଣୁ ଏହାକୁ କୌଣସି

Digitized by srujanika@gmail.com

ପ୍ରକାରେ ମାରି ଦେବା ଉଚିତ ।" ଏହା ଭାବି ଅସୁରମାନେ କେତେକ ଗୁପ୍ତଚର କଚ ପଛରେ ଲଗାଇ ଦେଲେ ।

କଚ ଯେତେବେଳେ ଜାଳେଣି ମୁଣ୍ଡରେ ରଖି ଗୁରୁଙ୍କ ଗାଈ ଅଡ଼େଇ ଅଡ଼େଇ ବଣରୁ ଆସୁଥିବାବେଳେ କ୍ଳାନ୍ତ ହୋଇ ଗୋଟିଏ ବରଗଛ ମୂଳରେ ବସିଗଲେ । ଏହି ସମୟରେ ଦଶ କୋଡ଼ିଏ ଜଣ ଅସୁର ତାଙ୍କ ନିକଟକୁ ଆସି ଘେରିଗଲେ ଏବଂ ପଚାରିଲେ—"ତୁ କିଏ ?"

କଚ କହିଲେ—"ମୁଁ ଦେବଗୁରୁ ବୃହସ୍ପତିଙ୍କ ପୁତ୍ର ତଥା ମହର୍ଷି ଅଙ୍ଗିରାଙ୍କର ପୌତ୍ର । ମୋର ନାମ କଚ । ଭଗବାନ ଶୁକ୍ରାଚାର୍ଯ୍ୟଙ୍କର ମୁଁ ଶିଷ୍ୟ । ତାଙ୍କର ଗାଈ ଚରାଇ ସମିଧ ନେଇ ଆଶ୍ରମକୁ ଫେରୁଛି ।"

ଏହା ଶୁଣି ଅସୁରମାନେ କଚଙ୍କୁ ଧରି ତାଙ୍କୁ ଟିକି ଟିକି କରି ହାଣି ଦେଲେ ଏବଂ ଗଧିଆ ଶିଆଳଙ୍କୁ ଖୁଆଇ ଦେଇ ହସି ହସି ସେଠାରୁ ଚାଲିଗଲେ ।

ଗାଈଆଳ ବିନା ଗାଈ ସବୁ ଘରକୁ ଫେରିଆସିଲେ । ସନ୍ଧ ହୋଇଗଲା । କଚ ବଣରୁ ଫେରିଲେ ନାହିଁ । ଦେବଯାନୀ ବଡ଼ ଚିନ୍ତାରେ ପଡ଼ିଲା । ସେ ବାରମ୍ବାର ତାଙ୍କ ଆସିବା ବାଟକୁ ନିରୀକ୍ଷଣ କରୁଥିଲା, କିନ୍ତୁ କଚଙ୍କର କେଉଁଠି ପତ୍ତା ସୁଦ୍ଧା ନଥିଲା । ପ୍ରେମରେ ପାଦେ ପାଦେ ଶଙ୍କା ଲାଗି ରହିଥାଏ । ଦେବଯାନୀର ମଧ୍ୟ ଅନେକ ପ୍ରକାରର ଆଶଙ୍କା ହେଲା । କଚଙ୍କର କିଛି ଅନିଷ୍ଟ ହୋଇ ନାହିଁ ତ ! ଶୁକ୍ରାଚାର୍ଯ୍ୟ ଯେତେବେଳେ ହୋମ ଏବଂ ଜପସାରି ଉଠିଲେ ଦେବଯାନୀ ଡରି ଡରି କହିଲା—"ପିତା ! ଆପଣ ଆପଣଙ୍କ ନିତ୍ୟକର୍ମ ସାରିଲେଣି, ଗାଈ ବଣରୁ ଚରିସାରି ଫେରିଲେଣି, କିନ୍ତୁ ତାଙ୍କ ଗୋପାଳ କଚ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ । ପିତା ! ନିଶ୍ଚୟ ଅସୁରମାନେ ତାଙ୍କୁ ମାରି ଦେଇଛନ୍ତି । ଯଦି କଚ ନ ଆସିବେ ତେବେ ମୁଁ ଆଉ ଏ ଜୀବନ ରଖିବି ନାହିଁ ।"

ଶୁକ୍ରାଚାର୍ଯ୍ୟ କହିଲେ—"ଝିଅ ! ତୁ ଡରୁଛୁ କାହିଁକି ? ଯଦି ଅସୁରମାନେ ତାକୁ ମାରି ଦେଇଥିବେ ଆଉ ସେ ଯାଇ କାହା ପେଟ ଭିତରକୁ ବି ଚାଲିଯାଇଥିବ ତେବେ ମୁଁ ମୋର ମୃତ-ସଞ୍ଜିବନୀ ବିଦ୍ୟାଦ୍ୱାରା ତାକୁ ଜୀବିତ କରିଦେବି । ହଁ ଯଦି ସେ ପେଟ ଭିତରକୁ ଯାଇ ହଜମ ହୋଇ ନଥିବ, ତେବେ !"

ଏହାକହି ଶୁକ୍ରାଚାର୍ଯ୍ୟ ନିଜ ବିଦ୍ୟାର ପ୍ରୟୋଗ କଲେ । ତା' ପ୍ରଭାବରୁ କଚ ଯାହା ପେଟରେ ଥିଲେ ତାଙ୍କ ପେଟରୁ ବାହାରି ଯୋଡ଼ି ହୋଇଗଲେ ଓ ଭଲରେ

Digitized by srujanika@gmail.com

କଲେରେ ଘରକୁ ଫେରି ଆସିଲେ । ଦେବଯାନୀ ତାଙ୍କର ବିଳମ୍ବର କାରଣ ପଚାରିବାରୁ କଚ ସତ ସତ ସବୁକଥା କହି ଦେଲେ । ଏହାଶୁଣି ସେ ବହୁତ ଦୁଃଖ କଲି ଏବଂ—କହିଲି "ତୁମେ ଅଉ ଗାଈ ଚରାଇବାକୁ ଯାଅ ନାହିଁ ।" କଚ ଏ କଥା ମାନିନେଲେ ।

ଦିନେ ସେ ସମିଧା ଦେଖା ଉଦ୍ଦେଶ୍ୟରେ ବଣକୁ ଯାଉଥିଲେ । ବାଟରେ ପୁଣି ସେ ଅସୁରମାନଙ୍କ ହାବୁଡ଼ରେ ପଡ଼ି ଗଲେ । ଅସୁରମାନେ ତାଙ୍କୁ କଚ ବୋଲି ଚିହ୍ନି ମାରିଦେଇ ତାଙ୍କ ମୃତଦେହକୁ ପଥରରେ ବାନ୍ଧି ସମୁଦ୍ରରେ ପକାଇ ଦେଲେ ।

ଦେବଯାନୀର ପୁଣି ସେଇ ଆଶଙ୍କା ହେଲା । ସେ ପୁଣି ନିଜ ପିତାଙ୍କୁ କହି କଚକୁ ଜୀବିତ କରାଇଲା । ଅସୁରଙ୍କୁ ଯେତେବେଳେ ଏ କଥା ଜଣା ପଡ଼ିଲା ସେମାନେ ଭାବିଲେ—"ଆମ କଚକୁ ମାରୁଛୁ କିନ୍ତୁ ଶୁକ୍ରାଚାର୍ଯ୍ୟ ତାକୁ ନିଜ ବିଦ୍ୟା ପ୍ରଭାବରେ ବଞ୍ଚାଇ ଦେଉଛନ୍ତି । ଏବେ ଏମିତି କିଛି କରିବା ଯେମିତିକି ସେ ଶୁକ୍ରାଚାର୍ଯ୍ୟଙ୍କ ପେଟରେ ହିଁ ପହଞ୍ଚିଯିବ । ଯାହାଫଳରେ ନିଜ ପେଟଫାଟି ନିଜ ଜୀବନ ଯିବା ଭୟରେ ସେ ଏହାକୁ ଆଉ ପୁନର୍ଜୀବିତ କରିବେ ନାହିଁ ।" ଏଇଆ ଭାବି ସେମାନେ ଦିନେ କଚକୁ ଏକାନ୍ତରେ ପାଇ ମାରି ଦେଲେ ଏବଂ ତା' ଶରୀରକୁ ଜଳାଇ, ତା'ର ପାଉଁଶକୁ ବାଟି ମଦ୍ୟରେ ମିଶାଇ ଶୁକ୍ରାଚାର୍ଯ୍ୟଙ୍କୁ ପିଇବାକୁ ଦେଲେ ।

ସେଇ ସମୟରେ ସୁରାପାନକୁ ନିଷେଧକରି ଏପରି କଡ଼ା ନିୟମ ଜାରି ହୋଇ ନଥିଲା । ଶୁକ୍ରାଚାର୍ଯ୍ୟ ନିଜ ଅଜାଣତରେ ସୁରା ସହିତ କଚଙ୍କର ପାଉଁଶ ମଧ୍ୟ ଉଦରସ୍ଥ କରି ଦେଲେ ! ପ୍ରତିଦିନ ପରି ସନ୍ଧ୍ୟାସମୟରେ ଯେତେବେଳେ କଚ ନ ଫେରିଲେ ଦେବଯାନୀ ନିଜ ପିତାଙ୍କୁ କହିଲା—"ପିତା ! କଚ ତ ଆଜି ବି ଆସିଲେ ନାହିଁ ! ମନେ ହେଉଛି ଅସୁରମାନେ ପୁଣି ଆଜି ତାଙ୍କୁ ମାରି ଦେଇଛନ୍ତି ।"

ଶୁକ୍ରାଚାର୍ଯ୍ୟ କହିଲେ—"ଝିଅ, ଏବେ ତୁ କହ, ମୁଁ ଆଉ କ'ଣ କରିପାରିବି । ଏ ଦୁଷ୍ଟ ଅସୁରମାନେ ତ ତା' ପିଛା ଧରିଛନ୍ତି । ମୁଁ ବାରମ୍ବାର ମୋ ମନ୍ତ୍ର ବଳରେ ତାକୁ ଜୀବିତ କରୁଛି, ଅସୁରମାନେ ବାରମ୍ବାର ତାକୁ ମାରି ଦେଉଛନ୍ତି । ମୁଁ ଆଉ ତାକୁ କେତେ ରକ୍ଷା କରିବି ?"

ଦେବଯାନୀ କହିଲା—"ପିତା ! କଚ ଧର୍ମାତ୍ମା, ସୁଶୀଳ, ସଦାଚାରୀ ତଥା ଆପଣଙ୍କର ପ୍ରିୟ ଶିଷ୍ୟ । ମୋତେ ମଧ୍ୟ ସେ ବହୁତ ଭଲ ଲାଗନ୍ତି । ଆପଣ ଯେ କୌଣସି ମତେ ତାଙ୍କୁ ବଞ୍ଚାଇବେ । ନ ହେଲେ ମୁଁ ମଧ୍ୟ ତାଙ୍କ ବିନା ଜୀବିତ ରହି ପାରିବି ନାହିଁ ।"

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ ଅଭିମାନ ସ୍ୱରରେ କହିଲେ—"ଦେବଯାନୀ, ତୁ ତ ପିଲାଳିଆମୀ କରୁଛୁ ଝିଅ; ଭାଗ୍ୟକୁ କିଏ ଅନ୍ୟଥା କରିପାରିବ ? କଚପାଇଁ ତୁ ଆଉ ଏତେ ଚିନ୍ତା କର ନାହିଁ ।"

ଦେବଯାନୀ କହିଲ—ପିତା ! ମୁଁ ଏମିତି ପିତାଙ୍କର କନ୍ୟା ଯେ କି ଭାଗ୍ୟ ରେଖା ଉପରେ ମଧ୍ୟ ହସ୍ତକ୍ଷେପ କରିବାରେ ସମର୍ଥ । ମୁଁ ସେଇ ବାବାଙ୍କର ପୌତ୍ରୀ ଯେ ସାକ୍ଷାତ ବିଷ୍ଣୁ ଭଗବାନଙ୍କର ଗୃହରେ ମାତମାରି ତାଙ୍କୁ ଅଭିଶାପ ଦେଇ ଦଶାବତାର ଗ୍ରହଣ କରିବାପାଇଁ ବାଧ୍ୟ କରି ଦେଇଥିଲେ । ଯାହା ହେଲେ ସୁଦ୍ଧା କଚଙ୍କୁ ତ ଆପଣଙ୍କୁ ଜୀବିତ କରିବାପାଇଁ ପଡ଼ିବ ।"

ଶୁକ୍ରାଚାର୍ଯ୍ୟ ଆଉ କରନ୍ତେ କଅଣ ? ଝିଅର ଆଗ୍ରହ ସେ ଆଉ ଏଡ଼ାଇ ପାରିଲେ ନାହିଁ । ମନ୍ତ୍ର ପଢ଼ି ସେ ଯେମିତି କହିଲେ—"ପୁତ୍ର କଚ ! ଆସିଯାଅ ଆସିଯାଅ ।" ସେମିତି କଚ ଗୁରୁଙ୍କ ପେଟ ଭିତରେ ଜୀବିତ ହୋଇ କହିଲେ—ଗୁରୁଦେବ ମୁଁ ଆପଣଙ୍କ ଉଦରସ୍ଥ ହୋଇଯାଇଛି । ବର୍ତ୍ତମାନ ଆସିବି କିପରି ?"

ଆଶ୍ଚର୍ଯ୍ୟ ହୋଇ ଶୁକ୍ରାଚାର୍ଯ୍ୟ ପଚାରିଲେ—"ପୁତ୍ର ! ତୁମେ ମୋର ଉଦରସ୍ଥ ହେଲ କିପରି ?"

କଚ କହିଲେ—"ଭଗବନ୍ ! ଅସୁରମାନେ ମୋତେ ମାରି, ଜଳାଇଦେଇ, ସୁରାସହିତ ମିଶାଇ ଆପଣଙ୍କୁ ପିଆଇ ଦେଇଛନ୍ତି ।" ଏହାଶୁଣି ଶୁକ୍ରାଚାର୍ଯ୍ୟ ନିଜକୁ ଧିକ୍କାର କଲେ—"ଆରେ ! ଏ ତ ମୋ ଦ୍ୱାରା ବହୁତ ବଡ଼ ପାପ ହୋଇଗଲା ! ଆଜିଠାରୁ ମୁଁ ସଂସାରରେ ନିୟମ କରୁଛି ଯେ ଯେଉଁ ବ୍ରାହ୍ମଣ ସୁରାପାନ କରିବ, ତାକୁ ବ୍ରହ୍ମହତ୍ୟା ଦୋଷ ଲାଗିବ ।" ପୁଣି କଚକୁ ସମ୍ବୋଧନ କରି କହିଲେ—"ପୁତ୍ର ! ତୁ ସିଦ୍ଧ ହୋଇ ଗଲୁ । ତୁ ନିଜ ସେବା ବଳରେ ଦେବଯାନୀକୁ ସନ୍ତୁଷ୍ଟ କରି ଦେଇଛୁ । ମୁଁ ମଧ୍ୟ ତୋ' ଉପରେ ସନ୍ତୁଷ୍ଟ ହୋଇଛି । ବର୍ତ୍ତମାନ ମୁଁ ତୋତେ ବିଦ୍ୟା ଶିକ୍ଷା ଦେବି ।

କଚ କହିଲେ—"ଗୁରୁଦେବ ! ମୁଁ ଆପଣଙ୍କ ଉଦର ଫାଡ଼ି ବାହାରକୁ ଆସି ପାରିବି । କିନ୍ତୁ ମୁଁ ଏହା କରିବା ଦ୍ୱାରା ଆପଣଙ୍କର ମୃତ୍ୟୁ ହୋଇଯିବ । ପୁଣି ମୁଁ କାହା ନିକଟରୁ ବିଦ୍ୟାଶିକ୍ଷା କରିବି ?"

ଶୁକ୍ରାଚାର୍ଯ୍ୟ କହିଲେ—"ମୁଁ ତୋତେ ଉଦରରେ ହିଁ ମୃତ ସଞ୍ଜିବନୀ ବିଦ୍ୟା ଶିଖାଉଛି । ତୁ ତାହା ଶିଖି ମୋ ପେଟ ଫାଡ଼ି ବାହାରକୁ ଆସିବୁ ପୁଣି ମୋତେ ମଧ୍ୟ ସେଇ ବିଦ୍ୟା ପ୍ରଭାବରେ ଜୀବିତ କରାଇବୁ । ଦେଖ, ମୋ ସହିତ କପଟ କରିବୁ ନାହିଁ ।

"ଗୁରୁ ଠେଁ କପଟ ମିତ୍ର ଠେଁ ଚୋରି ।

Digitized by srujanika@gmail.com

କି ହୋଇ ନିର୍ଦ୍ଧନ କି ହୋଇ କେଉ ।" ବାହାରବାକ୍ଷଣୀ ମୋତେ ପ୍ରଥମେ ଜୀବିତ କରି ଦେବୁ ।

କଚ କହିଲେ—"ଗୁରୁଦେବ ! ଆପଣ ମୋତେ ବିଶ୍ୱାସ କରନ୍ତୁ । ମୁଁ ଆପଣଙ୍କ ଶିଷ୍ୟ ତା' ସହିତ ଉଦରସ୍ଥ ହୋଇଥିବାରୁ ପୁତ୍ର ମଧ୍ୟ । ମୁଁ ମୋ ଜୀବନରେ କେବେ ହେଲେ ଆପଣଙ୍କ ସହିତ କପଟ କରିବି ନାହିଁ ।"

ଏହାଶୁଣି ଶୁକ୍ରାଚାର୍ଯ୍ୟ ସନ୍ତୁଷ୍ଟ ହେଲେ । ସେ ନିଜ ଉଦରସ୍ଥିତ କଚଙ୍କୁ ମୃତ-ସଞ୍ଜୀବନୀ-ବିଦ୍ୟାର ଉପଦେଶ ଦେଲେ । କଚ ତାହା ବିଧିବଦ୍ଧ ଭାବରେ ଗ୍ରହଣ କଲେ । ସେ ତା'ପରେ ଗୁରୁଙ୍କ ଉଦର ଫାଡ଼ି ବାହାରକୁ ଆସିଲେ ଏବଂ ନିଜ ବିଦ୍ୟା ପ୍ରଭାବରେ ଗୁରୁଙ୍କୁ ମଧ୍ୟ ଜୀବିତ କରିଦେଲେ ।

ଏହି ପ୍ରସଙ୍ଗ ଶୁଣି ଶୌନକ ମୁନି କହିଲେ—"ସୂତ ମୁନି ! କଚର ଶୃଗାଳଙ୍କ ଉଦରରୁ ବାହାରି ଆସିବା, ପାଣିଭିତରୁ ବାହାରି ଆସି ଜୀବିତ ହେବା, ଶୁକ୍ରାଚାର୍ଯ୍ୟଙ୍କ ଉଦର ମଧ୍ୟରୁ ବାହାରି ଆସିବା; ଏ ସବୁ କଥା ଆମ ମୁଣ୍ଡରେ ଠିକ୍ ଭାବେ ପଶି ପାରୁନି । ଯେଉଁ ଦେହ ଟିକି ଟିକି କରି ଦିଆଗଲା, ପ୍ରାଣ ଶରୀର ତ୍ୟାଗ କରି ଚାଲିଗଲା ତା'ର ପୁନର୍ଜୀବିତ ହେବ ତ ଆମକୁ ସତ୍ୟର ଅପଲାପ ପରି ମନେହେଉଛି ।"

ହସିଦେଇ ସୂତ ମୁନି କହିଲେ—"ଆରେ ମହାରାଜ ! ମନ୍ତ୍ରବିଦ୍ୟା ଆଗରେ ଅସମ୍ଭବ କ'ଣ ? କଳିଯୁଗରେ ମନ୍ତ୍ରବିଦ୍ୟା ଲୁପ୍ତପ୍ରାୟ ହୋଇଯାଏ । ସେଥିପାଇଁ କଳିଯୁଗ ଲୋକେ ଏହାକୁ କମ୍ ବିଶ୍ୱାସ କରିବେ । ଏ ତ ଋଷି ମୁନିଙ୍କର ମନ୍ତ୍ର ବିଦ୍ୟାର କଥା । ମୁଁ ନଟଙ୍କ ଭିତରେ ଏ ବିଦ୍ୟା ପ୍ରତ୍ୟକ୍ଷ କରିଛି । ଗୋଟେ ନଟର ଆଖିରେ ଦେଖା ଗୋଟିଏ କାହାଣୀ ମୁଁ ଆପଣଙ୍କୁ ଶୁଣାଉଛି ।"

ଭାରତର ଜଣେ ବିଶିଷ୍ଟ ରାଜାଙ୍କ ନିକଟକୁ ଗୋଟିଏ ନଟ ନିଜ ନଟୀ ସହିତ ଆସିଲା । ଖେଳ ଦେଖାଇବାପାଇଁ ସେ କହିଲା—"ମହାରାଜ ! ମୁଁ ଏମିତି ଖେଳ ଦେଖାଇବି ଯାହା ଆପଣ କେବେ ବି ଦେଖି ନଥିବେ ।" ରାଜାଙ୍କର ବଡ଼ କୌତୁହଳ ହେଲା ।

ହଜାର ହଜାର ଦର୍ଶକ ନଟର ଖେଳ ଦେଖିବାପାଇଁ ଆସିଲେ । ସେ ଅନେକ ପ୍ରକାରର ଖେଳ ଦେଖାଇଲା । ଶେଷରେ ସେ ସୂତାର ବଣ୍ଡଲ ଆଣି ଉପରକୁ ପକାଇ ଦେଲା । ତାହା ବହୁତ ଦୂର ପର୍ଯ୍ୟନ୍ତ ଚାଲିଗଲା । ନଟ ସେହି ସୂତା ଉପରେ ଚଢ଼ିବାକୁ ଲାଗିଲା । ସମସ୍ତେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲା—"ମହାରାଜ ! ମୁଁ ସ୍ୱର୍ଗକୁ ଯାଉଛି । ମୋ ନଟୀର ରକ୍ଷା ଆପଣ ନେବେ ।"

Digitized by srujanika@gmail.com

ରାଜା ତା’ କଥା ସ୍ୱୀକାର କଲେ । ସେ ଉପରକୁ ଚଢ଼ି ଚଢ଼ି ଶେଷରେ ଅଦୃଶ୍ୟ ହୋଇଗଲା । ଏତିକିବେଳେ ଉପରୁ ତା’ର ଗୋଟିଏ ହାତ ତଳେ ପଡ଼ିଲା ନଟୀ ତାହା ଦେଖି ବହୁତ ଦୁଃଖ କଲା । ସେ କହିଲା—ସ୍ୱର୍ଗରେ ମୋର ପତିଙ୍କର ଅସୁରମାନଙ୍କ ସହ ଲଢ଼େଇ ହୋଇଗଲା । ସେମାନେ ହିଁ ତାଙ୍କର ବାହୁ କାଟି ତଳେ ପକାଇଛନ୍ତି ।” ସେ ସେହି ହାତକୁ ନେଇ କାନ୍ଦିବାକୁ ଲାଗିଲା । ସବୁ ଦର୍ଶକଙ୍କ ଆଖି ଲୁହ ଛଳଛଳ ହୋଇଗଲା । ଏହି ସମୟରେ ଆଉ ହାତଟି ମଧ୍ୟ ଖସିଲା । ତା’ପରେ ଗୋଡ଼, ପିଠି ଓ ଶେଷରେ ତା’ର କଟାମୁଣ୍ଡ ମଧ୍ୟ ଆସି ତଳେ ପଡ଼ିଲା । ନଟୀ ସେ ସବୁ ଅଙ୍ଗ ଏକାଠି କରି ରାଜାଙ୍କୁ କହିଲା—“ମୁଁ ସତୀ ହେବି ।” ରାଜା ତାକୁ ବହୁତ ମନାକଲେ । କିନ୍ତୁ ସେ ମାନିଲା ନାହିଁ । ଶେଷରେ ରାଜା ଚନ୍ଦନ କାଠ ମଗାଇଲେ । ସ୍ୱାମୀର ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ ସାଥୀରେ ନେଇ ନଟୀ ଜଳିଗଲା ଏବଂ କହିଗଲା—ଯେତେବେଳଯାଏ ଅଗ୍ନି ଶାନ୍ତ ନ ହୋଇଛି ଆପଣମାନେ ଏଇଠାରେ ହିଁ ବସି ରହିବେ ।” ଖେଳ ଭିତରେ ଏପରି ଏକ ଅପ୍ରିୟ ଘଟଣା ହୋଇଗଲା ଏହା ଦେଖି ରାଜା ତଥା ଅନ୍ୟ ସମସ୍ତ ଦର୍ଶକଙ୍କର ଆନ୍ତରିକ ଦୁଃଖ ହେଲା । ନଟ ନଟୀଙ୍କର ଶରୀର ଜଳି ଭସ୍ମ ହୋଇ ଗଲା, ଅଗ୍ନି ଲିଭିଯାଇ ଚିତା ଶାନ୍ତ ହୋଇଗଲା । ରାଜାଙ୍କର ଆଦେଶରେ ସମସ୍ତ ଦର୍ଶକ ଉଠିବାପାଇଁ ଚେଷ୍ଟା କରୁଥିଲେ, ଏଇ ସମୟରେ ଉପରୁ ଶୁଣାଗଲା—“ଅନ୍ନଦାତାଙ୍କର ଜୟ ହେଉ ।” ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଉପରକୁ ଅନାଇଲେ । ବିସ୍ମିତ ହୋଇ ସମସ୍ତେ ଦେଖିଲେ ଯେ ନଟ ଯେପରି ଭାବରେ ସୂତା ଉପରେ ଚଢ଼ି ଉପରକୁ ଯାଇଥିଲା ସେମିତି ଓହ୍ଲାଉ ଥିଲା । କିଛି ସମୟ ମଧ୍ୟରେ ସେ ଓହ୍ଲାଇ ତଳକୁ ଚାଲିଆସିଲା । ତଳକୁ ଆସି ସେ ରାଜାଙ୍କୁ ପ୍ରଣାମ କଲା ଏବଂ ରାଜାଙ୍କୁ କହିଲା—“ଅନ୍ନଦାତା ! ମୋ ନଟୀ କାହିଁ ?”

ରାଜା କହିଲେ—“ଭାଇ ! ସେ ତ ତୁମ ଅଙ୍ଗପ୍ରତ୍ୟଙ୍ଗ ସାଥୀରେ ଜଳି ପାଉଁଶ ହୋଇଗଲା । ଏଠି ତ ଖାଲି ତା’ର ପାଉଁଶ ପଡ଼ିଛି ।”

ନଟ କହିଲା—“ପ୍ରଭୁ ! ମୁଁ ତ ଜୀବିତ ଛିଡ଼ା ହୋଇଛି । ମୋ ନଟୀକୁ ଆପଣ ନିଶ୍ଚୟ କେଉଁଠି ଲୁଚାଇ ରଖିଛନ୍ତି । ଆପଣ ରାଜା, ପ୍ରଜାଙ୍କର ପିତା ସମାନ, ଆପଣ ଏମିତି ଅନ୍ୟାୟ କରିବା ଆଦୌ ଉଚିତ ନୁହେଁ ।”

ରାଜା ବିସ୍ମିତ ହୋଇ କହିଲେ—“ଅରେ ଭାଇ ! ତୁ କିପରି କଥା କହୁଛୁ ? ସେ ତ ସମସ୍ତଙ୍କ ସାମ୍ନାରେ ହିଁ ସତୀ ହୋଇଗଲା । ସମସ୍ତେ ତ ସାକ୍ଷୀ ଅଛନ୍ତି ।”

ନଟ କହିଲା—“ଅନ୍ନଦାତା ! ଏମାନେ ସମସ୍ତେ ଆପଣଙ୍କର ପ୍ରଜା, ଆପଣ ଯେପରି ଚାହିଁବେ ଏମାନେ ସେମିତି କହି ଦେବେ । ମୋର ପତ୍ନୀକୁ ଆପଣ ନିଶ୍ଚୟ

Digitized by srujanika@gmail.com

କେଉଁଠି ଲୁଚିଛି ରଖିଛନ୍ତି । ସେ ତ ଅଦ୍ଭୁତ ସୁନ୍ଦରୀ । ଆପଣ ତ ରାଜା । ମହାରାଜ ! ମୋ ସହିତ ଏପରି ଅନ୍ୟାୟ କରନ୍ତୁ ନାହିଁ ।"

ରାଜା ରାଗିଯାଇ କହିଲେ—"ତୁ ନିହାତ ମୂର୍ଖ ! ଅକାରଣରେ ଆମକୁ କ୍ରୋଧରେ ସାବ୍ୟସ୍ତ କରାଉଛୁ । ସମସ୍ତଙ୍କ ସାମ୍ନାରେ ହିଁ ସେ ଜଳ ଜଳ ପାଉଁଶ ହୋଇଗଲା । ଆମକୁ ତୋ' ନଟୀ ପାଖରୁ କ'ଣ ମିଳିବ ଯେ ?"

ନଟ କହିଲା—"ଯଦି ମୁଁ ତାକୁ ଖୋଜିଆଣେ, ତେବେ ? ଯଦି ସେ ଆପଣଙ୍କ ମହଲ ଭିତରୁ ମିଳିଯାଏ, ତେବେ ?"

ରାଜା କହିଲେ—"ତେବେ ତୋର ଯାହା ଇଚ୍ଛା ତାହା କରିବୁ ।"

ଏହା ଶୁଣିବା ମାତ୍ରେ ନଟ କହିଲା—"ନଟୀ ! ଏ ନଟୀ ! ତୁ କେଉଁଠାରେ ଅଛୁ ?"

ରାଜାଙ୍କ ସିଂହାସନ ତଳୁ ନଟୀ କହିଲା—"ପ୍ରାଣନାଥ ! ମୋତେ ମହାରାଜ ସିଂହାସନ ତଳେ ବସାଇ ଦେଇଛନ୍ତି ।"

ରାଜା ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେ ସିଂହାସନ ତଳକୁ ଚାହିଁ ଦେଖିଲେ ନଟୀ ବସିଛି । ଏହା ଦେଖି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ନଟକୁ ସେ ଯଥେଷ୍ଟ ପୁରସ୍କାର ଦେଲେ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଯଦି ସାଧାରଣ ଗୋଟିଏ ନଟ ଏପରି ଖେଳ ଦେଖାଇପାରେ, ତେବେ ଶୁକ୍ରାଚାର୍ଯ୍ୟଙ୍କ ପରି ସର୍ବଜ୍ଞ ଋଷିଙ୍କ ପାଇଁ ମୃତ-ସଞ୍ଜିବନୀ-ବିଦ୍ୟାର ପ୍ରଭାବରେ କାହାକୁ ଜୀବିତ କରିଦେବା କେଉଁ ବଡ଼କଥା ହୋଇଗଲା ? ଏ ତ ସବୁ ଖେଳ ହିଁ ଖେଳ ।"

ଶୌନକ ମୁନି ହସିଦେଇ କହିଲେ—"ସୂତ ମୁନି ! ଯେଉଁଠାରେ ଆପଣ ଖେଳ, ଓ କ୍ରୀଡ଼ା, ଲୀଳା କଥା କହି ଦେଉଛନ୍ତି ଆମର ତର୍କ ସେଇଠାରେ ସମାପ୍ତ ହୋଇ ଯାଉଛି । ପ୍ରକୃତ କଥା ହେଲା ମାୟାରେ ସବୁକିଛି ହିଁ ସମ୍ଭବ । ହଁ, ତା'ପରେ କ'ଣ ହେଲା ? କଚର ପରବର୍ତ୍ତୀ ବୃତ୍ତାନ୍ତ ଶୁଣାନ୍ତୁ ।"

ସୂତ ମୁନି କହିଲେ—"ହଁ, ମୁନିମାନେ ! ଶୁଣନ୍ତୁ, ମୁଁ କଚର ପରବର୍ତ୍ତୀ ବିଷୟ କହୁଛି । ଶୁକ୍ରାଚାର୍ଯ୍ୟଙ୍କ ଉଦରରେ କଚ ମୃତ-ସଞ୍ଜିବନୀ ବିଦ୍ୟା ଶିକ୍ଷା କରି

Digitized by srujanika@gmail.com

ତାଙ୍କ ଉଦରରୁ ବାହାରିକରି ଆସିଲେ । ସେ ଗୁରୁଙ୍କର ପୂଜା କଲେ । ତାଙ୍କ ଚରଣରେ ପ୍ରଣାମ କଲେ ଏବଂ ବିନମ୍ର ଭାବରେ କହିଲେ—"ଗୁରୁଦେବ ! ଆପଣଙ୍କୁ ମୁଁ ଗୁରୁଦକ୍ଷିଣା କ'ଣ ଦେବି ?"

ଶୁକ୍ରାଚାର୍ଯ୍ୟ କହିଲେ—"ପୁତ୍ର ! ଗୁରୁଦକ୍ଷିଣା କ'ଣ ଦେବ ! ତୁ ମୋର ଗୁରୁଙ୍କର ପୌତ୍ର, ମୋର ପୁତ୍ର । ଏତେ ଦିନ ପର୍ଯ୍ୟନ୍ତ ନିଷ୍କପଟ ଭାବରେ ତୁ ମୋର ସେବା କରିଛୁ । ଏତିକି ଗୁରୁଦକ୍ଷିଣା ଯଥେଷ୍ଟ । ନିୟମାନୁସାରେ ଗୋଟିଏ ଗୋଦାନ କରି, ତୁ ତୋର ବ୍ରତ ସମାପ୍ତ କରି ଘରକୁ ଫେରିଯାଅ ।"

ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି କଚ ନିୟମପୂର୍ବକ ବ୍ରତାନ୍ତ ସ୍ନାନ କଲେ । ଗୁରୁଙ୍କର ପୂଜା ତଥା ଗୋଦାନ ଦେଇ ସେ ଗୁରୁଙ୍କଠାରୁ ବିଦାୟ ପାଇଁ ଆଦେଶ ମାଗିଲେ । ଗୁରୁ ସ୍ନାତକକୁ ଦିଆଯିବା ଉପଦେଶ ସବୁ ଦେଇ ଯଥେଷ୍ଟ ଆଶୀର୍ବାଦ କଲେ । ବର୍ତ୍ତମାନ କଚଙ୍କ ସମ୍ମୁଖରେ ଗୋଟିଏ ଅତ୍ୟନ୍ତ କରୁଣ ଦୃଶ୍ୟ ଉପସ୍ଥିତ ହେବାକୁ ଯାଉଥିଲା । ସେ ଜାଣିଥିଲେ—ଦେବଯାନୀର ତାଙ୍କ ପ୍ରତି ଯଥେଷ୍ଟ ଅନୁରାଗ ଅଛି । ତାଙ୍କର ଯିବା କଥା ଶୁଣି ସେ ଅତ୍ୟନ୍ତ ଅଧୀର ହୋଇ ପଡ଼ିବ । ତଥାପି, ଯିବାକୁ ହିଁ ପଡ଼ିବ । ସଂଯୋଗ-ବିଯୋଗ ପାଇଁ ହିଁ ହୋଇଥାଏ ।" ଏଇସବୁ କଥା ଭାବି ସାହସ କରି ସେ ଏକାନ୍ତରେ ଦେବଯାନୀ ନିକଟକୁ ଗଲେ । ଦେବଯାନୀ ମନ ଦୁଃଖରେ ବସିଥିଲା ଏବଂ କଚଙ୍କ ବିଷୟ ଚିନ୍ତା କରୁଥିଲା । ସେଇ ସମୟରେ କଚ ଯାଇ କହିଲେ—"ଗୁରୁପୁତ୍ରୀ ! କ'ଣ ଏତେ ଭାବୁଛ ? ତୁମେ ତ ଜାଣିଛ ମୁଁ ଆଜି ବ୍ରତାନ୍ତ-ସ୍ନାନ କରିଛି । ଆଜି ମୁଁ ଘରକୁ ଯିବି । ମୋତେ ଆଶୀର୍ବାଦ ଦିଅ । ମଝିରେ ମଝିରେ ମୋତେ ଧର୍ମପୂର୍ବକ ସ୍ମରଣ ମଧ୍ୟ କରୁଥିବ । ସାଥିହୋଇ ରହିବା ଭିତରେ ମୋର ଜାଣିତରେ କିମ୍ବା ଅଜାଣତରେ ଯଦି କିଛି ଦୋଷ ଅପରାଧ ହୋଇଯାଇ ଥାଏ ତେବେ ତୁମେ ତାହା କ୍ଷମା କରିଦେବ ।"

କଚ ଗୋଟିଏ ନିଃଶ୍ୱାସରେ ସାହସ କରି ଏତିକି କଥା କହିଦେଲେ । ଦେବଯାନୀ କିଛି କହିଲା ନାହିଁ । ତା'ର ସେହି ବଡ଼ ବଡ଼ ଆଖି ଲୋତକପୂର୍ଣ୍ଣ ହୋଇଗଲା । ଦୁଇଗାଲରେ ମୋତିବିନ୍ଦୁ ପରି ଅଶ୍ରୁବିନ୍ଦୁ ଝରିହୋଇ ବହିବାକୁ ଲାଗିଲା । କୌଶଳରେ ତାହା ପୋଛିଦେଇ ଦେବଯାନୀ କରୁଣ ସ୍ୱରରେ କହିଲା—"ସତରେ କ'ଣ ତୁମେ ଆମକୁ ଛାଡ଼ି ଚାଲିଯିବ ?"

କଚ ନିଜର ଅସହାୟତା ଦର୍ଶାଇ କହିଲେ—"ଇଚ୍ଛା ତ ହେଉନାହିଁ । କିନ୍ତୁ କର୍ତ୍ତବ୍ୟବଶତଃ ଯିବାକୁ ପଡ଼ିବ । ଦେବଯାନୀ କହିଲା—"କର୍ତ୍ତବ୍ୟଠାରୁ ମଧ୍ୟ କଠିନ ବ୍ୟାପାର ଅନୁରାଗ ।"

Digitized by srujanika@gmail.com

କଚ ଏହାର କିଛି ଉତ୍ତର ଦେଲେ ନାହିଁ । ସେ ଅନ୍ୟମନସ୍କ ଭାବେ ଛିଡ଼ାହୋଇ ରହିଲେ । ଦେବଯାନୀ କହିଲା—"ଆଚ୍ଛା ! ତୁମେ ଏଠି ମୋ ନିକଟକୁ ଆସି ବସ, ମୁଁ ତୁମକୁ ଆଜି ଗୋଟିଏ କଥା କହିବାକୁ ଚାହୁଁଛି ।"

ଅବୋଧ ବାଳକ ପରି କଚ ଦେବଯାନୀ ନିର୍ଦ୍ଦେଶରେ ସେ ଆସନ ଉପରେ ବସିଗଲେ । ସେତେବେଳେ ଦେବଯାନୀର ବଡ଼ ବିଚିତ୍ର ଅବସ୍ଥା ହେଉଥିଲା । ଓଦାଳୁଗାକୁ ଚିପୁଡ଼ି ପାଣି ନିଗାଡ଼ିବାପରି ତା'ର ସରସ-ସ୍ନିଗ୍ଧ ହୃଦୟକୁ ସତେ ଯେପରି କିଏ ଚିପୁଡ଼ି ଦେଉଥିଲା । ଆଜି ଦେବଯାନୀର ଅଙ୍ଗଅଙ୍ଗରୁ ଅନୁରାଗର ସ୍ରୋତ ଝରୁଥିଲା । ସହସ୍ରବର୍ଷ ପର୍ଯ୍ୟନ୍ତ ଯେଉଁ ଅନୁରାଗକୁ ସେ ଲୁଚାଇ ରଖିଥିଲା ଆଜି ତାହା ଉନ୍ମୁକ୍ତ ହୋଇ ହଠାତ୍ ବାହାରକୁ ବାହାରି ଆସିଥିଲା । ସେ ଅତ୍ୟନ୍ତ ମମତାମୟୀ ହୋଇ କହିଲା—"କଚ ! ତୁମେ ଜାଣିଛ-ମୁଁ ତୁମକୁ କେତେ ଶ୍ରଦ୍ଧା କରୁଛି ?"

କୃତଜ୍ଞତା ସ୍ୱରରେ କଚ କହିଲେ—"ଗୁରୁପୁତ୍ରୀ ! ଯଦି ତୁମେ ମୋତେ ଶ୍ରଦ୍ଧା କରି ନ ଥାଆନ୍ତ ତେବେ ମୁଁ ଏଠାରେ ଗୋଟିଏ ଦିନ ବି ରହିପାରି ନଥାନ୍ତି । ତୁମ ପ୍ରେମ ପାଇବା ଫଳରେ ହିଁ ମୁଁ ସହସ୍ରବର୍ଷ ମୁହୂର୍ତ୍ତକ ପରି ବିତାଇ ଦେଇଛି ।"

ଦେବଯାନୀ କହିଲା—"କଚ ! ମୁଁ ତୁମକୁ ଗୋଟିଏ କଥା କହିବି, ମାନିବ ତ ?"

କଚଙ୍କୁ ଏପରି ଲାଗିଲା ସତେ ଯେପରି ତାଙ୍କୁ ଦୁଇଟି ପଥରଖଣ୍ଡ ଭିତରେ ରଖି କିଏ ଚିପି ଦେଉଛି । ତଥାପି ସେ ପ୍ରକୃତିସ୍ଥ ହୋଇ କହିଲେ—"ତୁମର ମୋ ପ୍ରତି ସନ୍ଦେହ କାହିଁକି ହେଉଛି ? ଆଜି ପର୍ଯ୍ୟନ୍ତ ମୁଁ ତୁମର କେଉଁ ଆଦେଶ ପାଳନ କରିନାହିଁ ! ଏପରି କିଛି ଗୋଟିଏ କଥା ବି ମୋର ସ୍ମରଣ ହେଉନାହିଁ ।"

ଦେବଯାନୀ କହିଲା—"ନା ନା, ସେମିତି କିଛି କଥା ନାହିଁ । କିନ୍ତୁ ବର୍ତ୍ତମାନ ତୁମେ ହୁଏତ କଥା ନରଖିପାର । କାରଣ ବର୍ତ୍ତମାନ ତ ତୁମେ ସ୍ନାତକ ହୋଇ ସାରିଲଣି ନା ?" କଚ କୃତଜ୍ଞତା ସ୍ୱରରେ କହିଲେ—"ଏ ସବୁ ତ ତୁମରି କୃପାରୁ ସମ୍ଭବ ହୋଇଛି । ସବୁବେଳେ ମନେ ରଖିବ ମୁଁ ତୁମର ସେଇ କଚ ।"

ଦେବଯାନୀ ଗମ୍ଭୀର ହୋଇଗଲା । ସେ କହିଲା—"ଆଚ୍ଛା ଦେଖ ସହସ୍ରବର୍ଷ ହେଲଣି ମୁଁ ମୋର ଭାବନାକୁ ଗୋପନ କରି ରଖି ଆସିଥିଲି । ପ୍ରଥମରୁ ହିଁ ମୁଁ ମୋର ମନ ତୁମକୁ ଅର୍ପଣ କରି ଦେଇଛି । ତୁମର ବ୍ରହ୍ମଚର୍ଯ୍ୟରେ ମୁଁ କେବେହେଲେ ବାଧା ସୃଷ୍ଟି କରିନାହିଁ । ବର୍ତ୍ତମାନ ମୋର ଇଚ୍ଛା, ତୁମେ ବୈଦିକ ରୀତିରେ ମୋର ପାଣି-ଗ୍ରହଣ କର । ମୋତେ ତୁମର ଅର୍ଦ୍ଧାଙ୍ଗିନୀ ରୂପେ ସ୍ୱୀକାର କର ।"

Digitized by srujanika@gmail.com

ଏତିକ ଶୁଣି କଚ ନିଜର ସମ୍ପୂର୍ଣ୍ଣ ସାହସ ସଞ୍ଚୟ କରି ଦୃଢ଼ତାର ସହିତ କହିଲେ— "ନା, ଏପରି କେବେ ହୋଇପାରିବ ନାହିଁ।"

ଏ ଉତ୍ତର ଶୁଣି ଦେବଯାନୀଙ୍କୁ ଲାଗିଲା ଯେପରିକି କେହି ତାଙ୍କୁ କିଏ ହିମାଳୟ ଉପରୁ ତଳକୁ ଠେଲି ଦେଉଛି। ସେ ବ୍ୟତିବ୍ୟସ୍ତ ହୋଇଗଲା। ସେ ଭଲଭାବରେ କଚଙ୍କୁ ଉପରୁ ତଳଯାଏ ଦେଖି କହିଲା—"କାହିଁକି ଏପରି ହୋଇପାରିବ ନି? ମୋ ନିକଟରେ ଏପରି କଣ ଦୋଷ ଦେଖୁଛ? କ'ଣ ମୁଁ କୁଳୀନ ନୁହେଁ?"

କଚ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ—"ତୁମର କୌଣସି ଦୋଷ ନାହିଁ। ତୁମେ ଗଙ୍ଗାଜଳ ପରି ପବିତ୍ର। ତୁମ କୁଳ ସମ୍ବନ୍ଧରେ ମଧ୍ୟ କିଛି କହିବାର ନାହିଁ। କିନ୍ତୁ ମୁଁ ତୁମକୁ ସଦାସର୍ବଦା ମୋର ଭଉଣୀ ବୋଲି ମନେକରିଛି। ତୁମେ ମୋର ଗୁରୁପୁତ୍ରୀ। ତେଣୁ ଧର୍ମତଃ ମୋର ଭଉଣୀ। ଯଦି ଧର୍ମ ପ୍ରତିବନ୍ଧକ ନ ହୁଅନ୍ତା ତେବେ ତ ଏପରି ସର୍ବଗୁଣସମ୍ପନ୍ନା ପତ୍ନୀ ପାଇବାକୁ ମୁଁ ମୋର ସୌଭାଗ୍ୟ ବୋଲି ମନେକରନ୍ତି।"

ଦେବଯାନୀ କହିଲା—"ଏଥିରେ ଧର୍ମ ବିରୁଦ୍ଧ କଥା କିଛି ନାହିଁ। ମୁଁ ତ ତୁମର ନିଜ ଭଉଣୀ ନୁହେଁ। ଅନେକ ଋଷି ତ ନିଜ କନ୍ୟାମାନଙ୍କର ବିବାହ ଶିଷ୍ୟମାନଙ୍କ ସହିତ କରିଛନ୍ତି।"

କଚ କହିଲେ—"ଦେବି! ବିବାହ କରିଥିବେ, କିନ୍ତୁ ଦେଖ ମୁଁ ତୁମକୁ ସର୍ବଦା ଭଉଣୀ ବୋଲି ମାନି ଆସିଛି। ଗୁରୁଙ୍କ ଅପେକ୍ଷା ତୁମକୁ ଅଧିକ ଆଦର କରିଛି। ତେଣୁ ବର୍ତ୍ତମାନ ମୁଁ କୌଣସିମତେ ତୁମର ପାଣିଗ୍ରହଣ କରି ପାରିବି ନାହିଁ।"

ଦେବଯାନୀ କହିଲା—"କଚ! ତୁମେ ଅଯଥା ଜିଦ ଧରିଛ। ବିବାହ ପୂର୍ବରୁ ସମସ୍ତ କନ୍ୟା ଭଉଣୀ ସଦୃଶ ଏବଂ କୁମାରୀ କନ୍ୟାଙ୍କର ସବୁ ସମବୟସ୍କ ଯୁବକ ନିଜ ଭାଇଙ୍କ ସଦୃଶ ହୋଇ ଆଅନ୍ତି। ତଥାପି ବିବାହ ତ କୌଣସି ନା କୌଣସି କୁମାରଙ୍କ ସହ କରିବାକୁ ପଡ଼େ। ବର୍ତ୍ତମାନ ଯାଏ ତୁମେ ମୋତେ ଭଉଣୀ ବୋଲି ମାନିଥିଲ। ଠିକ୍ ଅଛି। ବର୍ତ୍ତମାନ ତୁମେ ଶାସ୍ତ୍ରୀୟ ବିଧିମତେ ମୋର ପାଣିଗ୍ରହଣ କର। ଅମତ ନୂଆ ସମ୍ବନ୍ଧ ଆରମ୍ଭ ହୋଇଯିବ।"

କଚ କହିଲେ—"ଦେବି! ତୁମେ କାମନାର ବଶବର୍ତ୍ତୀ ହୋଇ ଏପରି ଧର୍ମ ବିରୁଦ୍ଧ କଥା କହୁଛ। ସଜ୍ଜନ ପୁରୁଷମାନଙ୍କର କଥାରେ ମହତ୍ତ୍ୱ ରହିଥାଏ। କଥାରେ ହିଁ ସ୍ୱୟଂକନ୍ୟା ପରର ହୋଇ ଯାଆନ୍ତି। ବର ନିଜର ବଚନରେ କନ୍ୟାକୁ ସ୍ୱୀକାର କରିଥାଏ, ଯାହାଦ୍ୱାରା ସେ ଯାବଜ୍ଜୀବନ ତା'ର ଭରଣ ପୋଷଣ କରିଥାଏ। ମୁଁ

Digitized by srujanika@gmail.com

ତୁମକୁ ସଦାବେଳେ ଭଉଣୀ କହୁଛୁ ତେଣୁ ତୁମେ ମୋର ଭଉଣୀ । ତୁମେ ମୋର ଗୁରୁଙ୍କର କନ୍ୟା । ଯେଉଁ ପିତାଙ୍କର ତୁମେ କନ୍ୟା, ମୁଁ ସେଇ ପିତାଙ୍କ ଉଦରରୁ ପୁନର୍ଜନ୍ମ ପାଇଛୁ । ସେ ଦୃଷ୍ଟିରୁ ମଧ୍ୟ ତୁମେ ମୋର ଭଉଣୀ । ମୁଁ ମୋର ଧର୍ମ ତଥା ଗୁରୁଙ୍କ ସହିତ ବିଶ୍ୱାସଘାତକତା କରି ପାରିବି ନାହିଁ । ଏହା ବ୍ୟତୀତ ଏ ସମ୍ବନ୍ଧରେ କୌଣସି ପ୍ରକାରର ଆଦେଶ ମୁଁ ଗୁରୁଙ୍କଠାରୁ ପାଇ ନାହିଁ ।"

ଦେବଯାନୀ କହିଲି—"ଗୁରୁଙ୍କ ଆଜ୍ଞା ତ ମୁଁ ଏଇକ୍ଷଣି ଦିଆଇ ଦେଉଛୁ ।"

କଚ କହିଲେ—"ତୁମେ ତୁମ ପିତାଙ୍କର ଆଦରର କନ୍ୟା । ପିତାଙ୍କ ପ୍ରିୟ କନ୍ୟାମାନେ ସ୍ୱତନ୍ତ୍ର ବ୍ୟବହାର ପାଇ ପ୍ରାୟ ଭିଲ ରାସ୍ତାରେ ଚାଲିଯାଇ ଥାଆନ୍ତି । ପିତାଙ୍କୁ ତୁମେ ନିଜର ବଶ କରି ରଖିଛ । କିନ୍ତୁ ମୁଁ ଏପରି ଧର୍ମ-ବିରୁଦ୍ଧ କାମ କରି ପାରିବି ନାହିଁ ।"

ଏହା ଦେବଯାନୀ ପ୍ରତି ବିରାଟ ଅପମାନ ଥିଲା । ତେଣୁ କଚଙ୍କ ପ୍ରତି ତା'ର କ୍ରୋଧ ଆସିଗଲା । ପ୍ରତିହିଂସାର ଜ୍ୱାଳାରେ ତା'ର ହୃଦୟ ଜଳିବାକୁ ଲାଗିଲା । ସେ କ୍ରୋଧରେ କଚଙ୍କୁ ଅଭିଶାପ ଦେଇ କହିଲି—"କଚ ! ତୁମେ ମୋ ପରି ନିର୍ଦ୍ଦୋଷୀ ଉପରେ ଦୋଷାରୋପଣ କରୁଛ । ତୁମେ ମୋର ସହସ୍ର ବର୍ଷର ଆଶାକୁ ମୁହୂର୍ତ୍ତିକରେ ନଷ୍ଟ କରିଦେଲ । ତେଣୁ ମୁଁ ତୁମକୁ ଅଭିଶାପ ଦେଉଛୁ ତୁମର ଏ ବିଦ୍ୟା ଫଳବତୀ ହେବ ନାହିଁ ।"

କ୍ରୋଧ କ୍ରୋଧକୁ ହିଁ ବଢ଼ାଇ ଥାଏ । କଚର ମଧ୍ୟ କ୍ରୋଧ ଆସିଲା । ସେ କହିଲେ—"ଗୁରୁପୁତ୍ରୀ ! ମୁଁ ଏ ସମ୍ବନ୍ଧକୁ ସ୍ୱୀକାର କଲି ନାହିଁ । କିନ୍ତୁ ତୁମେ କେବଳ କାମର ବଶୀଭୂତ ହୋଇ ମୋତେ ଅଭିଶାପ ଦେଇଛ । ତେଣୁ ମୁଁ ମଧ୍ୟ ତୁମକୁ ଅଭିଶାପ ଦେଉଛୁ, ଯେ କୌଣସି ବ୍ରାହ୍ମଣ କୁମାର—ଋଷି ପୁତ୍ର—ତୁମର ପାଣି ଗ୍ରହଣ କରିବେ ନାହିଁ । ମୋର ବିଦ୍ୟା ମୋ ପାଖରେ ଫଳବତୀ ନ ହେଉ ପଛେ ମୁଁ ତାହା ଅନ୍ୟକୁ ଶିଖାଇ ପାରିବି ତ !" ଏହାକହି କଚ କ୍ରୋଧାନ୍ୱିତା ଗୁରୁପୁତ୍ରୀଙ୍କୁ ପ୍ରଣାମ କରି ତଥା ଗୁରୁଙ୍କ ଚରଣ ଧୂଳି ନେଇ ସ୍ୱର୍ଗକୁ ଫେରିଗଲେ ଏବଂ ସେଠାରେ ସେ ସେଇ ବିଦ୍ୟାକୁ ଇନ୍ଦ୍ରଙ୍କୁ ଶିଖାଇ ଦେଲେ । ଦେବତାମାନେ କଚ ପ୍ରତି ସନ୍ତୁଷ୍ଟ ହୋଇଗଲେ । ତାଙ୍କ ବ୍ରହ୍ମଚର୍ଯ୍ୟର ଏପରି ଦୃଢ଼ତା ଦେଖି ସମସ୍ତେ ତାଙ୍କର ଭୂରି ଭୂରି ପ୍ରଶଂସା କଲେ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଏଥିପାଇଁ କଚଙ୍କ ଅଭିଶାପରେ ଦେବଯାନୀଙ୍କୁ ବ୍ରାହ୍ମଣ ବର ମିଳିଲେ ନାହିଁ । ନହୁଷ ପୁତ୍ର ଯଯାତିଙ୍କ ସହିତ ତାଙ୍କର

Digitized by srujanika@gmail.com

ବିବାହ ହେଲା । ସର୍ବଜ୍ଞ ଶୁକ୍ରାଚାର୍ଯ୍ୟ ତ ସବୁ ଜାଣିଥିଲେ । ତେଣୁ ଏ ସମ୍ବନ୍ଧରେ ସେ ଆପତ୍ତି କଲେ ନାହିଁ । ସେ ଦେବଯାନୀଙ୍କୁ ଯଯାତିଙ୍କ ସହିତ ବିବାହ କରି ଦେଲେ ଏବଂ ରାଜା ବୃଷପର୍ବାଙ୍କ ପୁତ୍ରୀ ଶର୍ମିଷ୍ଠା ଦେବଯାନୀ ସାଥିରେ ସଖି ହୋଇ ଗଲା ।''

ଏହାଶୁଣି ଶୌନକ ମୁନି ପଚାରିଲେ—''ଯଯାତିଙ୍କ ସହିତ ଦେବଯାନୀର ଭେଟ କିପରି ହେଲା ? ଯଯାତି ଏପରି ଅନୁଚିତ ପ୍ରସ୍ତାବ ଦେଲେ କିପରି ? ପୁଣି ବୃଷପର୍ବା ନିଜର କନ୍ୟାକୁ ଦେବଯାନୀ ସହିତ କାହିଁକି ପଠାଇଲେ ? କୃପାକରି ଆମକୁ ଏ ବୃତ୍ତାନ୍ତ ସବୁ ଶୁଣାନ୍ତୁ । ଧର୍ମାତ୍ମା ମହାରାଜ ଯଯାତିଙ୍କ ଚରିତ ଶୁଣିବାକୁ ଆମର ବହୁତ ଇଚ୍ଛା ହେଉଛି ।''

ସୂତ ମୁନି କହିଲେ—''ମହାରାଜ ! ଯାହା ହେବାର ଥାଏ ତାହା ଆପେ ଆପେ ହୋଇଯାଏ । ଭଲା ଯଯାତି କିପରି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ସହିତ ବିବାହ ପ୍ରସ୍ତାବ ଦେଇପାରି ଥାଆନ୍ତେ ! ଏ ତ ଶୁକ୍ରଙ୍କ ଝିଅର ହିଁ କାମ ଥିଲା । ସେ ହିଁ ଯଯାତି ସହ ନିଜର ବିବାହ ପ୍ରସ୍ତାବ ଅଣିତ କଲା ଏବଂ ଶୁକ୍ରାଚାର୍ଯ୍ୟଙ୍କୁ ତାହା ସ୍ୱୀକାର କରିବାକୁ ପଡ଼ିଲା । ଏଇ ବିଚିତ୍ର ଚିତ୍ତାକର୍ଷକ ବୃତ୍ତାନ୍ତ ମୁଁ ଆପଣମାନଙ୍କୁ ଶୁଣାଉଛି । ଆପଣମାନେ ଧୀରସ୍ଥିର ହୋଇ ଶୁଣନ୍ତୁ ।''

## ଛପ୍ପୟ

**ଅସୁରନି କଚ ବଧି ସୁରସଙ୍ଗ ଗୁରୁ-ଉଦର ପଠାୟୋ ।**
**ଶୁକ୍ର ଶିଖାଓ ମନ୍ତ୍ର ମୃତକ ତେଂ ଫେରି ଜିବାୟୋ ।।**
**ହ୍ୱୈ କୃତାର୍ଥ କଚ ଚଲେ ଦେବଯାନୀ ବୋଲୀ ତବ ।**
**କବୈ ବ୍ୟାହ ମମ ସଙ୍ଗ ନ କଚ ନେ ସ୍ୱୀକାରୟୋ ଯବ ।**
**ଶାପ ଦୟୋ ବିଦ୍ୟା ନହୁଁ, ହେହି ଫଲବତୀ ନିକଟ ତବ ।**
**ମିଲହି ନ ତୋକୁଁ ବିପ୍ରବର, କଚ ହୁ କୁପିତ ହ୍ୱୈ କହ୍ୟୋ ତବ ।।**



Digitized by srujanika@gmail.com

# ଦେବଯାନୀ ଏବଂ ଶର୍ମିଷ୍ଠାଙ୍କ ମଧ୍ୟରେ କଳହ

ଶର୍ମିଷ୍ଠାଜାନତୀ ବାସୋ ଗୁରୁପୁତ୍ର୍ୟାଃ ସମବ୍ୟୟତ୍ ।
ସ୍ୱୀୟଂ ମତ୍ୱା ପ୍ରକୁପିତା ଦେବଯାନୀଦମବ୍ରବୀତ୍ ॥
ଅହୋ ନିରୀକ୍ଷତାମସ୍ୟାଃ ଦାସ୍ୟାଃ କର୍ମ ହ୍ୟସାମ୍ପ୍ରତମ୍ ।
ଅସ୍ମଦ୍ଧାର୍ଯ୍ୟ ଧୃତବତୀ ଶୁନୀବ ହବିରଧ୍ୱରେ ॥ *

(ଶ୍ରୀ ଭା ୯ ସ୍କ ୧୮ ଅଧ୍ୟାୟ ୧୦, ୧୧ଶ୍ଳୋକ) *

## ଛପ୍‌ପୟ

ବୃଷପର୍ବା କୀ ସୁତା ନାମ ଶର୍ମିଷ୍ଠା ଯୁବତୀ ।
ଲେ ସଖିୟନ ବନ ଗୟି ଦେବଯାନୀ ସଁଗ ହଁସତୀ ॥
ଶୋଭା ନିରଖି ବସନ୍ତ ମୋଦ ମହଁ ନାଚେ ଗାବେଁ ।
ଦେ ବବସ୍ତ୍ର ଜଳ ମାଁହିଁ କରେ କ୍ରୀଡ଼ା ସବ ହ୍ଲାବେ ॥
ନିରଖେ ଆବତ ବୃଷଭ ଚଢ଼ି, ପଶୁପତି ପାରବତୀ-ସହିତ ।
ଦୈ ଲଜ୍ଜିତ ସର ତେଂ ନିକସି, ପହିନତ ପଟ ଲୋଚନ-ଚକିତ ॥

ଯୌବନର ଉନ୍ମାଦନା ପ୍ରାୟ ସମସ୍ତ ବୟସ୍କ ଏବଂ ସୁସ୍ଥ ଯୁବକ ଯୁବତୀଙ୍କ ନିକଟରେ ଦେଖାଯାଇଥାଏ । ଯଦି ସେମାନେ ସମ୍ପନ୍ନ, କୁଳୀନ, ସମର୍ଥ ତଥା ବିଶିଷ୍ଟ ବଂଶର

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଅଜାଣତରେ ଶର୍ମିଷ୍ଠା ଦେବଯାନୀ ବସ୍ତ୍ରକୁ ନିଜର ବୋଲି ଭାବି ପିନ୍ଧିଦେଲେ । ଏ କଥାରେ ଦେବଯାନୀ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ କହିଲା—ଅରେ ! କପରି ଆଶ୍ଚର୍ଯ୍ୟର କଥା, ଏ ଦାସୀର ଏ ପ୍ରକାର ଅନୁଚିତ କାର୍ଯ୍ୟ ଦେଖ । ଏ ମୋ ବସ୍ତ୍ରକୁ ଏପରି ଧାରଣ କରିନେଲା ଯେପରି ଯଜ୍ଞ ପ୍ରସାଦକୁ କୁକୁର ଉଠାଇ ନେଇଯାଏ ।

Digitized by srujanika@gmail.com

ହୋଇଥାନ୍ତି; ତେବେ ତାଙ୍କର ଉନ୍ମାଦତା ଆବଶ୍ୟକତାଠାରୁ ଆହୁରି ଅଧିକ ବଢ଼ିଯାଏ। ତେଣୁ ବଢ଼ନ୍ତି ବୟସରେ ଧନୀ ଯୁବକ-ଯୁବତୀମାନଙ୍କ ସହିତ ସାଧାରଣ ସ୍ଥିତିରେ ଥିବା ଲୋକେ ବିଶେଷ ସମ୍ପର୍କ ସ୍ଥାପନ କରିବା ଅନୁଚିତ। କାରଣ ସେମାନେ କ୍ଷଣକେ ରୁଷ୍ଟ ହୁଅନ୍ତି ଏବଂ କ୍ଷଣକେ ତୁଷ୍ଟ। ଧନ-ଗର୍ବ ଏବଂ ଯୌବନ-ଗର୍ବରେ ଯଦି କେହି ଯୁବାବସ୍ଥାରେ କିଛି ଅନର୍ଥ ସୃଷ୍ଟି କରେ ନାହିଁ ତେବେ ବୁଝିବାକୁ ହେବ ଯେ ତା'ପ୍ରତି ପ୍ରଭୁଙ୍କର ବିଶେଷ କୃପା ରହିଛି।

ସୂତ ମୁନି କହୁଛନ୍ତି—"ମୁନିମାନେ ! ମୁଁ ପ୍ରଥମରୁ ହିଁ କହିଦେଇଛି ଯେ ନିଜକନ୍ୟା ଦେବଯାନୀ ପ୍ରତି ଶୁକ୍ରାଚାର୍ଯ୍ୟଙ୍କର ଅତ୍ୟଧିକ ସ୍ନେହ ଥିଲା। ମନେହୁଏ ସେ ସମୟରେ ଦେବଯାନୀଙ୍କ ମାତା ତାଙ୍କ ପାଖରେ ନଥିଲେ। ପିତା ଏବଂ ପୁତ୍ରୀ ବୃଷପର୍ବାଙ୍କ ନିକଟରେ ରହୁଥିଲେ। ଦାନବେନ୍ଦ୍ର ବୃଷପର୍ବାଙ୍କର ମଧ୍ୟ ଗୋଟିଏ ଆଦରଣୀୟା କନ୍ୟା ଥିଲି, ତା'ର ନାମ ଥିଲି ଶର୍ମିଷ୍ଠା। ସେ ପିତାଙ୍କର ଏକମାତ୍ର କନ୍ୟା ଥିବାରୁ ଅତ୍ୟନ୍ତ ମାନିନୀ ଥିଲି। ମାତା-ପିତା ତାକୁ ପ୍ରାଣରୁ ବଳି ଶ୍ରଦ୍ଧା କରୁଥିଲେ, ଆଖିର ତାରା ପରି ରଖିଥିଲେ। ଯେତେବେଳେ ସେ ଶୈଶବା ଅବସ୍ଥା ଅତିକ୍ରମ କରି ଯୌବନାବସ୍ଥାରେ ପଦାର୍ପଣ କଲି, ତା'ର ଅଙ୍ଗପ୍ରତ୍ୟଙ୍ଗରେ ଯୌବନର ଉନ୍ମାଦନା ଗ୍ରୁଇ ହୋଇଗଲା। ସେ ଧନ ଗର୍ବ ତଥା ରାଜକୀୟ ଅହଙ୍କାରକୁ ନେଇ ହାସ ପରିହାସ କରି ବାଳସୁଲଭ ଚଞ୍ଚଳତା ନେଇ ତା'ର ଦିନ ଗୁଡ଼ିକ କାଟୁଥିଲା। ପିତା ତା'ର ଆନନ୍ଦପାଇଁ ଏକଶତ ସମବୟସ୍କା ଯୁବତୀ ତା'ର ସହଚରୀ କରି ରଖି ଦେଇଥିଲେ। ସେମାନେ ସମସ୍ତେ ସୁନ୍ଦରୀ ସୁକୁମାରୀ ଥିଲେ। ଗୀତଗାଇ ବାଦ୍ୟ ବଜାଇ ତଥା ନାଚ କରି ବିଭିନ୍ନ ଉପାୟରେ ସେମାନେ ଶର୍ମିଷ୍ଠାର ମନୋରଞ୍ଜନ କରୁଥିଲେ। ଶର୍ମିଷ୍ଠା ସେମାନଙ୍କ ମଧ୍ୟରେ ରାଣୀ ମହୁମାଛି ପରି ସଦାବେଳେ ସେପରେଇ ହୋଇ ରହିଥିଲା। ଗୁରୁପୁତ୍ରୀ ଦେବଯାନୀ ମଧ୍ୟ ମଝିରେ ମଝିରେ ସେମାନଙ୍କ ପାଖକୁ ଆସୁଥିଲା। ଗୁରୁପୁତ୍ରୀ ବୋଲି ସମସ୍ତେ ତାକୁ ସମ୍ମାନ କରୁଥିଲେ ଏବଂ ତା' ସହିତ ଶିଷ୍ଟାଚାର ସହ ବାର୍ତ୍ତାଳାପ କରୁଥିଲେ। ଘନିଷ୍ଠତା ହୋଇଗଲା ପରେ ଶିଷ୍ଟାଚାର ଆଉ ରହେ ନାହିଁ। ଶର୍ମିଷ୍ଠା ଧୀରେ ଧୀରେ କଡ଼ା ହୋଇଗଲେ। ଯେତେହେଲେ ରାଜ ପୁତ୍ରୀ ଥିଲେ ସେ ! ଦେବଯାନୀ ମଧ୍ୟ ତା' ସହିତ ବହୁତ ମିଶିଯାଇ ଥିଲା। ଦୁଇଜଣଙ୍କ ମଧ୍ୟରେ ସଖୀଭାବ ହୋଇଯାଇଥିଲା। ତଥାପି ଶର୍ମିଷ୍ଠା ରାଜକନ୍ୟା ହୋଇଥିବା ଯୋଗୁଁ ଅଭିମାନ ଆସିବା ସ୍ୱାଭାବିକ। ଏପଟେ ଦେବଯାନୀ ମଧ୍ୟ ଗୁରୁପୁତ୍ରୀ ହୋଇଥିବା ଯୋଗୁଁ କିଛି କମ୍ ଅଭିମାନ ନଥିଲା। କିନ୍ତୁ ଘରେ କେବେ କୌଣସି ଅପ୍ରିୟ ଘଟଣା ଘଟିବାର ପ୍ରସଙ୍ଗ ହିଁ ଆସି ନଥିଲା। ଦାନବେନ୍ଦ୍ର ବୃଷପର୍ବା ନିଜ କନ୍ୟାକୁ ଯେତିକି ଶ୍ରଦ୍ଧା କରୁଥିଲେ। ଦେବଯାନୀକୁ ମଧ୍ୟ ସେତିକି ଆଦର କରୁଥିଲେ। ସେ ଯେଉଁ ବସ୍ତ୍ର-ଆଭୂଷଣ

Digitized by srujanika@gmail.com

ଅଣୁଥିଲେ ସେତେବେଳେ ଦୁଇଟା କରି ଆଣୁଥିଲେ । ଦେବଯାନୀଙ୍କୁ ପ୍ରଥମେ ଦେଇ ପରେ ଶର୍ମିଷ୍ଠାକୁ ଦେଉଥିଲେ । ତେଣୁ ଦୁହିଁଙ୍କର ବସ୍ତ୍ର ଆଭୂଷଣ ପ୍ରାପ୍ତ ସମାନ ଥିଲା । ଦୁଇଜଣଯାକ ଏକ୍ଷେବେଳେ ଦୁଇ ଭଉଣୀପରି ଦିଶୁଥିଲେ ।

ଦିନେ ଶର୍ମିଷ୍ଠା କହିଲା—"ଭଉଣୀ ! ବସନ୍ତଋତୁ ଆସିଲାଣି, ଚାଲ ଯିବା ବନବିହାର କରିବା ।"

ଦେବଯାନୀ ତ ସେଥିପାଇଁ ଉତ୍କଣ୍ଠିତ ହୋଇ ରହିଥିଲା । ତେଣୁ କହିଲା— "ଭଲ କଥା । ଚାଲ ଚାଲ ବହୁତ ମଜା ହେବ । ସଙ୍ଗୀତ ପାଇଁ ସବୁପ୍ରକାର ସରଞ୍ଜାମ ଆମେ ସାଥିରେ ନେଇଯିବା ।"

ରାଜାଙ୍କଠାରୁ ଅନୁମତି ମିଳିବାମାତ୍ରେ ସମସ୍ତ ପ୍ରକାର ପ୍ରସ୍ତୁତ ହୋଇଗଲା । ସହସ୍ର ସଖୀମାନଙ୍କ ସହିତ ଶର୍ମିଷ୍ଠା ଏବଂ ଦେବଯାନୀ ଅତ୍ୟନ୍ତ ସମ୍ମାନସହ ବାହାରି ପଡ଼ିଲେ । ସମସ୍ତେ ଥିଲେ ଯୁବତୀ । ସମସ୍ତଙ୍କର ଶିରା-ପ୍ରଶିରାରେ ଯୌବନର ନିଶା ଘେରି ରହିଥିଲା । ଏକାନ୍ତ ତଥା ବଣ ଦେଖି ସମସ୍ତଙ୍କର ଚଞ୍ଚଳତା ସୀମା ଅତିକ୍ରମ କରି ଯାଇଥିଲା । ପ୍ରତ୍ୟେକ ନିଜ ଇଚ୍ଛା ଅନୁସାରେ ଗୀତଗାଇ, ବାଜା ବଜାଇ ନାଚ କରୁଥିଲେ । କିଏ ବୁଲୁଥିଲା, କିଏ ମହୁଆ ଫୁଲର ପରାଗ ବାହାର କରି ପାନ କରୁଥିଲା, କିଏ ଫୁଲ ତୋଳୁଥିଲା, କିଏ ମାଳା ଗୁନ୍ଥୁଥିଲା, କିଏ କଅଁଳିଆ ପତ୍ର ଆଣି ମୁଣ୍ଡରେ ଦେଇ ତିଆରି କରୁଥିଲା । ଅନେକ ପ୍ରକାରର ଭୋଜନ ପ୍ରସ୍ତୁତ ହୋଇ ରହିଥିଲା । ସମସ୍ତେ ନିଜ ନିଜର ରୁଚି ଅନୁସାରେ ଖାଇ, ପିଇ, ହସୁଥିଲେ ସତେକି ଆନନ୍ଦର ସାଗରରୁ ବାହାରି ପଡ଼ୁଛି ଯେପରି । ସ୍ଥଳକ୍ରୀଡ଼ା କରିସାରିବା ପରେ ଜଳକ୍ରୀଡ଼ା କରିବା ପାଇଁ ସମସ୍ତଙ୍କର ଇଚ୍ଛା ହେଲା । ଉଦ୍ୟାନ ଭିତରେ ବିରାଟ ଏକ ସରୋବର ଥିଲା । ତା'ର ଘାଟ ବୈଦୂର୍ଯ୍ୟ ମଣିରେ ନିର୍ମିତ ହୋଇଥିଲା । ତେଣୁ ନିଜ ନିଜ ବସ୍ତ୍ରକୁ ଘାଟ ଉପରେ ରଖିଦେଇ ସେମାନେ ସମସ୍ତେ ଉଲଗ୍ନ ହୋଇ ସ୍ନାନ କରିବାକୁ ଲାଗିଲେ । କିଏ ହସି ହସି କାହା ଉପରକୁ ପାଣି ଛାଟୁଥିଲା କିଏ ପାଣି ଛାଟି ଛାଟି ଅନ୍ୟକୁ ଓଦା କରି ଦେଉଥିଲା । କେତେବେଳେ ଦୁଇଦଳ ହୋଇ ପରସ୍ପରକୁ ପାଣି ଛାଟି ଖେଳୁଥିଲେ ।

ଜଳର ଅନ୍ୟ ନାମ ଜୀବନ । ଜଳରେ ହିଁ ବରୁଣ ଦେବତା ବାସ କରନ୍ତି । ତେଣୁ ଜଳରେ ପ୍ରବେଶ କରିବାମାତ୍ରେ ଏକପ୍ରକାର ସ୍ଫୂର୍ତ୍ତି ଆସେ । ଯେତେ ଗମ୍ଭୀର ବ୍ୟକ୍ତି ହୋଇଥିଲେ ମଧ୍ୟ ଜଳ ମଧ୍ୟରେ ପଶିବାମାତ୍ରେ ମୁହଁରେ ହସ ଫୁଟି ଉଠେ । ଛୋଟ ପିଲାମାନେ ଜଳ ଭିତରେ ପଶିବାମାତ୍ରେ ଦୁଷ୍ଟାମୀ ଆରମ୍ଭ କରି ଦିଅନ୍ତି, ସ୍ତ୍ରୀମାନେ ହସନ୍ତି । ଜଳ ମଧ୍ୟରେ ଏକ ପ୍ରକାର ଶାନ୍ତିର ଅନୁଭବ ହୋଇଥାଏ । ଯଦି

Digitized by srujanika@gmail.com

ସମବୟସ୍କ ଯୁବକ ଯୁବତୀ ଏକ ସଙ୍ଗରେ ଜଳରେ ସ୍ନାନ କରନ୍ତି, ହସନ୍ତି ଓ ଖେଳନ୍ତି ସେତେବେଳେ ପୃଥିବୀକୁ ସ୍ୱର୍ଗ ଚ୍ୟୁତ ଆସିଲା ପରି ମନେହୁଏ । ସଦାସର୍ବଦା ଅନ୍ତଃପୁରରେ ରହୁଥିବା ସ୍ତ୍ରୀମାନଙ୍କୁ ସ୍ୱଚ୍ଛନ୍ଦ ସ୍ନାନରେ ଅତ୍ୟଧିକ ଆନନ୍ଦ ମିଳିଥାଏ । ସେଇ ଯୁବତୀ କନ୍ୟାମାନଙ୍କର ଏଇ ପ୍ରକାର ଜଳକ୍ରୀଡ଼ା ସମୟରେ ବାୟୁ-ଦେବତାଙ୍କର ଗୋଟିଏ ପରିହାସ କରିବାପାଇଁ ଇଚ୍ଛା ହେଲା । ସେ କୂଳରେ ଥିବା ସେମାନଙ୍କର ବସ୍ତ୍ର ସବୁ ଏପଟ ସେପଟ କରିଦେଲେ । ସେମାନେ ତ ଜଳମଧ୍ୟରେ ଥିଲେ । ତେଣୁ ବାୟୁର ବେଗ ତାଙ୍କୁ ଜଣା ବି ପଡ଼ିଲା ନାହିଁ ।

ଏଇ ସମୟରେ ଜଣଙ୍କର ଆଖି ସାମ୍ନାରେ ପଡ଼ିଗଲା । ସେ ଦେଖିଲା ଭଗବାନ ଭୂତନାଥ ଭବାନୀଙ୍କ ସହିତ ବୃଷଭ ଉପରେ ଚଢ଼ି ସେଇ ଆଡ଼କୁ ହିଁ ଆସୁଥିଲେ । ସେ ସଂଭ୍ରମ ସହିତ ଶିବଙ୍କର ଆଗମନ ବାର୍ତ୍ତା ସମସ୍ତଙ୍କୁ ଜଣାଇ ଦେଲା । ସମସ୍ତେ ଉଲଗ୍ନ ଥିଲେ । ତେଣୁ ଲଜ୍ଜିତ ହୋଇ ସମସ୍ତେ ଯାଇ ଶୀଘ୍ର ଶୀଘ୍ର ନିଜ ନିଜର ବସ୍ତ୍ର ପିନ୍ଧିବାକୁ ଲାଗିଲେ । ଶର୍ମିଷ୍ଠା ଥିଲେ ରାଜକୁମାରୀ ତେଣୁ ଚଞ୍ଚଳ ସ୍ୱଭାବ ତାଙ୍କର ଅଧିକ ଥିଲା । ସମସ୍ତଙ୍କଠାରୁ ପ୍ରଥମେ ସେ ଦୌଡ଼ି ଯାଇ ନିଜ ଶାଢ଼ୀ ପିନ୍ଧିଦେଲେ ତଥା ଅନ୍ୟମାନେ ମଧ୍ୟ ନିଜ ନିଜ ବସ୍ତ୍ର ପିନ୍ଧିଲେ । ଦେବଯାନୀ ତ ବ୍ରାହ୍ମଣ-କୁମାରୀ ଥିଲେ । ତେଣୁ ତାଙ୍କର ମନରେ ଅଧିକ ଗର୍ବ ଥିଲା । ସେ ଜାଣିଥିଲେ, ଶିବ ମୋର ପିତାଙ୍କର ସହପାଠୀ ଥିଲେ ।' ତେଣୁ ତାଙ୍କର ଅଧିକ ସଂଭ୍ରମ ହେଲା ନାହିଁ । ସେ ଧୀରେ ଧୀରେ ବାହାରିଲେ । ସେତେବେଳକୁ ଶର୍ମିଷ୍ଠା ଶାଢ଼ୀ ପିନ୍ଧି ସାରିଥିଲେ । ଶର୍ମିଷ୍ଠା ଓ ଦେବଯାନୀଙ୍କର ବସ୍ତ୍ର ପ୍ରାୟ ସମାନ ଥିଲା । ଅଜାଣତରେ ଶର୍ମିଷ୍ଠା ଦେବଯାନୀର ଶାଢ଼ୀ ପିନ୍ଧିଦେଇ ଥିଲେ ।

ଦେବଯାନୀ ଆସି ଦେଖିଲା ଯେ ତା' ଶାଢ଼ୀ ଶର୍ମିଷ୍ଠା ପିନ୍ଧି ଦେଇଛି । ଏକେ ତ ଗୁରୁପୁତ୍ରୀ ହେବାର ଅଭିମାନ, ଦ୍ୱିତୀୟରେ ତା'ର ସ୍ୱଭାବ ହିଁ ଟିକେ ଉଗ୍ର । ଯେ ତା'ର ପ୍ରତି କଥାକୁ ହିଁ ହିଁ କହି ସମର୍ଥନ ଜଣାଉଥିଲା ତା' ପ୍ରତି ତା'ର ଆଦରର ସୀମା ନଥିଲା କିନ୍ତୁ ଯେ ତା'ର ଇଚ୍ଛା ବିରୁଦ୍ଧ କୌଣସି ଛୋଟିଆ କାମଟିଏ କରି ଦେଉଥିଲା ତେବେ ତା'ର କ୍ରୋଧର ସୀମା ରହୁ ନଥିଲା । ତା'ର ମନେ ହେଲା ଯେତେଯେପରି ଶର୍ମିଷ୍ଠା ଜାଣି ଜାଣି ତା'ର ଶାଢ଼ୀଟା ପିନ୍ଧି ଦେଇଛି । ତେଣୁ ସେ ଅତ୍ୟନ୍ତ ଉଗ୍ର ହୋଇ କହିଲା—"ଶର୍ମିଷ୍ଠା, ତତେ କ'ଣ ଟିକିଏ ବି ଲଜ୍ୟା ଲାଗେ ନାହିଁ ? ତୁ ମୋର ଶାଢ଼ୀ କାହିଁକି ପିନ୍ଧି ଦେଇଛୁ ?"

ଶର୍ମିଷ୍ଠା ନିଜର ଭୁଲ ସ୍ୱୀକାର କରି ହସିଦେଇ କହିଲା—"ଆହା ! ମୋର ତ ଭୁଲ ହୋଇ ଯାଇଛି ! ଶୀଘ୍ର ଶୀଘ୍ର ହୋଇ ମୁଁ ମୋର ଶାଢ଼ୀ ବୋଲି ଭାବି ପିନ୍ଧି ଦେଇଛି ।"

Digitized by srujanika@gmail.com

ଦେବଯାନୀ ଅତ୍ୟନ୍ତ ରାଗିଯାଇ କହିଲା—"ତୁ କଣ ଅନ୍ଧ ଶୁଣି ? ଏବେ ମୁଁ କଅଣ ପିନ୍ଧିବ ଯେ !"

ଶର୍ମିଷ୍ଠା କହିଲା—"ମୁଁ ତୁମ ଶାଢ଼ୀ ଟାଳ ପିନ୍ଧି ଦେଇଛୁ । ଅନ୍ୟ ବସ୍ତ୍ର ତୁମର ତ ସବୁତକ ଅଛୁ । ଶାଢ଼ୀ କେବଳ ନାହିଁ । ତେଣୁ ତୁମେ ମୋ ଶାଢ଼ୀଟି ପିନ୍ଧ ଦିଅ । ନ ହେଲେ ମୁଁ ଏଇ ଶାଢ଼ୀ ଖୋଲି ଦେବ କ ?"

ଦେବଯାନୀ ଶର୍ମିଷ୍ଠାର ଏକଥା ଶୁଣି ଆଉ ସମ୍ଭାଳି ହୋଇ ରହି ପାରିଲା ନାହିଁ । କହିଲା—"ତୁ ଆମର ଦାସୀ ହୋଇ ଏପରି କଥା କହୁଛୁ ? ତତେ ଲଜ୍ୟା ଲାଗୁନ ? ତୁ ପିନ୍ଧିଥିବା ଶାଢ଼ୀକୁ ମୁଁ କପରି ପିନ୍ଧି ପାରିବ ! ତୁ କ୍ଷତ୍ରିୟ କନ୍ୟା, ମୁଁ ବ୍ରାହ୍ମଣ କନ୍ୟା । ଏମିତି ସେମିତି ବ୍ରାହ୍ମଣ ନୁହଁ । ଭୃଗୁବଂଶରେ ଉତ୍ପନ୍ନା ଉଶାନାଙ୍କର ବଂଶ । ମୁଁ ସେଇ ଭୃଗୁଙ୍କ ବଂଶର କନ୍ୟା ଯେ କି ଭଗବାନ ବିଷ୍ଣୁଙ୍କ ଛାତିରେ ଗୋଇଠା ମାରିଥିଲେ ଏବଂ ତାଙ୍କୁ ଦଶାବତାର ହେବାପାଇଁ ଅଭିଶାପ ଦେଇଥିଲେ । ତୁ ପିନ୍ଧିଥିବା ବସ୍ତ୍ର ମୁଁ ଛୁଇଁ ବ ପାରିବ ନାହିଁ ।

ଏହା ଶୁଣିବା ପରେ ଶର୍ମିଷ୍ଠା ମଧ୍ୟ କ୍ରୋଧରେ ଅସ୍ଥିର ହୋଇଗଲା । ଯେତେହେଲେ ସେ ଥିଲା ରାଜକନ୍ୟା । ତେଣୁ ରାଗିଯାଇ କହିଲା—"ତୁ ବ୍ରାହ୍ମଣ କନ୍ୟା ବୋଲି କ'ଣ ସମସ୍ତଙ୍କୁ ଅଭଦ୍ର ଆଚରଣ କରିବୁ ? ମୁଁ କ୍ଷତ୍ରିୟ ହେଲି ବୋଲି ତୋ ପାଖକୁ ମାଗିବାପାଇଁ ତ ଯାଇନ । କହୁଛୁ ତ ଭୁଲ ହୋଇ ଯାଇଛୁ । ପୁଣି ଏତେ ରାଗିବାରେ କଅଣ ଅଛୁ । ପିନ୍ଧି ତ ସାରିଲିଣି । ଏବେ ତୋ'ର ଯାହା ଇଚ୍ଛା ତୁ କରିଯାଆ ।"

ଦାମ୍ଭିକାମୂର୍ତ୍ତି ଦେବଯାନୀ କହିଲା—"ଅଚ୍ଛା, ତୁ ତ ବହୁତ ବଢ଼ିଗଲୁଣି । ଆମର ଦାସୀ ହୋଇ ତୋର ଏତେ ସାହସ ! ବ୍ରାହ୍ମଣଙ୍କୁ ଏତେ ଅପମାନ ! ତୋ ବାପା ସଦାବେଳେ ମୋ ବାପାଙ୍କର ପାଦତଳେ ପଡ଼ିରହେ । ବ୍ରାହ୍ମଣଙ୍କୁ ତୁ ଏତେ ସାଧାରଣ ବୋଲି ଭାବିଛୁ କି ? ସେମାନେ ପରମ ପୁରୁଷ । ବ୍ରହ୍ମାଙ୍କର ମୁଖରୁ ଉତ୍ପନ୍ନ ହୋଇଥିବାରୁ ସବୁ ବ୍ରହ୍ମଙ୍କର ମୁଖ୍ୟ ବୋଲି ମନେକରାଯାଏ । ସେଇମାନେ ହିଁ ନିଜର ତପସ୍ୟା ବଳରେ ଏଇ ବିଶ୍ୱବ୍ରହ୍ମାଣ୍ଡକୁ ସୃଷ୍ଟି କରିଛନ୍ତି । ସେଇମାନେ ହିଁ ବୈଦିକ ବର୍ଣ୍ଣାଶ୍ରମ ଏବଂ ଧର୍ମର ବିସ୍ତାର କରିଛନ୍ତି । ତୁମ ଅସୁରଙ୍କ କଥା ତ ନଗଣ୍ୟ । ଦେବତା ଏବଂ ରାଜା ମହାରାଜାମାନେ ମଧ୍ୟ ତାଙ୍କର ଚରଣ ବନ୍ଦନା କରନ୍ତି । ସ୍ୱୟଂ ଶ୍ରୀଭଗବାନ ମଧ୍ୟ ଯାହାର ସ୍ତୁତି କରନ୍ତି, ବ୍ରାହ୍ମଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଆମେ ସେଇ ଭୃଗୁବଂଶର । ଯଜ୍ଞର ଭୋଗକୁ ଯଦି କେଉଁ କୁକୁର ଅଇଁଠା କରିଦିଏ ତେବେ କ'ଣ କେବେ କେହି ବ୍ରାହ୍ମଣ ଖାଇପାରେ ? ସେମିତି ତୁ ଯେଉଁ ବସ୍ତ୍ର ପିନ୍ଧିସାରିଛୁ ମୁଁ କ'ଣ ତାକୁ ପିନ୍ଧିପାରେ ?

Digitized by srujanika@gmail.com

ଶର୍ମିଷ୍ଠା ଏହା ଶୁଣି ଅତ୍ୟନ୍ତ କ୍ରୋଧିତା ହୋଇ କହିଲା—"ଦେଖ୍ ମୁହଁ ସମ୍ଭାଳି କଥା କହ, ନହେଲେ ତୋ ଜିଭ ଟାଣି ବାହାର କରଦେବ । ଘର ବ୍ରାହ୍ମଣୀ ଇଏ ଆସିଲା ! ଆମକୁ କହୁଛ କୁକୁରୀ ! ତୁ କୁକୁରୀ, ତୋ ବାପ କୁକୁର !"

ଦେବଯାନୀ ଏତକ ଶୁଣି କ୍ରୋଧରେ ଖାଲି ଜଳିବାକୁ ଲାଗିଲା । କହିଲା—"ମୋ ବାପ କୁକୁର କି ସିଂହ ରହିଥା ଏଇନା ଜାଣିଯିବୁ । ମୋ ବାପ ହିଁ ତୋ ବାପର ରାଜ୍ୟକୁ ରକ୍ଷାକରି ରହିଛନ୍ତି । ତାଙ୍କୁ ତୁ ପଛରେ ନିନ୍ଦା କରୁଛୁ । ମୋ ବାପ ନ ଥିଲେ ତ ତୁ ଭୋକରେ ମରିଯାଆନ୍ତୁ, ଗୋଟିଏ ଗୋଟିଏ ଅନ୍ନ-ଦାନା ପାଇଁ ବିକଳ ହୋଇଯାଆନ୍ତୁ ।"

ଶର୍ମିଷ୍ଠା କହିଲା—"ଆଲୋ ଭିକ୍ଷୁକୀ ! ଏତେ ବଢ଼େଇ ଚଢ଼େଇ ଆଉ କଥା କହନା । ତୋ ସ୍ଥିତି କ'ଣ, ଆମେ ସବୁ ଜାଣୁ । ମୁଠାଏ ଅନ୍ନପାଇଁ ତ ତୁ ଆମ ମହଲକୁ ଅନାଇ ରହିଥାଉ । ତୋ ବାପ ଯେତେବେଳେ ଦକ୍ଷିଣାଗ୍ରହଣ ଆଣେ ସେତେବେଳେ ଯାଇ ତୁ ଖାଉ । ଆମର ଖାଇ ଆମରି ଉପରକୁ ଭୁକୁଛୁ ! ଯେଉଁ ବାସନରେ ଖାଇବୁ ସେଇ ବାସନ କଣା କରୁଛୁ ! କୁକୁର ଓ କୁଆଙ୍କୁ ଆମେ ଯେପରି ଅଇଁଠାଭାତ ପକାଇଦେଉ ସେମିତି ତୁମମାନଙ୍କୁ ବି ଦଉ । କୁଆ ତା'ପରେ ବି ତୁ ଏତେ ଲମ୍ବାଚଉଡ଼ା କଥା କହୁଛୁ ?"

ଦେବଯାନୀ କହିଲା—"ତୁମେ ସବୁ ଅସୁର । ଅସୁରମାନେ ଜାଣିକରି ନୀଚ ହୋଇଥାଆନ୍ତି । ସର୍ପିଣୀ ଗର୍ଭରେ ସର୍ପିଣୀ ହିଁ ଆଆନ୍ତି । ଆଜି ମୁଁ ତୋତେ ତୋର କୃତକାର୍ଯ୍ୟର ଫଳ ଚଖେଇବି । ଯଦି ମୁଁ ତୋର ଏଇ ଅପମାନର ପ୍ରତିଶୋଧ ନ ନେଇଛି ତେବେ ତୁ ମୋ ନାଁ ବଦଳାଇ ଦେବୁ । ମୋତେ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା ବୋଲି କହିବୁ ନାହିଁ ।"

ଏହା ଶୁଣୁ ଶୁଣୁ ଶର୍ମିଷ୍ଠା ଯେପରି କ୍ରୋଧରେ ପାଗଳ ହୋଇଗଲା । ସେ ଦେବଯାନୀ ହାତରେ ଯେଉଁ ଅବଶିଷ୍ଟ ଦୁଇ ଖଣ୍ଡଖଣ୍ଡ ବସ୍ତ୍ର ଥିଲା ତାକୁ ମଧ୍ୟ ଛଡ଼େଇ ନେଲା ଏବଂ ଦେବଯାନୀକୁ ଉଲଗ୍ନକରି ନିକଟରେ ଥିବା ଏକ କୂଅ ଭିତରକୁ ଠେଲିଦେଲା । ତା'ପରେ ଶର୍ମିଷ୍ଠା ତା'ର ସଖୀମାନଙ୍କ ସହିତ ନିଜ ପିତାଙ୍କ ମହଲକୁ ଫେରିଆସିଲା । ତାଙ୍କ ଭିତରୁ ଜଣେ ଦି'ଜଣ କହିଲେ—"ରାଜକୁମାରୀ ! ଗୁରୁପୁତ୍ରୀଙ୍କ ସାଥିରେ ଏପରି ବ୍ୟବହାର ଠିକ୍ ହେଲାନି ।" ସେ ରାଗିଯାଇ କହିଦେଲା—"ବର୍ତ୍ତମାନ ଆଉ ଦେବଯାନୀ ସମ୍ବନ୍ଧରେ ଆଲୋଚନା କରିବା ଦରକାର ନାହିଁ ।" ଏହା କହି ସେ ସମସ୍ତଙ୍କ ସହ ମହଲ ଭିତରକୁ ଚାଲିଗଲା ।

Digitized by srujanika@gmail.com

ଶୌନକ ମୁନି ପଚାରିଲେ—"ତା'ପରେ ଦେବଯାନୀର କ'ଣ ହେଲା ? ସେ ସେମିତି କୂଅରେ ପଡ଼ି ରହିଲା ନା କେହି ତାକୁ ବାହାର କଲା ?"

ସୂତ ମୁନି ଉତ୍ତର ଦେଲେ—"ମୁନିମାନେ ! ଭଗବାନ ଯାହା କରନ୍ତି ସର୍ବଦା ଉଚିତ ହିଁ କରିଥାଆନ୍ତି । ଦେବଯାନୀକୁ ମହାରାଜ ଯଯାତି ହିଁ କୂଅରୁ ବାହାର କଲେ । ସେ ବିଷୟରେ କହୁଛି ଶୁଣ ।"

## ଛପ୍ପୟ

ଭଲଟେ ଫୂଲଟେ ବାୟୁଦେବ ନେ ପଟ ଅରୁ ଗହନେ ।  
ଗୁରୁପୁତ୍ରୀ କେ ବସ୍ତ୍ର ଭୂଲ ଶର୍ମିଷ୍ଠା ପହନେ ॥  
ଶୁକ୍ରସୁତା ନେ କହୁଂ ବହୁତ ଅନ ଜହନୀ ବାନୀ ।  
ବୃଷପର୍ବା କୀ ସୁତା ସୁନତ ମନ ମାଁହୁଁ ରିସାନୀ ॥  
ଅନ୍ଧକୂପ ଧକ୍କା ଦୟୋ, ଗିରୀ ଦେବଯାନୀ ତବହୁଁ ।  
ଛାଁଡ଼ି ବିବସ୍ତ୍ରା କୂପମହୁଁ, ଆଇ ଲୌ ପୁରି ମହଁ ସବହୁଁ ॥



Digitized by srujanika@gmail.com

## ଦେବଯାନୀ ଏବଂ ଯଯାତି

ତସ୍ୟାଂ ଗତାୟାଂ ସ୍ୱଗୃହଂ ଯଯାତିର୍ମୃଗୟାଂ ଚରନ୍ ।
ପ୍ରାପ୍ତୋଯଦୃଚ୍ଛୟା କୂପେ ଜଲାର୍ଥୀ ତାଂ ଦଦର୍ଶ ହ ॥
ଦତ୍ତ୍ୱା ସ୍ୱମୁତ୍ତରଂ ବାସସ୍ତସ୍ୟୈ ରାଜା ବିବାସସେ ।
ଗୃହୀତ୍ୱା ପାଣିନା ପାଣିମୁଜ୍ଜହାର ଦୟାପରଃ ॥ *

(ଶ୍ରୀ ଭା ୯ ସ୍କ ୧୮ ଅ: ୧୮ ୧୯ ଶ୍ଳୋକ)

### ଛପ୍‌ପଯ୍ୟ

ଦୈବଯୋଗ ତେଣିଂ ନୃପ ଯଯାତି ମୃଗୟା-ହିତ ଆୟେ ।
ନଂଗୀ ନିରଖୀ କୂପ ଦେବଯାନୀ ସକୁଚାୟେ ॥
ଦୟୋ ଦୁପଟ୍‌ଟା ତାହି ଦୟାବଶ ତୁରତ ନିକାସୀ ।
ଦୟା ଉଲଟି କୈ ପରି ଭୂପ କେ ଗର ମହଁ ଫାଁସୀ ॥
ପିତୁ ଢିଙ୍ଗ ଆଇ ଦୁଖିତ ହୈ, ଦ୍ୱିଜ-ତନୟା ନୃପ ବରି ଲୟେ ।
ସୁନି ଘଟନା ତନୟା-ସହିତ, ଉଶନା ଅତି ଦୁଃଖିତ ଭୟେ ॥

ସଂରଳଚିତ୍ତ ସ୍ତ୍ରୀ-ପୁରୁଷ ପ୍ରଥମରେ କାହା ଉପରେ କ୍ରୋଧ କରନ୍ତି ନାହିଁ ।
କେବେ ଯଦି କାହା ଉପରକୁ କ୍ରୋଧ ଆସିଯାଏ ତେବେ କିଛି ସମୟ ପରେ ତାହା

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଶର୍ମିଷ୍ଠା ଯେତେବେଳେ ଘରକୁ ଚାଲିଗଲା, ଦୈବଯୋଗରୁ ମୃଗୟା କରୁ କରୁ ରାଜା ଯଯାତି ସେଠାରେ ପହଞ୍ଚିଲେ । ଜଳ ଆଶାରେ ସେ ଯେମିତି କୂଅ ଭିତରକୁ ଚାହିଁଲେ ସେଠାରେ ଦେବଯାନୀଙ୍କୁ ଦେଖିଲେ । ଦୟାପରବଶ ହୋଇ ସେ ବିବସ୍ତ୍ରା ଦେବଯାନୀଙ୍କୁ ନିଜ ଉତ୍ତରୀୟ ଦେଇ ଦେଲେ ଏବଂ ନିଜ ହାତରେ ଧରି ତାଙ୍କୁ କୂଅରୁ ବାହାରକୁ ନେଇ ଆସିଲେ ।"

Digitized by srujanika@gmail.com

ଶାନ୍ତ ହୋଇ ଯାଇଥାଏ । ସେମାନଙ୍କର କ୍ରୋଧ ପାଣିର ଗାର ପରି ହୋଇଥାଏ । ପାଣିରେ ଗାର ଟାଣି ଦେଲେ ଯେପରି ତାହା ସଙ୍ଗେ ସଙ୍ଗେ ମିଶିଯାଏ । କେତେକ ମଧ୍ୟମ ଶ୍ରେଣୀର ପୁରୁଷ ଅଛନ୍ତି ଯେଉଁମାନଙ୍କର କ୍ରୋଧ ବାଲିଗାର ପରି ହୋଇଥାଏ । ବାଲିରେ ତ କିଛି ସମୟ ପାଇଁ ଗାର ରହିଥାଏ କିନ୍ତୁ ପବନ ହେବା ମାତ୍ରେ ପୁଣି ସବୁ ମିଶିମାଶି ଯାଇ ଗାର ଲିଭିଯାଏ । କିନ୍ତୁ କେତେକଣ ଏପରି କ୍ରୋଧୀ ପୁରୁଷ ଅଛନ୍ତି ଯେଉଁମାନଙ୍କର କ୍ରୋଧ ପଥରର ଗାର ପରି ସ୍ଥାୟୀ ହୋଇଥାଏ । କେବେହେଲେ ଲିଭେ ନାହିଁ । ଯଦି କିଏ ତାଙ୍କର କିଛି ନା କିଛି ଅପକାର କରିଦିଅନ୍ତି ତେବେ ସେମାନେ ପ୍ରତିହିଂସାର ନିଆଁରେ ଜଳୁଥାଆନ୍ତି ଏବଂ ସାରାଜୀବନ ତାହା ସ୍ମରଣ ରଖନ୍ତି ।"

ସୂତ ମୁନି କହୁଛନ୍ତି—"ମୁନିଗଣ ! ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ଦେବଯାନୀଙ୍କୁ କୂଅକୁ ଠେଲିଦେଇ ଚାଲିଆସିଲା । ସେ ଭାବିଲା, ଦେବଯାନୀ ମରିଯାଇଥିବ । କିନ୍ତୁ ଭାଗ୍ୟର ଖେଳ ଥିଲା ଅନ୍ୟ ପ୍ରକାରର । ସେ କୂଅ ବେଶୀ ଗଭୀର ନଥିଲା ତଥା ସେଥିରେ ପାଣି ମଧ୍ୟ ନଥିଲା । ଅନାବନା ଘାସରେ ଆବୃତ ତାହା ଏକ ଅନ୍ଧକୂପ ଥିଲା । ଉଲଗ୍ନ ଦେବଯାନୀ ଦୁଇଆଣ୍ଠୁ ଭିତରେ ମୁହଁ ରଖି ସେହି କୂଅ ଭିତରେ ବସି ରହିଲା । ତା'ର ପ୍ରତି ଲୋମ କ୍ରୋଧରେ ଜଳୁଥିଲା । ମନେ ମନେ ସେ ପ୍ରତିଜ୍ଞା କଲା ଶର୍ମିଷ୍ଠାଠାରୁ ସେ ନିଶ୍ଚୟ ଏ ଅପମାନର ପ୍ରତିଶୋଧ ନେବ, ଯେବେ ବି ହେଉ, ଯେଉଁ ପ୍ରକାରର ବି ହେଉ ! କୂଅ ଭିତରେ ବସି ବସି ସେ କ୍ରୋଧରେ ଜଳୁଥିଲା । କିନ୍ତୁ କିଛି ଉପାୟ ପାଉ ନଥିଲା ।"

ଦୈବଯୋଗରୁ ନହୁଷ-ପୁତ୍ର ମହାରାଜ ଯଯାତି ମୃଗୟା କରୁ କରୁ ସେଇ ଜାଗାରେ ଆସି ପହଞ୍ଚିଲେ । ସେ ନିଜ ରାଜଧାନୀରୁ ସେନା ତଥା ମନ୍ତ୍ରିମାନଙ୍କସହ ମୃଗୟା ପାଇଁ ବାହାରିଥିଲେ । ପଥ ମଧ୍ୟରେ ସେ ଗୋଟିଏ ବିରାଟ ଶୂକର ଦେଖି ତା' ପଛରେ ଘୋଡ଼ା ଛୁଟାଇ ଦେଲେ । ସେନାର ଅନ୍ୟ ସମସ୍ତେ ପଛରେ ରହିଗଲେ । ଏକ ଘନ ଜଙ୍ଗଲ ଭିତରେ ଯାଇ ଶୂକରଟି କୁଆଡ଼େ ଲୁଚିଗଲା । ରାଜା କ୍ଷୁଧା ତୃଷାରେ ବ୍ୟାକୁଳ ହୋଇ ପଡ଼ିଲେ । ତାଙ୍କ ଘୋଡ଼ା ମଧ୍ୟ କ୍ଲାନ୍ତ ହୋଇ ଯାଇଥିଲା । ଜଳର ସନ୍ଧାନରେ ବୁଲି ବୁଲି ଦୈବାତ ତାଙ୍କର ଦୃଷ୍ଟି ସେଇ କୂଅରେ ପଡ଼ିଲା । କୂଅ ଭିତରକୁ ଚାହିଁ ସେ ଦେଖିଲେ ସେଥିରେ ପାଣି ନଥିଲା, କିନ୍ତୁ ଉଲଗ୍ନା ଅବସ୍ଥାରେ ଏକ ଦିବ୍ୟସୁନ୍ଦରୀ କନ୍ୟା ତା' ଭିତରେ ବସିଥିଲା । ତା' କାନର ଦୁଇ ଦିବ୍ୟକୁଣ୍ଡଳ ସୂର୍ଯ୍ୟ-ଚନ୍ଦ୍ର ପରି ଚମକୁ ଥିଲା । ତା'ର ପ୍ରକାଶରେ ତା'ର ସୁବର୍ଣ୍ଣ ବର୍ଣ୍ଣର ଶରୀର ଅଗ୍ନିସମ ପ୍ରଜ୍ୱଳିତ ହେଉଥିଲା । ଏତେ ସୁନ୍ଦରୀ ଯୁବତୀକୁ କୂଅ ଭିତରେ ପଡ଼ିଥିବାର ଦେଖି ରାଜାଙ୍କର ବିସ୍ମୟର ସୀମା ରହିଲା ନାହିଁ । ତା'ର ବିବସ୍ତ୍ର ଅବସ୍ଥା ଦେଖି

Digitized by srujanika@gmail.com

ତାଙ୍କର ଦୟା ମଧ୍ୟ ଆସିଲା । ସେ କହିଲେ—"ସୁନ୍ଦରୀ ! ତୁମେ କିଏ ? ଏଇ କୂଅ ଭିତରେ କେମିତି ପଡ଼ିଗଲ ? ମୁଁ ତୁମର କ'ଣ କରିପାରିବି ?"

କୂଅ ଭିତରୁ ଦେବଯାନୀ କହିଲା—"ହେ ବୀର ! ମୁଁ ଅସୁର-ଗୁରୁ ଭଗବାନ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା । ସେ ଦାନବେନ୍ଦ୍ର ବୃଷପର୍ବାଙ୍କର ପୂଜନୀୟ ପୁରୋହିତ ଅଟନ୍ତି । ସେ ଯୁଦ୍ଧରେ ମରୁଥିବା ଅସୁରମାନଙ୍କୁ ନିଜ ମୃତ-ସଞ୍ଜୀବନୀ ବିଦ୍ୟାଦ୍ୱାରା ଜୀବନ୍ୟାସ ଦେଇଦିଅନ୍ତି । ହେ ରାଜା ! ଦୁର୍ଭାଗ୍ୟବଶତଃ ମୁଁ କୂଅରେ ପଡ଼ିଯାଇଛି । ମୋର ତେଜସ୍ୱୀ-ତପସ୍ୱୀ ପିତାଙ୍କୁ ଏ କଥା ଜଣାନାହିଁ । ଆପଣ କୃପା କରି ମୋତେ ଏଥିରୁ ବାହାର କରି ଦିଅନ୍ତୁ ।"

ଏହା ଶୁଣି ମହାରାଜ ଯଯାତି ଆଶ୍ଚର୍ଯ୍ୟ ହୋଇଗଲେ । ସେ ନିଜ ଉତ୍ତରୀୟ ବସ୍ତ୍ର କୂଅରେ ପକାଇ କହିଲେ—"ସୁନ୍ଦରୀ ! ତୁମେ ଏହି ବସ୍ତ୍ରଦ୍ୱାରା ନିଜ ଶରୀରକୁ ଆବୃତ୍ତ କର । ମୁଁ ତୁମକୁ ବର୍ତ୍ତମାନ କୂଅରୁ ବାହାରକୁ ବାହାର କରୁଛି ।"

ଦେବଯାନୀ ରାଜାଙ୍କର ରେଶମୀ ବସ୍ତ୍ର ନିଜ ଦେହରେ ଗୁଡ଼ାଇ ନେଲେ । ରାଜା ତା'ପରେ ଘୋଡ଼ାର ଲଗାମ ଏବଂ ରସି ବାନ୍ଧି କୂଅରେ ପକାଇଲେ । ଦେବଯାନୀ ତାକୁ ଧରି ଧରି ଉପରକୁ ଆସିଲେ । ରାଜା ଶେଷରେ ତା'ର ସୁନ୍ଦର କୋମଳ ହାତ ଧରି ତାକୁ କୂଅରୁ ବାହାରକୁ ବାହାର କରି ଆଣିଲେ । ତା'ର ସ୍ନିଗ୍ଧ ସୌନ୍ଦର୍ଯ୍ୟ ଦେଖି ରାଜା ମୁଗ୍ଧ ହୋଇଯାଇଥିଲେ । ରାଜା ଯୁବକ ଥିଲେ ତଥା ସୁନ୍ଦର ମଧ୍ୟ ଥିଲେ । ତାଙ୍କର ଚିତ୍ତ ଚଞ୍ଚଳ ହୋଇଗଲା । ତଥାପି ସେ ବ୍ରାହ୍ମଣ କନ୍ୟା ବୋଲି ମନେକରି ନିଜ ମନକୁ ଜୋର୍ କରି ସେ ଦିଗରୁ ହଟେଇବାକୁ ଲାଗିଲେ । ମଣିଷର ହୃଦ୍‌ଗତ ଭାବ ଲୁଚି ରହିପାରେ ନାହିଁ । ଦେବଯାନୀ ରାଜାଙ୍କ ମନୋଭାବ ମୁହୂର୍ତ୍ତିକରେ ଜାଣିନେଲା । ରାଜାଙ୍କର ରୂପମାଧୁର୍ଯ୍ୟ ଦେଖି ସେ ମଧ୍ୟ ନିଜକୁ ହଜାଇ ସାରିଥିଲା । ତେଣୁ ସେ କହିଲା—"ହେ ରାଜା ! ତୁମେ ମୋର ପାଣିଗ୍ରହଣ କରିଛ । ଏବେ ଜୀବନସାରା ତାହାର ଭାର ଗ୍ରହଣ କରିବ ।

ଆଶ୍ଚର୍ଯ୍ୟ ହୋଇ ମହାରାଜ ଯଯାତି କହିଲେ—"ଦେବି ! ତୁମେ କିପରି ଅଧର୍ମ କଥା କହୁଛ ? ସମ୍ଭବତଃ ତୁମେ ମୋର ପରିଚୟ ପାଇନାହଁ । ମୁଁ ମହାରାଜ ନହୁଷଙ୍କର ପୁତ୍ର ଯଯାତି । ଜାତିରେ ମୁଁ କ୍ଷତ୍ରିୟ । ଭଗବାନ ଶୁକ୍ରାଚାର୍ଯ୍ୟଙ୍କୁ ମୁଁ ଜାଣେ । ତୁମେ ତାଙ୍କର ଆଦରଣୀୟା କନ୍ୟା । ମୁଁ କ୍ଷତ୍ରିୟ ହୋଇ କିପରି ତୁମ ସହିତ ବିବାହ କରି ପାରିବି ? ମୁଁ ତୁମର ଯେଉଁ ପାଣିଗ୍ରହଣ କଲି, ଏହା ଧର୍ମ-ପୂର୍ବକ ନୁହଁ ବରଂ ବିପତ୍ତି ସମୟର ।

Digitized by srujanika@gmail.com

ଦେବଯାନୀ କହିଲା—"ବର୍ତ୍ତମାନ ଯାହା କହିବାର କୁହନ୍ତୁ କିନ୍ତୁ ଯେପରି ହେଉ ପଛେ ଆପଣ ମୋର ପାଣିଗ୍ରହଣ କରି ସାରିଛନ୍ତି । ସୁପୁରୁଷମାନେ ଅଙ୍ଗୀକାର ହୋଇଥିବାମାନଙ୍କର ପ୍ରତିପାଳନ କରନ୍ତି । ଆପଣ ଶୂରବୀର, ଶତ୍ରୁଜୟୀ, ନିଜ ପ୍ରତିଜ୍ଞାକୁ ରକ୍ଷା କରିବାପାଇଁ ନିଜ ଜୀବନ ମଧ୍ୟ ଦେଇଦେବା ବ୍ୟକ୍ତି । ଦେଖନ୍ତୁ ମୋର ଯେଉଁ ହାତ ଆପଣ ଧରିସାରିଛନ୍ତି ତାକୁ ଅନ୍ୟ କେହି ପୁରୁଷ ଯେପରି ନ ଧରି ପାରନ୍ତି ।"

ରାଜା କହିଲେ—"ଦେବି ! ବିବାହ କ'ଣ ଏମିତି ହୁଏ ? ବିବାହରେ ତ ମନ୍ତ୍ର ପଢ଼ା ହୁଏ, ପୁରୋହିତ ହସ୍ତଗଣ୍ଠି ଦିଅନ୍ତି । କିନ୍ତୁ ଏଠି ତ ମୁଁ ତୁମ ହାତଧରି ତୁମକୁ କୂଅରୁ ହିଁ ବାହାରକୁ ଆଣିଲି ।"

ଦେବଯାନୀ କହିଲା—"ବିବାହରେ ପୁରୋହିତ ହାତଗଣ୍ଠି ଦିଏ, ଏଠାରେ ଭଗବାନ ହିଁ ହାତଗଣ୍ଠି ଦେଇଛନ୍ତି । ଆପଣଙ୍କର ମୋର ସମ୍ବନ୍ଧ ମନୁଷ୍ୟକୃତ ନୁହେଁ କିନ୍ତୁ ଈଶ୍ୱର-କୃତ । ତା' ନ ହେଲେ ଆପଣ ହିଁ ଚିନ୍ତା କରନ୍ତୁ କେବଳ ଆପଣ ହିଁ କାହିଁକି ଏଠାକୁ ଆସିଲେ ଅନ୍ୟ କେହି କାହିଁକି ଆସିଲେ ନାହିଁ, ଆପଣ ହିଁ କାହିଁକି ମୋର ହାତ ଧରିଲେ । ଏଇସବୁ କଥାରୁ ବୁଝିବାକୁ ହେବ ଯେ ଭଗବାନଙ୍କର ମଧ୍ୟ ଏଇୟା ଇଚ୍ଛା । ମୁଁ ନିର୍ଦ୍ଦୋଷୀ । ମୋତେ ମୋର ସଖୀମାନେ ରାଗରେ କୂଅରେ ପକେଇ ଦେଲେ । ଆପଣ ମୋତେ ଗ୍ରହଣ କରିବାରେ କୌଣସି ପ୍ରକାରର ଆଶଙ୍କା ରଖନ୍ତୁ ନାହିଁ ।"

ଏହା ଶୁଣି ରାଜା କହିଲେ—"ନାହିଁ, ନାହିଁ, ମୋର ତୁମର କୁଳୀନତା ବିଷୟରେ କୌଣସି ପ୍ରକାର ସନ୍ଦେହ ନାହିଁ । ତୁମପରି ରୂପସୀ ଯୁବତୀକୁ ପାଇଲେ ମୁଁ ଧନ୍ୟ ହୋଇଯିବି । କିନ୍ତୁ ଧର୍ମକୁ ମୋର ଡର ହେଉଛି । କ୍ଷତ୍ରିୟ ହୋଇ କିପରି ବ୍ରାହ୍ମଣ କନ୍ୟାକୁ ଗ୍ରହଣ କରିବି !"

ଦେବଯାନୀ କହିଲା—"ଆପଣ ଟିକିଏ ହେଲେ ଚିନ୍ତା କରନ୍ତୁ ନାହିଁ । କୌଣସି ବ୍ରାହ୍ମଣ-କୁମାର ମୋତେ ବରଣ କରିବେ ନାହିଁ—ବୃହସ୍ପତିଙ୍କ ପୁତ୍ର କଚ ମୋତେ ଏହା ହିଁ ଅଭିଶାପ ଦେଇଥିଲେ । ତେଣୁ ମୋର ପତି ତ କୌଣସି କ୍ଷତ୍ରିୟ ରାଜର୍ଷି ହିଁ ହୋଇ ଥାଆନ୍ତେ । ଏବେ ସଂସାରରେ ଆପଣଙ୍କଠାରୁ ଅଧିକ ସଦାଗ୍ରହୀ, କୁଳୀନ, ଧର୍ମାତ୍ମା, ଯଶସ୍ୱୀ, ତେଜସ୍ୱୀ ରାଜର୍ଷି ଅନ୍ୟ କେହି ନାହାନ୍ତି । ତେଣୁ ଏହାକୁ ଆପଣ ବିଧିର ବିଧାନ ବୋଲି ସ୍ୱୀକାର କରି ନିଅନ୍ତୁ । ମୋର ପିତା ମଧ୍ୟ ଏ ସମ୍ବନ୍ଧର ସମର୍ଥନ ଅନୁମୋଦନ କରିବେ ।"

Digitized by srujanika@gmail.com

ସୂତ ମୁନି କହୁଛନ୍ତି—"ମୁନିମାନେ ! କଥାରେ ଅଛି—"ଅନ୍ଧ ତୁ କଅଣ ଚାହୁଁ ? ଦୁଇଟି ଆଖି ।" ମହାରାଜ ଯଯାତି ତ ଏହା ହିଁ ଚାହୁଁଥିଲେ । ରାଜାଙ୍କ ମନ ଦେବଯାନୀର ସେହି ସୁନ୍ଦର ମୁଖମଣ୍ଡଳ ଏବଂ ମୃଗନୟନ ପରି ନୟନ ଭିତରେ ଛନ୍ଦି ହୋଇ ରହିଯାଇଥିଲା । ସେ କହିଲେ—"ଭଲ କଥା, ଯେତେବେଳେ ଶୁକ୍ରାଚାର୍ଯ୍ୟ ଭଗବାନ ମୋତେ ଆଦେଶ ଦେବେ ତେବେ ମୋର ଆଉ କୌଣସି ପ୍ରକାର ଭୟ ନାହିଁ । । ତାଙ୍କ ଆଦେଶ ତ ଦେବରାଜ ଇନ୍ଦ୍ର ମଧ୍ୟ ଅମାନ୍ୟ କରି ପାରିବେ ନାହିଁ ।" ଏହା କହି ଦେବଯାନୀଠାରୁ ବିଦାୟ ନେଇ ସେ ନିଜ ପୁରକୁ ଚାଲିଗଲେ ।

ଏପଟେ ଯେତେବେଳେ ଅନେକ ବେଳ ପର୍ଯ୍ୟନ୍ତ ଦେବଯାନୀ ଆସିଲା ନାହିଁ ଶୁକ୍ରାଚାର୍ଯ୍ୟଙ୍କର ଚିନ୍ତା ହୋଇଗଲା । ସେ ଦେବଯାନୀର ଦାସୀ ଘୂର୍ଣ୍ଣିକାକୁ କହିଲେ— "ଘୂର୍ଣ୍ଣିକା ! ଦେବଯାନୀ ଏତେବେଳଯାଏ ଆସିଲାନାହିଁ । ତା'ର ତ ଏତେ ଡେରି କେବେ ବି ହୁଏନାହିଁ । ତୁ ଯାଇ ତା' ଖବର ନେଇ ଆ ।"

ଆଚାର୍ଯ୍ୟଙ୍କର ଆଜ୍ଞାପାଇ ଘୂର୍ଣ୍ଣିକା ବୃଷପର୍ବାଙ୍କ ମହଲକୁ ଆସିଲା ଏବଂ ଶର୍ମିଷ୍ଠାକୁ ପଚାରିଲା । ଶର୍ମିଷ୍ଠା କିଛି ନ କହି କେବଳ କହିଲା—"ଆମକୁ କ'ଣ ଜଣା ?"

ଘୂର୍ଣ୍ଣିକାକୁ ଏକ ସଖୀ ଗୋପନରେ ଏକାନ୍ତକୁ ନେଇ ସବୁକଥା କହିଲା । ଘୂର୍ଣ୍ଣିକା ସବୁ ଶୁଣି ସେଇ ସରୋବର ନିକଟବର୍ତ୍ତୀ କୂଅ ପାଖକୁ ଦୌଡ଼ିଲା । ସେଠାରେ ରାଜାଙ୍କ ଉତ୍ତରୀୟ ଗୁଡ଼ାଇ ହୋଇ ଦେବଯାନୀକୁ ବସି କାନ୍ଦୁଥିବାର ଦେଖିଲା । ଆଦର ଓ ସ୍ନେହସହ ଏକାସାଥିରେ ସେ କହିଲା—"ଗୁରୁପୁତ୍ରୀ ! ତୁମେ କାହିଁକି ଏତେ ଅଧୀର ହୋଇପଡ଼ୁଛ ? ଚାଲ ଯାହା ହେଲା ହେଲା । ବର୍ତ୍ତମାନ ତୁମେ ଘରକୁ ଫେରିଚାଲ । ଆଚାର୍ଯ୍ୟ ଅତ୍ୟନ୍ତ ଅଧୀର ହେଉଛନ୍ତି ।"

ଦେବଯାନୀ କହିଲା—"ଘୂର୍ଣ୍ଣିକା ! ମୁଁ ବୃଷପର୍ବାର ପୁରରେ ପାଦ ବି ରଖିବନି । ତୁ ଯାଇ ମୋର ପୂଜନୀୟ ପିତାଙ୍କୁ ସବୁ ବୃତ୍ତାନ୍ତ କହିବୁ ତଥା ମୋର ପ୍ରତିଜ୍ଞା କଥା ମଧ୍ୟ କହିଦେବୁ ।"

ଘୂର୍ଣ୍ଣିକା ତତ୍‌କ୍ଷଣାତ୍ ଫେରିଆସି ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଯାଇ ଆଦ୍ୟରୁ ଧାନ୍ତଯାଏ ସବୁ ବୃତ୍ତାନ୍ତ ତାଙ୍କୁ କହିଗଲା ଏବଂ ଶେଷରେ କହିଲା—"ଶର୍ମିଷ୍ଠା ତାକୁ ପ୍ରାଣରେ ମାରିଦେବାପାଇଁ କୂଅରେ ପକାଇ ଦେଇଥିଲା । କିନ୍ତୁ ଭାଗ୍ୟବଳରୁ ସେ ବଞ୍ଚିଗଲା । ନହୁଷ ପୁତ୍ର ରାଜର୍ଷି ଯଯାତି ତା'ର ହାତଧରି ତାକୁ କୂଅରୁ ବାହାରକୁ ଆଣିଛନ୍ତି ।"

ନିଜ କନ୍ୟାର ଏପରି ଦୁର୍ଦ୍ଦଶା ଶୁଣି ଶୁକ୍ରାଚାର୍ଯ୍ୟଙ୍କ ଆଖିରେ ଲୁହ ଆସିଗଲା । ସେ ସାଙ୍ଗେ ସାଙ୍ଗେ ଘୂର୍ଣ୍ଣିକା ସହିତ ଝିଅକୁ ଦେଖିବାପାଇଁ ବାହାରିଗଲେ । ଦୂରରୁ

Digitized by srujanika@gmail.com

ନିଜର ପିତାଙ୍କୁ ଆସୁଥିବାର ଦେଖି ଦେବଯାନୀ କାନ୍ଦିବାକୁ ଲାଗିଲା । ଶୁକ୍ରାଚାର୍ଯ୍ୟ ଶୀଘ୍ର ଯାଇ ତାଙ୍କୁ କୋଳକୁ ଆଉଜାଇ ନେଲେ ତଥା ତା' ମୁଣ୍ଡ ଆଉଁସି କହିଲେ—"ଝିଅ ! ତୁ ଏତେ ଅଧୀର ହେଉଛୁ କାହିଁକି ? ଦୁଃଖ ସୁଖ ସବୁ ତ ଭାଗ୍ୟର ନିର୍ଦ୍ଦେଶରେ ହୋଇଥାଏ । ପୂର୍ବଜନ୍ମର କୌଣସି କର୍ମଯୋଗୁ ତୋର ଏପରି କିଛି ଅନିଷ୍ଟ ହେବାର ଥିଲା । ତାହା ଭୋଗ ହୋଇ ସମାପ୍ତ ହୋଇଗଲା । ତୁ କାହାକୁ ଦୋଷ ଦିଅ ନାହିଁ, ଏ ସବୁ ପ୍ରାରବ୍ଧର ଫଳ ।"

ଦେବଯାନୀ ଦୃଢ଼ତାରସହ କହିଲା—"ଯେଉଁ କାରଣରୁ ମୋର ଏ ଦୁଃଖ ହେଉ ପଛେ ମୁଁ ବୃଷପର୍ବାଙ୍କ ପୁରରେ ପାଦ ମଧ୍ୟ ରଖିବି ନାହିଁ ! ଏ ମୋର ଅଟଳ ପ୍ରତିଜ୍ଞା ।"

ଶୁକ୍ରାଚାର୍ଯ୍ୟ କହିଲେ—"ଦେଖ ଝିଅ ! ଜିଦ୍ କରିବା ଉଚିତ ନୁହେଁ । କିଏ କାହାକୁ ସୁଖ ଦୁଃଖ ଦେଇପାରେ ? ସମସ୍ତ ପ୍ରାଣୀ ନିଜ ନିଜ କର୍ମସୂତ୍ରରେ ଆବଦ୍ଧ ହୋଇ ସମସ୍ତ ପ୍ରକାରର ଚେଷ୍ଟା କରନ୍ତି । ସଂସାରରେ ସବୁଠାରୁ ବଡ଼ ଶତ୍ରୁ ହେଉଛି କ୍ରୋଧ । ବୁଦ୍ଧିମାନ ବ୍ୟକ୍ତିଙ୍କର କେବେହେଲେ କ୍ରୋଧର ବଶୀଭୂତ ହେବା ଉଚିତ ନୁହେଁ । "

ଦେବଯାନୀ କହିଲା—"ପିତା ! ମୋର ମୋ ପ୍ରତି ହୋଇଥିବା ଅପମାନ ପ୍ରତି ଯେତେ କ୍ରୋଧ ନାହିଁ । କିନ୍ତୁ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ଆପଣଙ୍କୁ ସ୍ତୁତିକର୍ତ୍ତା, ଭିକ୍ଷୁକ, ଯାଚକ ତଥା ଦାନନେବାବାଲା ବୋଲି କହିଛି । ଯଦି ଆପଣ ଅସୁରଙ୍କର ସ୍ତୁତିକରି ସେମାନଙ୍କର ଦାନ ନେଇ ଜୀବିକା ନିର୍ବାହ କରୁଛନ୍ତି ତେବେ ମୁଁ ଏଇ ବୃତ୍ତିକୁ ଚାହେଁ ନାହିଁ । ଏହା ଘୋର ଅପମାନ ।"

ଶୁକ୍ରାଚାର୍ଯ୍ୟ ହସିଦେଇ କହିଲେ—"ନାହିଁ, ଝିଅ ! ମୁଁ କାହାର ସ୍ତୁତି କରୁଛି ? ବରଂ ସବୁ ଅସୁରମାନେ ମୋର ସ୍ତୁତି କରୁଛନ୍ତି । ମୁଁ କାହା ସମ୍ମୁଖରେ ହାତ ଦେଖାଏନି । ଅସୁରମାନେ ହିଁ ସଦାସର୍ବଦା ମୋ ସେବାରେ ନିଯୁକ୍ତ ହୋଇ-ଥାଆନ୍ତି । ମୁଁ ସ୍ୱର୍ଗ ତଥା ପୃଥିବୀର ସ୍ୱାମୀ । ଇନ୍ଦ୍ର ଏବଂ ଯଯାତି ମଧ୍ୟ ମୋର ପ୍ରଭାବ ଜାଣନ୍ତି । ଶର୍ମିଷ୍ଠା କ୍ରୋଧରେ କିଛି କହିଦେଇଥିବ । ତୁ ସେ ସବୁ ଭୁଲିଯାଅ, ଶର୍ମିଷ୍ଠାକୁ କ୍ଷମା କରିଦେ ।"

ଦେବଯାନୀ କହିଲା—"ପିତା ! ଶର୍ମିଷ୍ଠାକୁ ମୁଁ କେବେହେଲେ କ୍ଷମା କରିପାରିବି ନାହିଁ । ତା' ପ୍ରତି ମୋର ଯେଉଁ କ୍ରୋଧ ଆସିଛି ତାହା କେବେ ବି ସମାପ୍ତ ହେବନାହିଁ ।"

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ ଅତ୍ୟନ୍ତ ସ୍ନେହଶୀଳ ହୋଇ ତାକୁ ବୁଝାଇବାକୁ ଚେଷ୍ଟାକଲେ । କହିଲେ—"ନା ଝିଅ ! ଏମିତି କହିବା ଠିକ୍ ନୁହେଁ । କ୍ରୋଧ ହିଁ ପାପର ମୂଳ । ଯେ କ୍ରୋଧକୁ ଜୟ କରିଛି ସେ ସବୁକିଛି ଜୟ କରିଛି । କିନ୍ତୁ ସମସ୍ତେ ଏହା କରିପାରନ୍ତି ନାହିଁ । ଏକ ସହସ୍ର ବର୍ଷର ତପସ୍ୟା ଏବଂ ଗୋଟିଏ ଥର ଜୟ କରାଯାଇ-ଥିବା କ୍ରୋଧ—ଏ ଦୁହିଁଙ୍କ ମଧ୍ୟରେ ହିଁ ଶେଷଟି ଶ୍ରେଷ୍ଠ । ଯେ ଅନ୍ୟ ଦ୍ୱାରା କରାହୋଇଥିବା ନିନ୍ଦା ସହିନିଏ ଅନ୍ୟକୁ ନିନ୍ଦା ନକରି, ଯେ ନିଜକୁ ଦୁଃଖ ଦେଇଥିବା ବ୍ୟକ୍ତିକୁ କ୍ଷମା କରେ, ପ୍ରେମ କରେ, ସେ ଅକ୍ଷୟଲୋକର ଅଧିକାରୀ ହୋଇଥାଏ । ପୁଅ ଝିଅମାନେ ତ ପ୍ରାୟ କଳିଗୋଳ କରିଥାଆନ୍ତି । ସେ ସବୁଥିରେ ବଡ଼ମାନଙ୍କର ଭାଗନେବା ଆଦୌ ଉଚିତନୁହଁ ।"

ଦେବଯାନୀ କହିଲା—"ପିତା ! ଆପଣ ତ ଏଇ ଅଧମ ଅସୁରମାନଙ୍କର ପକ୍ଷପାତ କରୁଛନ୍ତି । ଏମାନେ ସଦାସର୍ବଦା ଦୁଷ୍ଟତା କରୁଛନ୍ତି । ଦେଖନ୍ତୁ, କଚକୁ ବିନାକାରଣରେ ସେମାନେ ତିନି ତିନିଥର ମାରିଦେଲେ ! ଆପଣଙ୍କ ପେଟରେ ମଧ୍ୟ ତାକୁ ପହଞ୍ଚାଇ ଦେଲେ । ଏତିକି ବି ଚିନ୍ତା କଲେନି ଯେ ଏହାଦ୍ୱାରା ଗୁରୁଙ୍କର ଅନିଷ୍ଟ ହେବ । ଏମାନେ ସମସ୍ତଙ୍କଠାରୁ ଅଧିକ ସ୍ୱାର୍ଥପର ତଥା କ୍ରୂର । ସେମାନଙ୍କର ନିଜ ଶକ୍ତି ଉପରେ ଭୀଷଣ ଅହଂକାର । ସେଇ ଅହଂକାର ହେତୁ ହିଁ ଶର୍ମିଷ୍ଠା ମୋତେ ଏତେ ସବୁ ନ କହିବା କଥା କହିଲା ଏବଂ କୂଅକୁ ଠେଲିଦେଲା । ଏମିତି ଜୀବନ ଅପେକ୍ଷା ମୃତ୍ୟୁ ଭଲ । ମୁଁ ସେ ଅଭିମାନୀ ଅହଂକାରୀଙ୍କର ପୁରରେ ପାଦ ସୁଦ୍ଧା ରଖିବି ନାହିଁ । ସବୁକିଛି କ୍ଷମା କରିଦେଇପାରେ କିନ୍ତୁ ଶର୍ମିଷ୍ଠା ମୋତେ ଯେଉଁ ଅପମାନ ଦେଇଛି ତାକୁ ମୁଁ ସାରାଜୀବନଯାଏ ଭୁଲିବି ନାହିଁ କିମ୍ବା ତାକୁ କ୍ଷମା କରିପାରିବି ନାହିଁ । ସେଇ ଅସୁରମାନଙ୍କର ମୃତ୍ୟୁରେ ଆପଣ ଜୀବନ୍ୟାସ ଦେଉଛନ୍ତି କିନ୍ତୁ ସେମାନେ ଆମକୁ ହିଁ ମୃତ୍ୟୁ ଦେବାପାଇଁ ସର୍ବଦା ତତ୍ପର । ସାପକୁ ଯେତେ ଦୁଧ ପିଆଇଲେ ମଧ୍ୟ ତା'ର ବିଷ ବଢ଼ିବ ସିନା କମିବ ନାହିଁ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଶୁକ୍ରାଚାର୍ଯ୍ୟ ନିଜ କନ୍ୟାର ଅଧୀନରେ ଥିଲେ । ସେ ତାକୁ ନିଜ ପ୍ରାଣଠାରୁ ବଳି ଶ୍ରଦ୍ଧା କରୁଥିଲେ । ତେଣୁ ସେ କହିଲେ—"ହଁ ଏ ଦୁଷ୍ଟମାନଙ୍କର ସେବା କରିବା ବ୍ୟର୍ଥ । ଏଇ ପୌରହିତ୍ୟ କାର୍ଯ୍ୟ ହିଁ

Digitized by srujanika@gmail.com

ନିନ୍ଦନୀୟ ଅଟେ । ଆମେ ତ ହେଲୁ ବ୍ରାହ୍ମଣ । ଦାନା-ଦାନା ବୁଣି ସେଇ ସବୁକ ଅନ୍ନରେ ହିଁ ନିର୍ବାହ କରିବୁ । ହଉ, ମୁଁ ମଧ୍ୟ ଏ ଅସୁରପୁରୀକୁ ଏବେ ଛାଡ଼ି ଦେଉଛି ।”
ଏହା କହି ସେ ନିଜ କନ୍ୟାର କାନ୍ଧ ଉପରେ ହାତରଖି ଚାଲିଗଲେ ।”

## ଛପ୍‌ପଦୀ

ଭୃଗୁସୁତ କୀର୍ତ୍ତି ଶକ୍ତି ନ ମାନି ସୁତା ହଠିଲି ।
ଇଡ଼ପ୍ୟାର ମହୁଁ ସଲୀ ଲଢ଼ୈତୀ ଅତି ଗରବୀଲି ।।
ପୁତ୍ରୀ ହଠ କୁଁ ମାନ ତ୍ୟାଗି ବୃଷପର୍ବା ପୁର କୁଁ ।
ଚଳେ ସୁତା ସଁଗ ଶୁକ୍ର ତ୍ୟାଗି ନୃପ ଶିଷ୍ୟ ଅସୁର କୁଁ ।।
ସୁନି ସବ ସୁର ହରଷିତ ଭୟେ, ଅସୁରନ କେ ଛକେ୍କ ଛୁଟେ ।
ଯଦ ଗୁରୁ ତଜି ସୁରପୁର ଗୟେ, ତୋ ଅଧବରମହୁଁ ହମ ଲୁଟେ ।।



Digitized by srujanika@gmail.com

# ଶର୍ମିଷ୍ଠା ଦେବଯାନୀର ଦାସୀ ହେବା

ସ୍ୱାନାଂ ତତ୍ ସଙ୍କଟ ବୀକ୍ଷ୍ୟ ତଦର୍ଥସ୍ୟ ଚ ଗୌରବମ୍ ।
ଦେବଯାନୀ ପର୍ଯ୍ୟଚରତ୍ ସ୍ତ୍ରୀସହସ୍ରେଣ ଦାସବତ୍ ॥ ✻

( ଶ୍ରୀ ଭା-୯ସ୍କ-୧୮-ଅ ୨୯ ଶ୍ଳୋକ)

## ଛପ୍ପୟ

ପୁତ୍ରୀ ସଁଗ ଗୁରୁ ଜହାଁ, ତହାଁ ସବ ଦାନବ ଆୟେ ।
ଗୁରୁ ଚରନନ ମହଁ ପରେ ବିବିଧ ବିଧି ସ୍ତୁତି ବନାୟେ ॥
ଶାନ୍ତ ଭୟେ ଗୁରୁ କହେ-ସୁତା କୁଁ ନୃପତି ! ମନାଓ ।
ସୁନି ନୃପ ପୈରନ ପରେ ଦେବି ! ଅବ ନିଜ ବସାଓ ॥
ଦାସୀ ଶର୍ମିଷ୍ଠା ବନେ, ଗୁରୁ ପୁତ୍ରୀ ବୋଲୀ—କହୁଁ ।
ସବ ସେବା ସାଦର କରୈ, ସହସ୍ର ସଖିନ ସଁଗ ଜହଁ ରହୁଁ ॥

ସ୍ୱେହମମତା ଯେତେବେଳେ ନିଷ୍ଠାରେ ପହଞ୍ଚିଯାଏ ସେତେବେଳେ ଅନର୍ଥ ହିଁ ସୃଷ୍ଟି ହୋଇଥାଏ । ପ୍ରେମରେ ପକ୍ଷପାତ ହେବା ସ୍ୱାଭାବିକ । କିନ୍ତୁ ବିବେକୀ ପୁରୁଷ ଅଧିକ ଜିଦ୍ କରନ୍ତି ନାହିଁ । ସେମାନେ ଭାଗ୍ୟ ଉପରେ ଭରସା କରି ମାନ ଅପମାନ ଭୁଲି ଯାଆନ୍ତି । ଯାହାର ନିଜ ଶରୀର ପ୍ରତି ମମତା ଥାଏ, ଯେ ନିଜକୁ ହିଁ କେବଳ ସୁଖୀ ରଖିବାକୁ ଚାହେଁ, ସେ ଅନ୍ୟକୁ କିପରି ଶ୍ରଦ୍ଧା କରିବ ? ପ୍ରେମ କରିବ ? ପ୍ରେମରେ ତ ନିଜର ସବୁଠାରୁ ପ୍ରିୟ ବସ୍ତୁକୁ ମଧ୍ୟ ତ୍ୟାଗ କରିବାକୁ ପଡ଼ିଥାଏ ।

---

✻ ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜା ! ଶର୍ମିଷ୍ଠା ଯେତେବେଳେ ନିଜ ସମସ୍ତ ଆତ୍ମୀୟସ୍ୱଜନଙ୍କ ଉପରେ ସଙ୍କଟ ପଡ଼ିବାର ଦେଖିଲା, ସେତେବେଳେ ସେ ସେମାନଙ୍କର କାର୍ଯ୍ୟର ମହତ୍ତ୍ୱକୁ ଉପଲବ୍ଧି କରି ନିଜ ସହସ୍ର ସଖୀଙ୍କସହ ଦାସୀ ହୋଇ ଦେବଯାନୀର ସେବା କରିବାକୁ ଲାଗିଲା ।

Digitized by srujanika@gmail.com

ସୂତ ମୁନି କହୁଛନ୍ତି—ମୁନିମାନେ ! ଯେତେବେଳେ ବିପକ୍ଷରେ ଶୁକ୍ରପୁତ୍ରୀ ଦେବଯାନୀ ଅସୁରମାନଙ୍କର ଶୋଚନୀୟ ଯୁକ୍ତି ସବୁ କହି ବସିଲେ ଶୁକ୍ରାଚାର୍ଯ୍ୟଙ୍କର ମଧ୍ୟ ମନେହେଲା ଯେ—ପ୍ରକୃତରେ ଏ ଅସୁରମାନେ ଅତ୍ୟନ୍ତ ସ୍ୱାର୍ଥପର । ଏମାନଙ୍କର ଆମପ୍ରତି ଶ୍ରଦ୍ଧା ଆଦୌ ନାହିଁ । ଯେତିକ ଶ୍ରଦ୍ଧା ଦେଖାଉଛନ୍ତି ତାହା ମଧ୍ୟ କେବଳ ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ । ଏଇ ଦୁଷ୍ଟମାନଙ୍କୁ ତ୍ୟାଗ କରିବା ହିଁ ଉଚିତ ।” ଏହା ଭାବି ସେ ଦେବଯାନୀଙ୍କୁ କହିଲେ—“ଝିଅ ! ଯଦିଓ ମୁଁ ଏଠାକାର ଆଚାର୍ଯ୍ୟ, ସମସ୍ତେ ମୋତେ ସମ୍ମାନ କରୁଛନ୍ତି, ତଥାପି ଏଇ ପୌରହିତ୍ୟ-ବୃତ୍ତି ଅତ୍ୟନ୍ତ ନିନ୍ଦନୀୟ ଏବଂ ସର୍ବଥା ତ୍ୟାଗ କରିବା ଉଚିତ । ଆମ ବ୍ରାହ୍ମଣଙ୍କର ସର୍ବଶ୍ରେଷ୍ଠ ବୃତ୍ତି ତ ଏଇ ଯେ ପକ୍ଷୀ ସଦୃଶ୍ୟ କେଉଁଠି ବି ରହି ଦାନା ଦାନା ତୋଳି ପେଟ ଭରିନେବା କଥା । ସଂଗ୍ରହରେ, ଧନୀକମାନଙ୍କର ଆଶ୍ରୟରେ, ବ୍ରହ୍ମତେଜ ନଷ୍ଟ ହୋଇ ଯାଇଥାଏ । ପ୍ରାଣରକ୍ଷା କରିବା ନିମନ୍ତେ ଘିଅ-ଦୁଧ ଲହୁଣୀ ଯେପରି ଉପଯୋଗୀ ହୋଇଥାଏ, ବଣରେ ଶାଗ ପତ୍ର ମଧ୍ୟ ଠିକ୍ ଅନୁରୂପ ଉପଯୋଗୀ । ତେଣୁ ଏଇ ପାପୀ ପେଟ ପାଇଁ ପାପ କାହିଁକି କରିବା ? ଯଜମାନ ପୁରୋହିତଙ୍କୁ କେବଳ ପାପ ହିଁ ପାପ ଦେଇ ଥାଆନ୍ତି । ତେଣୁ ମୁଁ ମଧ୍ୟ ଆଉ ଏ ଅସୁରଙ୍କ ସହିତ ରହିବା ପାଇଁ ଚାହୁଁନି । ଚାଲ ଯିବା କେଉଁଠି ଏକାନ୍ତରେ ପ୍ରଭୁଙ୍କର ଆରାଧନା କରିବା ।”

ଏହାଶୁଣି ଦେବଯାନୀ ପରମ ଆନନ୍ଦିତ ହୋଇ ନିଜ ପିତାଙ୍କ ସହିତ ଆଗେଇବାକୁ ଲାଗିଲା । ମୁହୂର୍ତ୍ତିକ ଭିତରେ ଏ ସମ୍ବାଦ ଚାରିଆଡ଼େ ବ୍ୟାପିଗଲା ଯେ ଶୁକ୍ରାଚାର୍ଯ୍ୟ ଅସୁରମାନଙ୍କୁ ପରିତ୍ୟାଗ କରିଦେଲେ । ଏବେ ଆଉ କ'ଣ ଅଛି ! ସବୁଆଡ଼େ ହୁଲସ୍ଥୁଲ ହୋଇଗଲା । ଦେବତାମାନେ ଏହାଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ସେମାନେ ବୃଷପର୍ବାଙ୍କ ଉପରେ ଆକ୍ରମଣ କରିବା ନିମନ୍ତେ ମଧ୍ୟ ପ୍ରସ୍ତୁତି ଆରମ୍ଭ କରିଦେଲେ । ଅସୁରମାନଙ୍କର ହୃଦକ ଶୁଖିଗଲା । ବୃଷପର୍ବା ଏକଥା ଶୁଣିବାମାତ୍ରେ ବସିବା ସ୍ଥାନରୁ ଉଠି ଆସିଲେ । ସେ ଦେଖିଲେ ଦେବଯାନୀ ସହିତ ଦଣ୍ଡ-କମଣ୍ଡଳୁ ନେଇ ଶୁକ୍ରାଚାର୍ଯ୍ୟ ବଣ ଆଡ଼କୁ ଯାଉଛନ୍ତି । ବୃଷପର୍ବା ତତ୍କ୍ଷଣାତ୍ ଗୁରୁଙ୍କର ପାଦତଳେ ପଡ଼ିଗଲେ । ସବୁ ଅସୁର ଗୁରୁଙ୍କୁ ଘେରି ଛିଡ଼ା ହୋଇଗଲେ । ଦେବଯାନୀ ସେମାନଙ୍କଠାରୁ ଅଲଗା ହୋଇ ଗୋଟିଏ ଗଛର ଛାଇତଳେ ଛିଡ଼ା ହୋଇଗଲା ।

ଶୁକ୍ରାଚାର୍ଯ୍ୟ ଅସୁରମାନଙ୍କୁ ଦେଖି ହାତଯୋଡ଼ି କହିଲେ—“ତୁମେ ସବୁ କ'ଣ ଚାହୁଁଛ ?”

ବୃଷପର୍ବା କହିଲେ—“ଗୁରୁଦେବ ! ଆମେ ଆପଣଙ୍କର କୃପାପାର୍ଥୀ । ଆପଣ ଖାଲି ପାଦରେ କନ୍ୟାକୁ ନେଇ କୁଆଡ଼େ ବାହାରିଛନ୍ତି ?”

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ କହିଲେ—"ମୋର ଯେଉଁଠାକୁ ଇଚ୍ଛା ହେବ ସେଠାକୁ ଯିବ । ତୁମପରି ନୀଚମାନଙ୍କ ସହିତ ମୁଁ ରହିବିନାହିଁ । ତୁମେ ସବୁ କୃତଘ୍ନ, ସ୍ୱାର୍ଥପର, ଦୁଷ୍ଟ; ତୁମ ରାଜ୍ୟରେ ମୁଁ ଆଉ ରହିବି ନାହିଁ ।"

ବୃଷପର୍ବା ବ୍ୟାକୁଳ ହୋଇ କହିଲେ—"କାହିଁକି ପ୍ରଭୁ ! ଆମର ଅପରାଧ କ'ଣ ? ମୁଁ ତ ମୋ ଜ୍ଞାତସାରରେ ଆପଣଙ୍କର ବିରୁଦ୍ଧାଚରଣ ହେବାଭଳି କୌଣସି କାର୍ଯ୍ୟ କରିନାହିଁ ।"

କ୍ରୋଧଭରି ଶୁକ୍ରାଚାର୍ଯ୍ୟ କହିଲେ—"ମୋତେ ଅପରାଧ ବିଷୟରେ ପଚାରୁଛ ? ଧର୍ମଜ୍ଞ, ଗୁରୁସେବା-ପରାୟଣ, ସଦାଚାରୀ ମୋ ଶିଷ୍ୟ କଚକୁ, ଯେ କି ଅଙ୍ଗିରାଙ୍କ ପୌତ୍ର ତଥା ବୃହସ୍ପତିଙ୍କ ପୁତ୍ର ଥିଲା, ତୁମେମାନେ ତିନି ତିନି ଥର ତାକୁ ମାରିଦେଲ । ଏହା କ'ଣ ମୋ ସହିତ ବିଶ୍ୱାସଘାତକତା ନୁହେଁ କି ? ତା'ର ପାଉଁଶକୁ ସୁରା ସହିତ ମିଶାଇ ମୋତେ ପିଆଇ ଦେଲ । ଏହା କ'ଣ ମୋ ପ୍ରତି ଶ୍ରଦ୍ଧାର ନିଦର୍ଶନ ? ଆଉ ତୁମର ପୁତ୍ରୀ ମୋ ପୁତ୍ରୀକୁ ମାରିସାରିଥିଲା; ସୌଭାଗ୍ୟବଶତଃ ସେ ବଞ୍ଚିଗଲା । କ'ଣ ଏଇ ତୁମର ଗୁରୁଭକ୍ତି ? ଏପରି ନିର୍ଦ୍ଦୟୀ କ୍ରୂର, ହତ୍ୟାକାରୀ ପୁରୁଷଙ୍କ ସହିତ ମୁଁ ରହିପାରିବି ନାହିଁ ।"

ବୃଷପର୍ବା କହିଲେ—"ଗୁରୁଦେବ ! ଆପଣ ଧର୍ମାତ୍ମା, ସଦାଚାରୀ, ସତ୍ୟବାଦୀ ଏବଂ ସର୍ବଜ୍ଞ; ଆମ ସମସ୍ତଙ୍କର ସ୍ୱାମୀ ତଥା ଜୀବନଦାତା ଅଟନ୍ତି । ପିଲାମାନେ ତ ଅପରାଧ କରିଥାଆନ୍ତି । ଗୁରୁଜନମାନେ ସେମାନଙ୍କୁ କ୍ଷମା ଦେଇଥାଆନ୍ତି । ହେ ଗୁରୁଶ୍ରେଷ୍ଠ ! ଆପଣଙ୍କ ବିନା ଆମର ଅନ୍ୟଗତି ହିଁ ନାହିଁ ।"

ଶୁକ୍ରାଚାର୍ଯ୍ୟ କହିଲେ—"ମୋର ସେଥିରେ କ'ଣ ଅଛି ? ଯେତେବେଳେ ତୁମେ ଆମର ବିରୁଦ୍ଧାଚରଣ କରୁଛ, ସେତେବେଳେ ଆମେ ଆଉ ତୁମ ନିକଟରେ ରହି କ'ଣ କରିବୁ ? ତୁମେ ଯେତେବେଳେ ଆମକୁ ଭିକ୍ଷୁକ ଏବଂ ଆଶ୍ରିତ ବୋଲି ମନେକରୁଛ ଆମେ ଆଉ କିପରି ତୁମ ନିକଟରେ ସମ୍ମାନର ସହିତ ରହିପାରିବୁ ?"

ବୃଷପର୍ବା ନିଜ କାନରେ ହାତ ଦେଇ କହିଲେ—"ପ୍ରଭୁ ! ଆପଣ କି କଥା କହୁଛନ୍ତି ? ମୋର ରାଜ୍ୟ, ଧନ, କୋଷ, ସେନା, ପରିବାର ତଥା ଶରୀରର ସ୍ୱାମୀ ହେଲେ ଆପଣ । ମୋର ସର୍ବସ୍ୱ ଆପଣଙ୍କର ଶିଷ୍ୟ, ସେବକ, ଦାସ, ଆଶ୍ରିତ ତଥା ଅନୁଚର ଅଟେ ।" ବ୍ରାହ୍ମଣଙ୍କର କ୍ରୋଧ ତ କ୍ଷଣକେ ପାଇଁ ହୋଇଥାଏ । ବୃଷପର୍ବାଙ୍କର ଆକୁଳ ବିକଳ ଦେଖି କ୍ଷଣକୋପୀ ଶୁକ୍ର ସନ୍ତୁଷ୍ଟ ହୋଇଗଲେ ଏବଂ କହିଲେ—"ହେ ରାଜା ! ସତକଥା ତ ଏଇଆ ଯେ ଦେବଯାନୀ ମୋର ପ୍ରାଣଠୁ ବଳି

Digitized by srujanika@gmail.com

ପ୍ରିୟ । ତାକୁ ମୁଁ କୌଣସିମତେ ଦୁଃଖି ଦେଖି ପାରିବି ନାହିଁ । ଯଦି ତୁମେ ମୋତେ ପ୍ରକୃତରେ ତୁମ ନିକଟରେ ରଖିବାକୁ ଚାହଁ ତେବେ ଯେପରି ହେଉ ପଛେ ତାକୁ ସନ୍ତୁଷ୍ଟ କର । ମୁଁ ତ ସନ୍ତୁଷ୍ଟ ହୋଇ ଯାଉଛି ।"

ଏତେବେଳକରେ ବୃଷପର୍ବାଙ୍କର ଠିକେ ଭରସା ଆସିଲା । ସେ ଗୁରୁଙ୍କର ପାଦ ଛାଡ଼ି ଗୁରୁପୁତ୍ରୀ ଦେବଯାନୀର ପାଦ ଧରିଲେ ଏବଂ ଅତ୍ୟନ୍ତ କାତର ହୋଇ କହିଲେ—"ଭଉଣୀ ! ଆମର ଜୀବନ ବର୍ତ୍ତମାନ ତୁମ ଅଧୀନରେ । ତୁମେ ଚାହିଁଲେ ଆମ ସମସ୍ତଙ୍କୁ ଜୀବନଦାନ ଦେଇପାର ତଥା ଚାହିଁଲେ ଆମର ସର୍ବନାଶ ମଧ୍ୟ କରିପାର ।"

ଦେବଯାନୀ କହିଲା—"ହେ ରାଜା ! ଆମେ ତ ତୁମ ଘରର ଭିକାରୁଣୀ । ତୁମ ଭିକ୍ଷାରେ ହିଁ ବଞ୍ଚିଛୁ ।"

ବୃଷପର୍ବା କହିଲେ—"ଭଉଣୀ ! ତୁମେ ଏ କଥା ମୁହଁରେ ଧରନା । ତୁମେ ଆମ ସମସ୍ତଙ୍କର ସ୍ୱାମିନୀ, ଆମର ସର୍ବସ୍ୱ ତୁମର ।"

ଦେବଯାନୀ କହିଲା—"ତୁମେ ସତ୍ୟ କହୁଛ ତ !"

ବୃଷପର୍ବା କହିଲେ—"ସର୍ବଥା ସତ୍ୟ ! ଏଥିରେ ତ ଟିକେ ହେଲେ ବି ଛଳନା ନାହିଁ, ମିଥ୍ୟା ନାହିଁ ।"

ଦେବଯାନୀ କହିଲା—"ତା'ହେଲେ ମୁଁ ତୁମକୁ ଯାହା କହିବି ତୁମେ ତାହା ମାନିବ ?"

ଦୃଢ଼ତାର ସହିତ ବୃଷପର୍ବା କହିଲେ—"ନିଶ୍ଚିତ୍ତ ଏଥିରେ ଆଦୌ ସନ୍ଦେହ କର ନାହିଁ ।"

ଦେବଯାନୀ କହିଲା—"ଯଦି ଶର୍ମିଷ୍ଠା ଯାବଜ୍ଜୀବନ ମୋର ଦାସୀ ହୋଇ ରହିବାକୁ ରାଜି ହେବ ତେବେ ମୁଁ ମୋର ପିତାଙ୍କ ସହିତ ତୁମ ପୁରକୁ ଯାଇପାରେ ।"

ହସିଦେଇ ବୃଷପର୍ବା କହିଲେ—ଗୁରୁପୁତ୍ରୀ ! ଏଥିରେ ତ ତୁମେ କିଛି ନୂଆକଥା କହି ନାହଁ ? ଯେତେବେଳେ ମୁଁ ନିଜେ ତୁମର ଦାସ, ମୋର ପୁତ୍ରୀକୁ ଦାସପୁତ୍ରୀ କୁହାଯିବ ?"

ଦେବଯାନୀ ଦୃଢ଼ତାର ସହିତ କହିଲା—"ଦେଖନ୍ତୁ ରାଜା ! ଏ ତ ସବୁ ହେଲା ଶିଷ୍ଟାଚାରର କଥା । ପ୍ରକୃତ କଥା ହେଉଛି ଯେ ନିଜର ସହସ୍ର ସଖୀଙ୍କ ସହିତ

Digitized by srujanika@gmail.com

ଶର୍ମିଷ୍ଠା ମୋର ଦାସୀ ହୋଇ ରହିବ । ମୋର ପିତା ଯେତେବେଳେ ମୋତେ ବିବାହ କରିବେ ସେ ମଧ୍ୟ ମୋ ସହିତ ମୋ ଶ୍ୱଶୁରଙ୍କ ଘରକୁ ଯାବତ୍-ଜୀବନ ପାଇଁ ଯିବ ।"

ଏ କଥା ଶୁଣି ବୃଷପର୍ବାଙ୍କର ଚିନ୍ତା ପଶିଲା । ବିଷୟ ବହୁତ ଗମ୍ଭୀର ହୋଇଯାଇଥିଲେ । ପିତାଙ୍କର ପ୍ରାଣରୁ ବଳି ପ୍ରିୟ ଶର୍ମିଷ୍ଠା ଅତ୍ୟନ୍ତ ସ୍ନେହ ଆଦରରେ ବଢ଼ିଥିଲା । ଯେ ସ୍ୱୟଂ ସୁକୁମାରୀ କୁମାରୀ ସେ କପରି ସାରାଜୀବନ ଦାସୀ ହୋଇ ରହିବ ?—ରାଜା ଏହି ଚିନ୍ତାରେ ଚିନ୍ତିତ ହୋଇଗଲେ । ଏପଟେ ଦେବତାମାନେ ତାଙ୍କ ଉପରକୁ ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ବର୍ତ୍ତମାନ ସେମାନେ ମୃତ୍ୟୁ-ସଞ୍ଜୀବନୀ-ବିଦ୍ୟା ମଧ୍ୟ ଶିଖି ସାରିଥିଲେ । ଶୁକ୍ରାଚାର୍ଯ୍ୟ ଚାଲିଗଲେ ଆମର ସର୍ବନାଶ ହୋଇଯିବ । ଏସବୁ ଚିନ୍ତାକରି ବୃଷପର୍ବା ଶର୍ମିଷ୍ଠାର ଧାଈକୁ ଡକାଇ କହିଲେ— "ଧାଈ ! ତୁମେ ଏବେ ଯାଇ ସାଙ୍ଗେ ସାଙ୍ଗେ ଶର୍ମିଷ୍ଠାକୁ ଏଠାକୁ ନେଇ ଆସ । ସମ୍ପୂର୍ଣ୍ଣ କୁଳକୁ ସଙ୍କଟରୁ ରକ୍ଷା କରିବା ବର୍ତ୍ତମାନ ତା' ଉପରେ ନିର୍ଭର କରେ ।"

ଧାଈ ରାଜାଙ୍କ ଆଜ୍ଞା ପାଇବାମାତ୍ରେ ତୁରନ୍ତ ଅନ୍ତପୁରକୁ ଯାଇ ଶର୍ମିଷ୍ଠାକୁ କହିଲା—"ଶର୍ମିଷ୍ଠା ! ଆଜି ତୁମ ଉପରେ ବିରାଟ କାର୍ଯ୍ୟଭାର ନ୍ୟସ୍ତ କରାଯାଇଛି । ଶୁକ୍ରାଚାର୍ଯ୍ୟ ସମସ୍ତ ଅସୁରଙ୍କୁ ଛାଡ଼ି ଚାଲିଯାଉଛନ୍ତି । ଏପଟେ ଦେବତାମାନେ ଅସୁରମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ । ଦେବଯାନୀ ଗୋଟିଏ ଜିଦ ଧରି ବସିଛି ଯେ ଶର୍ମିଷ୍ଠା ସହସ୍ର ଦାସୀଙ୍କ ସହିତ ଯେତେବେଳଯାଏ ତା'ର ଦାସୀ ନ ହୋଇଛି ସେତେବେଳଯାଏ ସେ ନଗରରେ ପାଦ ରଖିବନି । ଶୁକ୍ରାଚାର୍ଯ୍ୟ ତାଙ୍କ କନ୍ୟାକୁ କେତେ ସ୍ନେହ କରନ୍ତି ତାହା ତ ନିଶ୍ଚୟ ଜାଣିଥିବ । ତା'କୁ ଛାଡ଼ି ଶୁକ୍ରାଚାର୍ଯ୍ୟ କେବେ ଏକା ଏକା ଫେରିବେ ନାହିଁ । ତେଣୁ ବର୍ତ୍ତମାନ ତୁମେ ଯାହା ଉଚିତ ମନେକରୁଛ କର ।"

ଶର୍ମିଷ୍ଠା ଚିନ୍ତାଗ୍ରସ୍ତ ହୋଇପଡ଼ିଲା । ସେ ରାଜକନ୍ୟା, ବୁଦ୍ଧିମତୀ । ଆଗ ପଛ ତଳ ଉପର ସବୁଆଡ଼କୁ ସେ ଚିନ୍ତା କରୁଥିଲା । ସେ ଚିନ୍ତାକଲା—"ଯଦି ମୁଁ ଜିଦ କରି ବସିବି ତେବେ ଶୁକ୍ରାଚାର୍ଯ୍ୟ ନିଶ୍ଚୟ ଅସୁରମାନଙ୍କୁ ଛାଡ଼ି ପଳାଇବେ । ଏହା-ଫଳରେ ମୋର ସମ୍ପୂର୍ଣ୍ଣ ଜାତିପ୍ରତି ବିପତ୍ତି ଆସିବ । ଯଦି କେବଳ ମୁଁ ଦାସୀ ହୋଇ ଯାଉଛି ତେବେ ମୋର ସମସ୍ତ କୁଳର ରକ୍ଷା ହୋଇଯିବ । ତେଣୁ ସମଗ୍ର କୁଳରକ୍ଷାପାଇଁ ମାତ୍ର ଗୋଟିଏ ବଳିଦାନ ହିଁ ସର୍ବୋତ୍କୃଷ୍ଟ ବଳିଦାନ ହେବ ।" ଏହାଭାବି ସେ ମନେ ମନେ ଦାସୀ ହୋଇଯିବା ପାଇଁ ସ୍ଥିର କରିନେଲା । ସାଙ୍ଗେ ସାଙ୍ଗେ ସେ ସହସ୍ର ସଖୀଙ୍କ ସହ ଶିବିକାରେ ବସି ଯାଇ ନିଜ ପିତାଙ୍କ ନିକଟରେ ପହଞ୍ଚିଲା । ସେଠାରେ ସେ ଦେଖିଲା ସମସ୍ତ ଅସୁରଗଣ ହାତଯୋଡ଼ି ଦୁଃଖିତ ମନରେ ଛିଡ଼ାହୋଇଛନ୍ତି । ତା'ର ପିତା ବୃଷପର୍ବା ଦେବଯାନୀର ପାଦଧରି କାନ୍ଦୁଛନ୍ତି । ଶୁକ୍ରାଚାର୍ଯ୍ୟ ଏକପାର୍ଶ୍ୱରେ ବସିଛନ୍ତି । ଭ୍ରୂକୁଟୀ ଉଠାଇ ଝୁକା ସିଂହାସନ ପରି ଦେବଯାନୀ

Digitized by srujanika@gmail.com

ମାନବରେ ବସିଛୁ । ଶର୍ମିଷ୍ଠା ତତ୍‌କ୍ଷଣାତ୍ ଯାଇ ଦେବଯାନୀର ପାଦଧରି ଅତ୍ୟନ୍ତ ବିନୀତ ହୋଇ କହିଲା—"ଭଉଣୀ ! ମୋ ଅପରାଧ କ୍ଷମା କର । ମୋର ପିତାଙ୍କ ପ୍ରତି ପ୍ରସନ୍ନ ହୁଅ । ଅସୁରମାନଙ୍କୁ ଅଭୟ ପ୍ରଦାନ କର । ମୁଁ ଆଜୀବନ ତୁମର ଦାସୀ ହୋଇ ରହିବି । ତୁମର ପିତା ତୁମକୁ ଯେଉଁଠାରେ ବିବାହ ଦେବେ ଦୁଇ ସହସ୍ର ଦାସୀଙ୍କ ସହିତ ମୁଁ ମଧ୍ୟ ତୁମର ସେବାରେ ତୁମ ପଛେ ପଛେ ଚାଲିବି ।"

ହସିଦେଇ ଦେବଯାନୀ କହିଲା—"ରାଜପୁତ୍ରୀ ! ତୁମେ ତ ସମ୍ରାଟ କନ୍ୟା । ମୁଁ ତ ମାତ୍ର ସ୍ତବ କରୁଥିବା ଏକ ଭିକ୍ଷୁକର ପୁତ୍ରୀ । ତୁମେ କିପରି ମୋର ସେବା କରିପାରିବ ?"

ଲଜ୍ଜିତ ହୋଇ ଶର୍ମିଷ୍ଠା କହିଲା—"ଭଉଣୀ ! ସେ ସବୁ କଥା ମୁଁ କ୍ରୋଧ-ବଶତଃ କହିଦେଇଥିଲି । ସେଥିପାଇଁ ମୁଁ ଦୁଃଖିତ । ମୁଁ ମୋର ପରାଜୟ ତଥା ତୁମର ବିଜୟ ସ୍ୱୀକାର କରୁଛି । ମୁଁ ନିଷ୍କପଟ ଭାବରେ ଧର୍ମପୂର୍ବକ ସାରାଜୀବନ ତୁମର ଦାସୀ ହୋଇ ରହିବି ।" ଏହା ଶୁଣିବାମାତ୍ରେ ହିଁ ଦେବଯାନୀ ଖୁସି ହୋଇଗଲା । ସେ ତତ୍‌କ୍ଷଣାତ୍ ଯାଇ ନିଜ ପିତାଙ୍କର ପାଦ ଧରିପକାଇ କହିଲା—"ପିତୃଦେବ ! ଯଥାର୍ଥରେ ଆପଣ ଅସୁରଙ୍କର ସମସ୍ତ ସମ୍ପତ୍ତିର ସ୍ୱାମୀ । ହେ ଦ୍ୱିଜବର ! ଆପଣଙ୍କର ଶକ୍ତି ଅପର୍ଯ୍ୟାପ୍ତ । ଆପଣଙ୍କର ବିଦ୍ୟା ଏବଂ ବୁଦ୍ଧି ବିଜ୍ଞାନର ବଳ ଅଚିନ୍ତ୍ୟ । ଆପଣ ମୋର ପଣରକ୍ଷା କଲେ । ବର୍ତ୍ତମାନ ମୁଁ ବୃଷପର୍ବାଙ୍କ ପୁରକୁ ଯାଇପାରେ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଏହା ଶୁଣି ସମସ୍ତେ ଆନନ୍ଦିତ ହୋଇଗଲେ । ମହାଯଶସ୍ୱୀ ଦ୍ୱିଜବର ଶୁକ୍ରାଚାର୍ଯ୍ୟ କନ୍ୟାସହ ନିଜ ପୁର ବାଟରେ ଚାଲିଲେ । ଶର୍ମିଷ୍ଠା ସହସ୍ର ସଖୀଙ୍କ ସହ ଦାସୀପରି ଦେବଯାନୀର ଅନୁଗମନ କରିବାକୁ ଲାଗିଲା । ସମସ୍ତ ଅସୁରଗଣ ମଧ୍ୟ ଯୋଡ଼ହସ୍ତ ହୋଇ ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ । ଏହିପରି ଦେବଯାନୀ ପୁନଶ୍ଚ ନିଜ ଘରକୁ ଆସିଲା । ବର୍ତ୍ତମାନ ଶର୍ମିଷ୍ଠା ଦେବଯାନୀ ପାଖରେ ରହି ଦାସୀ ସଦୃଶ ସମସ୍ତ କାର୍ଯ୍ୟ କରିବାକୁ ଲାଗିଲା ।"

**ଛପ୍‌ପୟ**

**ସୁନି ବୃଷପର୍ବା ତୁରତ ବୁଲାଇ ସୁତା କୁଆରୀ ।**
**ବନ୍ଧୁ ବିପତ୍ତି ସୁନି ଅସୁରକୁମାରୀ ବାତ ବିଚାରୀ ॥**
**ଯଉ ଦାସୀ ହୌ ବନୁଁ ନିରାପଦ ହୋବେଁ ପରିଜନ ।**
**ପର ସ୍ୱାର୍ଥ ମହଁ ଲଗେ ବହୀ ବଡ଼ ଭାଗୀ ହୈତନ ॥**
**ଗୁରୁ-ପୁତ୍ରୀ ପଦ ପକରି କେ, ବୋଲି ଦାସୀ ବନୁଁଗୀ ।**
**ଜହାଁ ବିବାହେ ପିତା ତବ, ତହାଁ ସଙ୍ଗ ହୁ ଚଲୁଁଗୀ ॥**

Digitized by srujanika@gmail.com

# ଦେବଯାନୀର ଯଯାତିଙ୍କ ସହ ବିବାହ

ନାହୁଷାୟ ସୁତାଂ ଦତ୍ତ୍ୱା ସହ ଶର୍ମିଷ୍ଠୟୋଶନା ।
ତମାହ ରାଜଞ୍ଛର୍ମିଷ୍ଠାମାଧାସ୍ତଳ୍ପେ ନ କହିଂଚିତ୍ ॥ *

(ଶ୍ରୀ ଭା ୯ ସ୍କ ୧୮ ଅଧ୍ୟାୟ ୩୦ ଶ୍ଳୋକ)

**ଛପ୍‌ପୟ**

ଶର୍ମିଷ୍ଠା ନୃପ-ସୁତା ଦେବଯାନୀ କୀ ଦାସୀ ।
ବନୀ, ଅସୁର ଭୟ-ରହିତ ଭୟେଂ ପର ଶଉ ଉଦାସୀ ॥
ପ୍ରତିହିଂସା ମହଁ ପଗୀ ଦେବଯାନୀ ଇତରାବୈ ।
ଶର୍ମିଷ୍ଠା ଚେଂ ସଦା ଚରନ-ସେବା କରବାବୈ ॥
ବାହୀ ବନ ମହଁ ଏକ ଦିନ, ପୁନି ଯଯାତି ଆୟେ ନୃପତି ।
ଗୁରୁପୁତ୍ରୀ ପ୍ରସ୍ତାବ ପୁନି କରଯୋ, ଦେବ ! ଅବ ହୋହୁପତି ॥

ସଂସ୍କାର ଦୁଇପ୍ରକାରର ହୋଇଥାଏ । ଗୋଟିଏ ସାଧାରଣ ଅନ୍ୟଟି ପ୍ରବଳ । ଆମର କୌଣସି ଉତ୍ସବ ଅବସରରେ କାହା ସହିତ ଦେଖାସାକ୍ଷାତ ହେଲା । ତା'ପରେ ପରସ୍ପର ପ୍ରତି ଶ୍ରଦ୍ଧା ଆସିଲା, କିଛିଦିନ ସାଥିହୋଇ ରହିଲେ । ତା'ପରେ ସେ ଆମକୁ ଭୁଲିଗଲେ ଆମେ ମଧ୍ୟ ତାଙ୍କୁ ଭୁଲିଗଲୁ । ଏ ହେଲା ସାଧାରଣ ସଂସ୍କାର । ପ୍ରବଳ ସଂସ୍କାର ଏଇ ଯେ ଯାହା ସହିତ ଥରେମାତ୍ର ଦେଖାହୋଇ ଯେଉଁ ଶ୍ରଦ୍ଧା ସୃଷ୍ଟି ହୋଇଥାଏ ତାହା କେବେହେଲେ ଭୁଲିହୁଏ ନାହିଁ । ଆମ ଜୀବନରେ ତାହା ଯୋଡ଼ି ହୋଇଯାଇଥାଏ ।

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ତାହାପରେ ଶୁକ୍ରାଚାର୍ଯ୍ୟ ଶର୍ମିଷ୍ଠା ସହ ନିଜ କନ୍ୟାକୁ ଯଯାତିଙ୍କୁ ଦେଇ କହିଲେ—"ହେ ରାଜା ! ଏଇ ଶର୍ମିଷ୍ଠାକୁ ତୁମେ ତୁମର କେବେହେଲେ କଦାଚିତ କରିବ ନାହିଁ ।"

Digitized by srujanika@gmail.com

ସୂତ ମୁନି କହୁଛନ୍ତି—"ମୁନିମାନେ ! ଦେବଯାନୀକୁ କୂଅରୁ ବାହାର କରି ଯଯାତି ନିଜ ରାଜ୍ୟକୁ ଚାଲିଗଲେ ସିନା, କିନ୍ତୁ ସେ ଦେବଯାନୀର ମନୋହର ରୂପ, ତା'ର ସୁଖଦସ୍ପର୍ଶକୁ ଭୁଲିପାରିଲେ ନାହିଁ । ମୃଗୟା କଲାବେଳେ କେବେ କେବେ ଅବସର ସମୟରେ ମହାରାଜ ଯଯାତି ସେଇ ସରୋବର ନିକଟକୁ ଯାଆନ୍ତି କିନ୍ତୁ କେବେ ଆଉ ସେ ଦେବଯାନୀର ଦେଖାପାଆନ୍ତି ନାହିଁ । ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ପ୍ରସ୍ତାବ ଆଗତ କରିବାର ସାହସ ତାଙ୍କର ହେଉ ନ ଥିଲା । ବ୍ରାହ୍ମଣମାନେ ବିଷ ଏବଂ ଅଗ୍ନିଠାରୁ ମଧ୍ୟ ଭୟଙ୍କର । ବିଷ ଯେ ଖାଇଥାଏ ସେ କେବଳ ମରେ । ଅଗ୍ନି ଜଳଦ୍ୱାରା ଶାନ୍ତ ହୋଇଥାଏ । କିନ୍ତୁ ଅସନ୍ତୁଷ୍ଟ ହୋଇଥିବା ବ୍ରାହ୍ମଣ ସମଗ୍ର ରାଷ୍ଟ୍ରକୁ ନଷ୍ଟ କରି ଦେଇପାରେ । ରଜା ଜାଣିଥିଲେ ଯେ ଏହି ଶୁକ୍ରାଚାର୍ଯ୍ୟଙ୍କ କନ୍ୟାସହ ରାଜା ଦଣ୍ଡକ ବଳାତ୍କାର କରିଥିଲେ । ତା'ର ପରିଣାମ ସ୍ୱରୂପ ତାଙ୍କର ସହସ୍ରକୋଶ ଲମ୍ବା ରାଜ୍ୟ ନଷ୍ଟ ହୋଇ ଦଣ୍ଡକାରଣ୍ୟ ହୋଇଯାଇଥିଲା । ଭିତ୍ତି ବାଲିବର୍ଷା ହେବା ଫଳରେ ସମସ୍ତ ଜୀବଜନ୍ତୁ, ବୃକ୍ଷଲତା ଇତ୍ୟାଦି ଜଳି ପାଉଁଶ ହୋଇଗଲେ । ତେଣୁ ଅଭିଶାପ ଭୟରେ ଯଯାତି ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଯିବାପାଇଁ ସାହସ କରୁ ନ ଥିଲେ ।

ଏ ପଟେ ଦେବଯାନୀ ମଧ୍ୟ ଦୃଢ଼ ନିଷ୍ପତ୍ତି କରି ନେଇଥିଲା ଯେ ମୁଁ ବିବାହ କରିବ ତ 'ରାଜର୍ଷି ଯଯାତିଙ୍କୁ ହିଁ ବିବାହ କରିବ । ସେ ଏଇକଥା ପିତାଙ୍କୁ କହିବାପାଇଁ ବାରମ୍ବାର ଭାବୁଥିଲା । କିନ୍ତୁ ତା'ର ସାହସ ହେଉ ନ ଥିଲା । ଦେବଯାନୀ ଏବେ ବିବାହ-ବନ୍ଧନରେ ବାନ୍ଧିହେବା ନିମିତ୍ତ ଅତ୍ୟନ୍ତ ଆଗ୍ରହୀ ହେଉଥିଲା ।

ଦିନେ ତା'ର ମନ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲା । ରହି ରହି ରାଜର୍ଷି ଯଯାତି ତା'ର ସ୍ମୃତିପଟଳରେ ଦେଖା ଦେଉଥିଲେ । ସେ ନିଜ ସଖୀମାନଙ୍କୁ ଆଦେଶ ଦେଲା—"ଆଜି ମୁଁ ଉପବନକୁ ଭ୍ରମଣ ନିମିତ୍ତ ଯିବି ।" ସଙ୍ଗେ ସଙ୍ଗେ ପ୍ରସ୍ତୁତି ଆରମ୍ଭ ହୋଇଗଲା । ପାଲିଙ୍କିରେ ଚଢ଼ି ଦେବକୁମାରୀ ସଦୃଶ ଦେବଯାନୀ ଚାଲିଲା । ତା'ର ସେବାରେ ସହସ୍ର ସଖୀଙ୍କ ସହ ଦୈତ୍ୟପୁତ୍ରୀ ଶର୍ମିଷ୍ଠା ମଧ୍ୟ ଯାଇଥିଲା । ବଣରେ ପହଞ୍ଚିବାପରେ ଖାଇପିଇ ଦେବଯାନୀ ଏକ ସୁନ୍ଦର-ସ୍ୱଚ୍ଛ ଶଯ୍ୟା ଉପରେ ସୁଖପୂର୍ବକ ଶୋଇ ରହିଲା । ସହସ୍ର ସଖୀ ତାକୁ ଘେରି ବସିଗଲେ । କିଏ ପାନ ଖୋଇଦେଲା, କିଏ ପଙ୍ଖା କଲା, ଏହିପରି ସମସ୍ତେ ତା'ର ମନୋରଞ୍ଜନ କରିବାକୁ ଲାଗିଲେ । ଶର୍ମିଷ୍ଠା ଧୀରେ ଧୀରେ ତା'ର ପାଦ ସାଉଁଳାଇବାକୁ ଲାଗିଲା । ଏଇ ସମୟରେ ସଂଯୋଗବଶତଃ ରାଜର୍ଷି ଯଯାତି ମଧ୍ୟ ସେଠାରେ ଆସି ପହଞ୍ଚିଲେ । ଯଯାତିଙ୍କୁ ଦେଖି ଦେବଯାନୀର ପ୍ରତିଲୋମ ପୁଲକିତ ହୋଇ ଉଠିଲା । ସେ ନିଜ ସଖୀମାନଙ୍କ ସହିତ ସସମ୍ମାନେ ଉଠି ଠିଆହେଲା । ରାଜା ଶିଷ୍ଟାଚାର ପ୍ରଦର୍ଶନ କରି

Digitized by srujanika@gmail.com

କହିଲେ—"କ୍ଷମା କରିବେ ! ମୁଁ ଆପଣଙ୍କ ମଝିରେ ପଶି ଅତ୍ୟନ୍ତ ଅନୁଚିତ କାର୍ଯ୍ୟ କରିଛି । ଆପଣଙ୍କର ଆମୋଦ-ପ୍ରମୋଦରେ ତଥା ଆନନ୍ଦ-ବିଶ୍ରାମରେ ବିଘ୍ନ ସୃଷ୍ଟି କରିଛି ।"

ଦେବଯାନୀ କହିଲା—"ନା ନା ପୁରୁଷ ସିଂହ ! ଆପଣଙ୍କ ଆସିବାଦ୍ୱାରା ଆମ ସମସ୍ତଙ୍କୁ ଅପାର ଆନନ୍ଦ ମିଳିଛି । ଆସନ୍ତୁ, ଆପଣ ଆସନ ଗ୍ରହଣ କରନ୍ତୁ । କିଛି ସମୟ ବିଶ୍ରାମ କରନ୍ତୁ ।"

ରାଜା କିଛି ନ ଜାଣିଥିବାର ଅଭିନୟ କରି କହିଲେ—"ଆପଣଙ୍କର ମଧୁର ବଚନରେ ହିଁ ମୋର ସମସ୍ତ ସତ୍କାର ହୋଇଗଲାଣି । ଆପଣ କିଏ ଏବଂ ଏଇ ବଣରେ କେଉଁ କାରଣରୁ ବିଚରଣ କରୁଛନ୍ତି !"

ଦେବଯାନୀ କହିଲା—"ହେ ରାଜା ! ମୋତେ କ'ଣ ଆପଣ ଭୁଲି ଗଲେ ? ମୁଁ ଅସୁର-ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଅଲିଅଳି କନ୍ୟା ଅଟେ ।"

ଅତ୍ୟନ୍ତ ସୁନ୍ଦରୀ ରାଜକୁମାରୀ ଶର୍ମିଷ୍ଠାଙ୍କୁ ଦେଖି ଶଙ୍କିତ ଚିତ୍ତରେ ରାଜା ପଚାରିଲେ—"ଏଇ ଦେବ-କନ୍ୟା ସଦୃଶ ସୁନ୍ଦରୀ କିଏ ?"

ହସି ହସି ଦେବଯାନୀ କହିଲା—"ହେ ରାଜା ! ଆପଣ କୌଣସି ପ୍ରକାର ସଙ୍କୋଚ ଏହା ପାଖରେ କରନ୍ତୁ ନାହିଁ । ଏ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା । ନିଜ ପୂଜ୍ୟ ପିତାଙ୍କ ପ୍ରଭାବରୁ ଏ ସାରା ଜୀବନପାଇଁ ମୋର ଦାସୀ ହୋଇଯାଇଛି । ମୁଁ ଯେଉଁଠାକୁ ବିବାହ କରି ଯିବି, ସେଠାକୁ ଏ ମଧ୍ୟ ମୋ ସହିତ ମୋର ସେବା କରିବା ପାଇଁ ଯିବ ।"

ଏହାଶୁଣି ରାଜା ସନ୍ତୁଷ୍ଟ ହେଲେ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଏ ରାଜକୁମାରୀ କିପରି ଦାସୀ ହେଲା ?"

ଦେବଯାନୀ କହିଲା—"ହେ ରାଜା ! ଆପଣ ମୋତେ ସେଦିନ କୂଅରୁ ବାହାର କରିଥିଲେ, ମୋର ପାଣିଗ୍ରହଣ କରିଥିଲେ । ଏଇ ମୋତେ ସେଇ ଅନ୍ଧ କୂପକୁ ସେହିଦିନ ଠେଲି ଦେଇଥିଲା । ସେଇ କୁକର୍ମର ଦଣ୍ଡ ପାଇଁ ସେ ମୋର ଦାସୀ ହୋଇଛି । ବର୍ତ୍ତମାନ ଆପଣ ଆପଣଙ୍କର ସେଇ ବଚନକୁ ସତ୍ୟରେ ପରିଣତ କରନ୍ତୁ, ଆପଣ ବିଧିପୂର୍ବକ ମୋର ପାଣିଗ୍ରହଣ କରନ୍ତୁ ।"

ରାଜା କହିଲେ—"ସୁନ୍ଦରୀ ! ତୁମର ପାଣିଗ୍ରହଣ କରିବାପାଇଁ ମୋର କୌଣସି ପ୍ରକାର ଆପତ୍ତି ନାହିଁ । କିନ୍ତୁ ମୁଁ ତୁମର ତେଜସ୍ୱୀ-ତପସ୍ୱୀ ସର୍ବସମର୍ଥ

Digitized by srujanika@gmail.com

ପିତାଙ୍କୁ ଭୟ କରୁଛୁ । ଯେ ତାଙ୍କର ଯୋଗ ପ୍ରଭାବ ଫଳରେ ମୃତକୁ ଜୀବିତ କରିପାରନ୍ତି ତଥା ରାଜାଙ୍କୁ ଭିକାରୀ ମଧ୍ୟ କରିପାରନ୍ତି । ତାଙ୍କ ନିକଟରେ ଏଇ ଅନୁଚିତ ସମ୍ବନ୍ଧ ନିମନ୍ତେ କିପରି ମୁଁ ପ୍ରସ୍ତାବ କରିପାରିବି ? କଥାରେ ଅଛି—

"ରାଜାଯୋଗୀଅଗ୍ନି ଏଇ ତିନିଙ୍କର ସର୍ବଦା ଓଲଟା ରୀତି ।
ସାବଧାନ ହେବି, ହେ ପରଶୁରାମ ଅଳପ ରଖିବି ପ୍ରୀତି ।।"

ଏହାଶୁଣି ଦେବଯାନୀ ହସି ଦେଇ କହିଲା—"ହେ ରାଜା ! ଆପଣ ଯେପରି ମୋ ପିତାଙ୍କୁ ଭାବୁଛନ୍ତି, ସେ ସେପରି ନୁହନ୍ତି । ପୃଥିବୀ ଉପରେ ଆପଣ ହିଁ ସର୍ବଶ୍ରେଷ୍ଠ ରାଜର୍ଷି । ସେ ଏହି ସମ୍ବନ୍ଧକୁ ନିଶ୍ଚୟ ସ୍ୱୀକାର କରିବେ । ହେଉ, ଆପଣଙ୍କୁ ଯାଚନା ମଧ୍ୟ କରିବାପାଇଁ ପଡ଼ିବ ନାହିଁ । ଆପଣ ମାଗିବା ଆଗରୁ ହିଁ ମୋର ପିତା ସ୍ୱୟଂ ଆପଣଙ୍କୁ ମୋତେ ଦେଇଦେବେ । ତା'ହେଲେ ଆପଣ ମୋତେ ସ୍ୱୀକାର କରିବେ ତ ?"

ରାଜା କହିଲେ—"ହଁ ତାଙ୍କ ଆଦେଶର ଅବମାନନା କିଏ ବା କରିପାରିବ ?" ଏହା ଶୁଣି ଦେବଯାନୀ ନିଜ ଦାସୀଦ୍ୱାରା ଶୁକ୍ରାଚାର୍ଯ୍ୟଙ୍କୁ ଡକାଇ ଆଣିଲା । କନ୍ୟାର ଡାକରା ପାଇ ଶୁକ୍ରାଚାର୍ଯ୍ୟ ତତ୍‌କ୍ଷଣାତ୍ ସେଠାକୁ ଆସିଲେ । ତାଙ୍କୁ ଦେଖିବା ମାତ୍ରେ ରାଜା ଯଯାତି ତାଙ୍କର ଚରଣବନ୍ଦନା କଲେ, ତଥା ଯୋଡ଼ହସ୍ତ ହୋଇ ତାଙ୍କ ସମ୍ମୁଖରେ ଛିଡ଼ା ହୋଇଗଲେ । ଦେବଯାନୀ କହିଲା—"ପିତା ! ଏ ହେଉଛନ୍ତି ନହୁଷ-ନନ୍ଦନ ପରମ ଧର୍ମାତ୍ମା ରାଜର୍ଷି ଯଯାତି ।"

ଶୁକ୍ରାଚାର୍ଯ୍ୟ କହିଲେ—"ଝିଅ ! ମୁଁ ତାଙ୍କୁ ବାଲ୍ୟକାଳରୁ ଜାଣିଛି । ପୃଥିବୀରେ ତାଙ୍କ ସମକକ୍ଷ ଧର୍ମାତ୍ମା, ଭଗବଦ୍ ଭକ୍ତ ଆଉ କେହି ନାହାନ୍ତି । ସ୍ୱର୍ଗରେ ଯେପରି ଇନ୍ଦ୍ର ସେହିପରି ପୃଥିବୀରେ ହେଉଛନ୍ତି ଏହି ଧର୍ମାତ୍ମା ଯଯାତି ।"

ଦେବଯାନୀ ଅତ୍ୟନ୍ତ ସ୍ନେହଶୀଳ ହୋଇ କହିଲା—"ପିତା ! ସେଦିନ ଏଇ ରାଜର୍ଷି ହିଁ ମୋର ହାତଧରି ମୋତେ କୂଅରୁ ବାହାରକୁ ବାହାର କରିଥିଲେ ଏବଂ ମୋତେ ଜୀବନଦାନ ଦେଇଥିଲେ । ବର୍ତ୍ତମାନ ଆପଣ ଯଦି ଉଚିତ ମନେକରୁଛନ୍ତି ଏହାଙ୍କ ସହିତ ମୋର ବିବାହ କରି ଦିଅନ୍ତୁ ।"

ଏହା ଶୁଣି ଶୁକ୍ରାଚାର୍ଯ୍ୟ ଗମ୍ଭୀର ହୋଇଗଲେ । ରାଜା ଭୟରେ କମ୍ପିବାକୁ ଲାଗିଲେ । କିଛି ସମୟ ଧ୍ୟାନ କରିବା ପରେ ଭଗବାନ ଶୁକ୍ରାଚାର୍ଯ୍ୟ କହିଲେ—"ଝିଅ ! ଭାଗ୍ୟର ଲିଖନକୁ କିଏ ଲଙ୍ଘି ପାରିବ ? ବୃହସ୍ପତି ପୁତ୍ର କଚର ଅଭିଶାପ ଅନ୍ୟଥା କିପରି ହେବ ? କୌଣସି ଋଷିକୁମାର ତ ତୋତେ ବରଣ କରିବେ ନାହିଁ । ତେଣୁ

Digitized by srujanika@gmail.com

ତୋର ବିବାହ କୌଣସି ରାଜର୍ଷିଙ୍କ ସହିତ ହିଁ ହେବ । ପୃଥିବୀରେ ଯଯାତିଙ୍କଠାରୁ ବଳି ଧର୍ମାତ୍ମା ଦ୍ୱିତୀୟ ରାଜର୍ଷି କେହି ନାହାନ୍ତି । ତେଣୁ ମୁଁ ତୋର ଏଇ ପ୍ରସ୍ତାବକୁ ଅନୁମୋଦନ କରୁଛି । ଏହା ଶୁଣି ଦେବଯାନୀ ଅତ୍ୟନ୍ତ ଆନନ୍ଦିତ ହେଲା । ରାଜାଙ୍କ ମନରୁ ମଧ୍ୟ ଭୟ ଦୂର ହେଲା । ସେ ଆଚାର୍ଯ୍ୟଙ୍କର ପାଦଧୂଳି ନେଇ ନିଜ ମଥାରେ ବୋଳି ଦେଲେ । ଶୁକ୍ରାଚାର୍ଯ୍ୟ ନିଜ କନ୍ୟା ସହିତ ରାଜାଙ୍କୁ ନେଇ ନଗରକୁ ଆସିଲେ ।"

ମହାରାଜ ବୃଷପର୍ବା ଯେତେବେଳେ ଶୁଣିଲେ ଯେ ଶୁକ୍ରାଚାର୍ଯ୍ୟ ତାଙ୍କ କନ୍ୟାର ବିବାହ ରାଜର୍ଷି ଯଯାତିଙ୍କ ସହିତ କରିବେ ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ସମଗ୍ର ନଗରରେ ବିବାହ ବାଦ୍ୟ ବାଜିବାକୁ ଲାଗିଲା । ଘରଆଡ଼େ ଆନନ୍ଦ ଉତ୍ସବ ହେବାକୁ ଲାଗିଲା । ମଧୁର ବୀଣା ଧ୍ୱନିରେ ସମସ୍ତଙ୍କର ମନ ପ୍ରଫୁଲ୍ଲ ହୋଇ ଉଠିଲା । ବୃଷପର୍ବା ଗୁରୁପୁତ୍ରୀଙ୍କ ବିବାହ ଉପଲକ୍ଷେ ଅନେକ ପ୍ରକାରର ବସ୍ତ୍ର, ଆଭୂଷଣ, ହାତୀ, ଘୋଡ଼ା, ରଥ, ଦାସଦାସୀ ତଥା ଗୃହସ୍ଥୋପଯୋଗୀ ଅନେକ ବସ୍ତୁ ଦାନ ହିସାବରେ ଦେଲେ ।

ଶୁକ୍ରାଚାର୍ଯ୍ୟ ଶର୍ମିଷ୍ଠା ସହିତ ଦେବଯାନୀକୁ ରାଜାଙ୍କ ହାତରେ ଦେଇ କହିଲେ—"ହେ ରାଜା ! ଏ ମୋର ପୁତ୍ରୀ ଏବଂ ଏଇ ଶର୍ମିଷ୍ଠା ରାଜା ବୃଷପର୍ବାଙ୍କ ପୁତ୍ରୀ । ଦୁହିଁଙ୍କୁ ତୁମେ ଭଲଭାବରେ ରଖିବ । ଶର୍ମିଷ୍ଠାକୁ ଦାସୀ ମନେକରି କେବେ ଅପମାନ କରିବ ନାହିଁ । କିନ୍ତୁ ଗୋଟିଏ କଥା ସ୍ମରଣ ରଖିଥିବ ଯେ ତାକୁ କେବେ ହେଲେ ତୁମର ଅଙ୍କଶାୟିନୀ କରିବ ନାହିଁ ।"

ରାଜା ଆଚାର୍ଯ୍ୟଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କଲେ । ଗୁରୁ ଶୁକ୍ରାଚାର୍ଯ୍ୟ କନ୍ୟା ତଥା ଜାମାତାଙ୍କୁ ଆଶୀର୍ବାଦ କଲେ । ଦେବଯାନୀର ବିଦାୟ ସମୟରେ ତାଙ୍କର ଆଖି ଦୁଇଟି ଲୋତକପୂର୍ଣ୍ଣ ହୋଇଗଲା । ପିତାଙ୍କୁ ଧରି ସେ ବିକଳହୋଇ କାନ୍ଦୁଥିଲା । ଶୁକ୍ରାଚାର୍ଯ୍ୟ ମଧ୍ୟ ତାଙ୍କର ସ୍ନେହମମତାର କେନ୍ଦ୍ରବିନ୍ଦୁ ଦେବଯାନୀର ବିୟୋଗରେ ଶୋକରେ ଅସ୍ଥିର ହୋଇ ପଡ଼ୁଥିଲେ ।

ଦେବଯାନୀ ଆଜି ପତିଗୃହକୁ ଯାଉଥିଲା । ଏହା ଭାବି ଶୁକ୍ରାଚାର୍ଯ୍ୟ ନିଜ କୋହକୁ ସମ୍ଭାଳି ପାରୁ ନ ଥିଲେ । ସେ ବାରମ୍ବାର ନିଜ ଆଖି ପୋଛୁଥିଲେ ଏବଂ ରୁଦ୍ଧ ଗଳାରେ କହୁଥିଲେ—"ଝିଅ ! କାନ୍ଦନ୍ତ ନାହିଁ, ପିତା ନିଜର କନ୍ୟାର ଲାଳନ-ପାଳନ ଅନ୍ୟପାଇଁ ହିଁ କରିଥାଆନ୍ତି । ଦିନେ ନା ଦିନେ ତାଙ୍କୁ କନ୍ୟାଦାନ କରିବାକୁ ହିଁ ପଡ଼ିଥାଏ । ମୋତେ ତ ଶାନ୍ତି ମିଳୁଛି ଯେ ତୁ ବଡ଼ଘରକୁ ଯାଉଛୁ । ଏପରି ରାଜର୍ଷି ତୋର ପାଣିଗ୍ରହଣ କଲେ ଯାହାପ୍ରତି ସ୍ୱୟଂ ଶୁକ୍ର ମଧ୍ୟ ଶ୍ରଦ୍ଧା ରଖନ୍ତି । ଭଗବାନ .

Digitized by srujanika@gmail.com

ତୋର ମଙ୍ଗଳ କରନ୍ତୁ । ତୋର ପଥ ସୁଗମ ସୁଖପ୍ରଦ ହେଉ । ତୁ ଯାଆ ।” ଏହା କହି ସେ କନ୍ୟାକୁ ବିଦାୟ ଦେଲେ । ଶର୍ମିଷ୍ଠା ମଧ୍ୟ ଦୁଇସହସ୍ର ଦାସୀଙ୍କ ସହ ଦେବଯାନୀର ସେବା ନିମନ୍ତେ ତା’ର ଅନୁଗମନ କଲା । ସମସ୍ତେ ଭଲରେ ପୁରରେ ପହଞ୍ଚିଲେ ।

ରାଜପୁତ୍ରୀ ଶର୍ମିଷ୍ଠା ଦେବଯାନୀଠାରୁ ଅଧିକ ସୁନ୍ଦର ଥିଲା । ସ୍ତ୍ରୀମାନଙ୍କର ସଦାସର୍ବଦା ଏକ ଆଶଙ୍କା ଥାଏ ଯେ ମୋର ସ୍ୱାମୀ କୌଣସି ଅନ୍ୟ ସ୍ତ୍ରୀକୁ ପ୍ରେମ ନକରୁ । ସେଥିନିମନ୍ତେ ସେମାନେ ତନ୍ତ୍ର ମନ୍ତ୍ର ଯାଦୁ ବିଦ୍ୟା ଓ ଆହୁରି କେତେ କ’ଣ ଉପାୟ ଅବଲମ୍ବନ କରି ଥାଆନ୍ତି । ଦେବଯାନୀର ମଧ୍ୟ ଆଶଙ୍କା ହୋଇଯାଇଥିଲା ଯେ ସଦାସର୍ବଦା ପାଖରେ ରହିବା ଦ୍ୱାରା ଏପରି ନ ହେଉ ଯେ ରାଜାଙ୍କ ମନ ଶର୍ମିଷ୍ଠା ପାଖରେ ଲାଗିଯାଉ । ଏପଟେ ରାଜାଙ୍କର ମଧ୍ୟ ଭୟ ହେଉଥିଲା ମୋର ମନ ଚଞ୍ଚଳ ହୋଇ ନଉଠୁ ଯାଦ୍ୱାରା ମୋତେ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ମିଥ୍ୟା କହିବା ପାଇଁ ପଡ଼ିବ । ତେଣୁ ସେ ତାଙ୍କ ମହଲଠାରୁ ଦୂରରେ ଅଶୋକବାଟିକାର ଭବ୍ୟଭବନରେ ଶର୍ମିଷ୍ଠା ରହିବା ନିମନ୍ତେ ପୃଥକ ବ୍ୟବସ୍ଥା କରିଦେଲେ । ଦେବଯାନୀ ମଧ୍ୟ ତାହା ସହର୍ଷ ସ୍ୱୀକାର କରିନେଲା । ଏବେ ରାଜା ଆନନ୍ଦରେ ବିହାର କରିବାକୁ ଲାଗିଲେ । ଦେବଯାନୀ ମଧ୍ୟ ଏପରି ଧର୍ମାତ୍ମା ରାଜର୍ଷି ପତି ପାଇ ପରମ ସନ୍ତୁଷ୍ଟ ହୋଇ ରହିଲା ।

## ଛପ୍ପୟ

ନୃପ ଶଙ୍କା କଛୁ କରି ଦେବଯାନୀ ସମୁଝାୟେ ।
ନୃପ କୁଁ ନିର୍ଭୟ କରନ ତୁରତ ପିତୁ ଶୁକ୍ର ବୁଲାୟେ ॥
ଅନୁମୋଦନ ପିତୁ କରୟୋ ଯାଜ ସଖିୟନ ଲେ ସାଜେ ।
କଡ଼କ-କଡ଼କ-ଧୁଁ ଲଗେ ବ୍ୟାହ କେ ବାଜନ ବାଜେ ॥
ଶର୍ମିଷ୍ଠା ସଁଗ ସୁତା ଦୈ, ବୋଲେ—ପିତୁ ପାବେ ନ ଦୁଃଖ ।
ହୋଉଁ ଆଦର ପାଇଁ, ପରି, ଶର୍ମିଷ୍ଠା ନହିଁ ସେଜ ସୁଖ ॥



Digitized by srujanika@gmail.com

# ଧର୍ମ ସଙ୍କଟରେ ମହାରାଜ ଯଯାତି

ଦୃଷ୍ଟ୍ୱା ଯୌବନମାତ୍ମନ ଦଦ୍ଦୃଶେ ଶର୍ମିଷ୍ଠା ସପ୍ରଜାଂ କ୍ୱଚିତ୍ ।
ତମେବ ବବ୍ରେ ରହସି ସଖ୍ୟାଃ ପତିମୃତୌ ସତୀ ।*

(ଶ୍ରୀ ଭା ୯ ସ୍କ ୧୮ ଅ: ୩୧ ଶ୍ଳୋକ)

**ଛପ୍‌ପୟ**

ଲୈ ଶର୍ମିଷ୍ଠା ସଙ୍ଗ ଦେବଯାନୀ କୁଁ ଭୂପତି ।
ଆୟେ ପୁର ମହଁ ହରଷି ମନାୟୋ ପ୍ରଜା ମୋଦ ଅତି ॥
ଶୁକ୍ର-ସୁତା କୁଁ ସଦା ଖେଲି ଖାଇ ସଉତ ଘୁମାବେଂ ।
ସରସ ହାସ ପରିହାସ କରେଂ ଅତି ସୁଖ ସରସାବେଂ ॥
ପୁତ୍ରବତୀ ଭଇ ଦେବ ସୁତା, କଛୁକ କାଳ ମହଁ ହ୍ୱୈ ଗଈ ।
ଶର୍ମିଷ୍ଠା ହ୍ୱୈ ଋତୁମତୀ, ନୃପ-ସଙ୍ଗମ ଇଚ୍ଛୁକ ଭଈ ॥

ଧର୍ମ ପ୍ରାଣୀମାନଙ୍କର ସ୍ୱାଭାବିକ ଇଚ୍ଛାକୁ ନିୟନ୍ତ୍ରଣରେ ରଖିଥାଏ । ଯଦି ସବୁ ଇଚ୍ଛାଗୁଡ଼ିକୁ ଉନ୍ମୁକ୍ତ କରି ଦିଆଯାଏ, ପୁରୁଷମାନଙ୍କର ଧାର୍ମିକ ସାମାଜିକ ଏବଂ ରାଜନୈତିକ ନିୟନ୍ତ୍ରଣ ରହିବ ନାହିଁ, ତେବେ ପୁରୁଷ ପଶୁଠାରୁ ବି ହୀନ ହୋଇଯାଏ । ପଶୁମାନଙ୍କ ମଧ୍ୟରେ ମଧ୍ୟ ଏକ ସ୍ୱାଭାବିକ ନିୟନ୍ତ୍ରଣ ହୋଇଥାଏ । ଋତୁମତୀ ନ ହୋଇଥିବା ଗାଈ ବା ମଇଁଷି ନିକଟକୁ ଷଣ୍ଢ କିମ୍ବା ମଇଁଷି କେବେ ଯାଆନ୍ତି ନାହିଁ ।

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଏକ ସମୟରେ ଯେତେବେଳେ ଦେବଯାନୀକୁ ଶର୍ମିଷ୍ଠା ପୁତ୍ରବତୀ ହେବାର ଦେଖିଲା, ତା' ପରେ ସେ ମଧ୍ୟ ଋତୁସ୍ନାନ କରି ନିଜ ସଖୀର ପତି ମହାରାଜ ଯଯାତିଙ୍କଠାରୁ ଏକାନ୍ତରେ ଗର୍ଭଦାନ ନିମନ୍ତେ ପ୍ରାର୍ଥନା କଲା ।"

Digitized by srujanika@gmail.com

ଏକମାତ୍ର ପୁରୁଷ ହିଁ ଏପରି ପ୍ରାଣୀ, ଯେ ସମସ୍ତ ବନ୍ଧନକୁ ଛିଣ୍ଡାଇ ମୁକ୍ତ ହେବାପାଇଁ ଇଚ୍ଛାକରେ । ତେଣୁ ତା' ପାଇଁ ଧର୍ମର ଆବଶ୍ୟକତା ଅନେକ ବେଶୀ । ଅନେକ ବନ୍ଧନରୁ ମୁକ୍ତ ହେବାପାଇଁ ଅନେକ ଭୟକୁ ଅତିକ୍ରମ କରିବା ପାଇଁ ସେ ଅନେକଗୁଡ଼ିଏ ନିୟମ କରିଥାଏ । ସୁଖୀ ହେବା ନିମିତ୍ତ ଅନେକ ପ୍ରକାରର ପ୍ରତିଜ୍ଞା କରିଥାଏ । କିନ୍ତୁ ଶେଷରେ ନିୟମ ଲଙ୍ଘନ କରିବା ହିଁ ତାକୁ ଅସୀମ ସୁଖପ୍ରଦ ମନେହୋଇଥାଏ । ପାଳନ କରିବା ନିମନ୍ତେ ହିଁ ପ୍ରତିଜ୍ଞା କରାଯାଇଥାଏ । କିନ୍ତୁ ମନୁଷ୍ୟ ବାଧ୍ୟ ହୋଇ, ବାସନାର ବଶୀଭୂତ ହୋଇ, ଧର୍ମସଙ୍କଟରେ ପଡ଼ି ସେସବୁ ପ୍ରତିଜ୍ଞା ଭଙ୍ଗ କରିଥାଏ ତଥା ପରିଣାମସ୍ୱରୂପ ଦୁଃଖ ହିଁ ପାଇଥାଏ । ତାକୁ ଉଦ୍ଦିଷ୍ଟ, ପ୍ରାରବ୍ଧ, ଦୈବେଚ୍ଛା ଭାଗ୍ୟ, ତଥା କର୍ମଗତି—ଯାହା ହେଲେ କହିପାରନ୍ତି । ଯେତେବେଳେ ମନୁଷ୍ୟ ନିକଟରେ ଏପରି ଦୁଇଟି ବିରୋଧୀ ଧର୍ମ ଆସିଯାଏ ଯେ ଦୁଇଟିଯାକ ହିଁ ଆବଶ୍ୟକ ହୋଇଯାଏ ସେତେବେଳେ ମନୁଷ୍ୟ ସେଇ ଦିଗକୁ ଚାଲିଯାଏ ଯେଉଁଠାରେ ତା'ର ମନର ସ୍ୱାଭାବିକ ପ୍ରବୃତ୍ତି ଥାଏ । ଏହାକୁ ମାନସିକ ଦୁର୍ବଳତା କୁହାଯିବ ନା ବିଧିର ବିଧାନ ? କିଏ ଏହା ନିର୍ଣ୍ଣୟ କରିବ ?

ସୂତ ମୁନି କହୁଛନ୍ତି—"ମୁନିମାନେ ! ନିଜ ରାଜଧାନୀକୁ ଆସି ଯଯାତି ଧର୍ମପୂର୍ବକ ରାଜ୍ୟଶାସନ କରିବାକୁ ଲାଗିଲେ । ତାଙ୍କ ରାଜ୍ୟରେ ଠିକ୍ ସମୟରେ ବର୍ଷା ହେଉଥିଲା । ସବୁ ଗଛରେ ଠିକ୍ ସମୟରେ ଫୁଲ ଫଳ ହେଉଥିଲା । ତାଙ୍କ ରାଜ୍ୟରେ ଚୋର ନ ଥିଲେ । ଅନ୍ୟାୟ, ବ୍ୟଭିଚାର, ଅତ୍ୟାଚାର କ'ଣ କେହି ଜାଣି ବି ନ ଥିଲେ । ସମସ୍ତେ ସଦାଚାରୀ, ସୁଶୀଳ, ସଂଯମୀ ତଥା ଶାନ୍ତଶୀଳ ଥିଲେ । ସମସ୍ତଙ୍କର ଭଗବତ୍ ଭକ୍ତି ଅବିରତ ଥିଲା । ରାଜା ଏପରି ନିୟମ କରି ଦେଇଥିଲେ ଯେ ସନ୍ଧ୍ୟାରେ ପ୍ରତ୍ୟେକଙ୍କ ଘରେ ନିର୍ଦ୍ଦିଷ୍ଟ ସମୟରେ କୀର୍ତ୍ତନ କରିବେ, ଭଗବାନଙ୍କର ଗୁଣ କୀର୍ତ୍ତନ ଶ୍ରଦ୍ଧାର ସହିତ ସମସ୍ତେ ଶୁଣିବେ, ସଂଯମ ତଥା ସଦାଚାର ସହ ରହିବେ । ସମସ୍ତ ଗୁରୁଜନମାନଙ୍କୁ ଆଦର ସମ୍ମାନ କରିବେ ଏବଂ ନିଜ ଧର୍ମନୀତିରେ ହିଁ ସନ୍ତୁଷ୍ଟ ରହିବେ । ଏଇ ନିୟମ-ଗୁଡ଼ିକ ପାଳନ କରି ସମସ୍ତେ ସନ୍ତୁଷ୍ଟ ରହୁଥିଲେ । ଭଗବଦ୍ ଭକ୍ତିର ପ୍ରଭାବରେ କେହି ବୃଦ୍ଧ ହେଉ ନ ଥିଲେ କିମ୍ବା କେହି ମୃତ୍ୟୁମୁଖରେ ପଡ଼ୁ ନ ଥିଲେ । ରାଜା ସମସ୍ତଙ୍କର ଦ୍ୱାର ଦେଶରେ କଳ୍ପବୃକ୍ଷ ଲଗାଇ ଦେଇଥିଲେ ଏବଂ ସମସ୍ତଙ୍କ ଅଗଣାରେ କାମଧେନୁ ବାନ୍ଧି ଦେଇଥିଲେ, ଅର୍ଥାତ୍ ଏପରି କେହି ଜଣେ ହେଲେ ନ ଥିଲା ଯାହାକୁ ତା'ର ଇପ୍ସିତ ବସ୍ତୁ ସରଳତାରେ ମିଳିଯାଉ ନ ଥିଲା । ରାଜାଙ୍କର ଏତାଦୃଶ ଧର୍ମନିଷ୍ଠା ଦେଖି ଇନ୍ଦ୍ର ମଧ୍ୟ ତାଙ୍କୁ ଈର୍ଷା କରିବାକୁ ଲାଗିଲେ । ମହାରାଜ ଯଯାତି ସାକ୍ଷାତ୍ ବୈକୁଣ୍ଠକୁ ଆଣି ପୃଥିବୀ ଉପରେ ପ୍ରତିଷ୍ଠା କରି ଦେଇଥିଲେ ।"

ତାଙ୍କର ପତ୍ନୀ ଦେବଯାନୀ ସର୍ବଦା ତାଙ୍କର ଅନୁକୂଳ ରହୁଥିଲେ । ତାଙ୍କ ସହ ଧର୍ମପୂର୍ବକ ଯଯାତି ସମସ୍ତ ପ୍ରକାର ଗାର୍ହସ୍ଥ୍ୟ ସୁଖକୁ ଉପଭୋଗ କରୁଥିଲେ । ତାଙ୍କୁ

Digitized by srujanika@gmail.com

ବନ ଉପବନକୁ ନେଇ ଯାଉଥିଲେ, ସରୋବର ତଥା ନଦୀ ତୀରକୁ ତଥା ପର୍ବତ ଦେଶକୁ ବୁଲାଇବା ପାଇଁ ନେଇଯାଉଥିଲେ ତଥା ତା'ର ସମସ୍ତ ଇଚ୍ଛାକୁ ପୂରଣ କରୁଥିଲେ । ଉପଯୁକ୍ତ ସମୟରେ ଦେବଯାନୀ ଗର୍ଭବତୀ ହେଲା ଏବଂ ଏକ ପୁତ୍ରରତ୍ନକୁ ଜନ୍ମ ଦେଲା । ରାଜା ତା'ର ନାମ ରଖିଲେ 'ଯଦୁ' । ଏହି ମହାରାଜ ପରେ ଯଦୁବଂଶର ସଂସ୍ଥାପକ ହୋଇଥିଲେ ଯାହାଙ୍କ ବଂଶରେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ର ଜନ୍ମ ହୋଇ ନିଜକୁ ଯାଦବେନ୍ଦ୍ର ନାମରେ ପ୍ରସିଦ୍ଧ କଲେ ।

ଦେବଯାନୀ ଯେତେବେଳେ ପୁତ୍ରବତୀ ହେଲା, ସେ ନିଜର ଫୁଲପରି ସୁକୁମାର ରାଜକୁମାରକୁ କୋଳରେ ଧରି ଆତ୍ମବିସ୍ମୃତ ହୋଇଯାଉଥିଲା ଏବଂ ବାରମ୍ବାର ତା'ର ଅରୁଣବର୍ଣ୍ଣ ମୁଖକୁ ଚୁମ୍ବନ କରୁଥିଲା । ସେତେବେଳେ ତା'ପାଖରେ ଥିବା ଶର୍ମିଷ୍ଠା ମନରେ ମଧ୍ୟ ଏଇ ଇଚ୍ଛାର ଉତ୍ପତ୍ତି ହେଉଥିଲା, "ହା ! ମୁଁ କ'ଣ କେବେ ପୁତ୍ରର ମୁଖ ଦେଖିପାରିବି ? ମୋ କୋଳ ଏମିତି କେବେ ପୂର୍ଣ୍ଣ ହେବ ? ମୁଁ କେବେ ପୁତ୍ରର ଅମୃତ ସ୍ପର୍ଶ ପାଇପାରିବି ?" କିନ୍ତୁ ଯେତେବେଳେ ନିଜେ ଜଣେ ଦାସୀ ବୋଲି ମନେ ପଡ଼ି ଯାଉଥିଲା, ତା'ର ମନ ଭାଙ୍ଗି ଯାଉଥିଲା, ଉଦାସ ହୋଇ ଉଠୁଥିଲା । ନିଜର ଆଶାପୂର୍ଣ୍ଣ ହେବା ସମ୍ଭାବନା ନ ଦେଖି ତା' ମନ ବ୍ୟାକୁଳ ହୋଇ ଯାଉଥିଲା ।

ଶର୍ମିଷ୍ଠାର ଦଶା ତ ଏପରି ଥିଲା । ରାଜା କେତେବେଳେ କେବେ ଶର୍ମିଷ୍ଠାକୁ ଦେଖି ଦେଉଥିଲେ, ତାଙ୍କ ମନରେ ତା' ପ୍ରତି ମଧ୍ୟ ଦୟା ଆସୁଥିଲା । ସେ ଏପରି ମାଳତୀ ଲତା ପରି ଏକାନ୍ତରେ ବଣରେ ପ୍ରସ୍ଫୁଟିତ ହୋଇଥିଲା ଅଥଚ କେହି ଆଦରରେ ତା'ର ମାଳାଗୁନ୍ଥି କଣ୍ଠରହାର କରି ନ ଥିଲେ । ରାଜା ନିଜେ ମଧ୍ୟ ଅସହାୟ ଥିଲେ;କାରଣ ସେ ପ୍ରତିଜ୍ଞାବଦ୍ଧ ଥିଲେ । ତାଙ୍କର ଦେବଯାନୀ ପ୍ରତି ଯୋତେ ଭୟ ଥିଲା, ତା'ଠାରୁ ଅଧିକ ଭୟ ଦେବଯାନୀର ବୃଦ୍ଧ ପିତାଙ୍କ ପ୍ରତି ଥିଲା ।

ଦିନେ ଶର୍ମିଷ୍ଠା ଋତୁସ୍ନାନ କରିଥିଲା । ସେଦିନ ରାଜାଙ୍କ ମୁଖ ହିଁ ତା'ର ବାରମ୍ବାର ମନେ ପଡ଼ୁଥିଲା । ସେ ଭାବିଲା—"ଦେବଯାନୀକୁ ରାଜା ନିଜେ ହିଁ ତ ବରଣ କରିଛନ୍ତି, ତେବେ ମୁଁ ମଧ୍ୟ ତାଙ୍କୁ ବରଣ କରି ପାରିବି । ଯେତେବେଳେ ଏ ମୋର ସଖୀର ପତି, ଧର୍ମାନୁସାରେ ଏ ମୋର ମଧ୍ୟ ସ୍ୱାମୀ । ଏ ଦୟାଳୁ ତଥା ଦାନୀ । ଆଜି ଯଦି ମୁଁ ତାଙ୍କ ନିକଟରେ ପ୍ରେମଭିକ୍ଷା କରେ ତେବେ ସେ ମୋତେ ନିରାଶ କରିବେ ନାହିଁ । ଆଜି ଯଦି ମୁଁ ମହାରାଜ ଯଯାତିଙ୍କର ଦର୍ଶନ ପାଆନ୍ତି, ତେବେ ଆଜି ତାଙ୍କ ନିକଟରେ ବିନତୀ କରନ୍ତି ।"

ଦୈବଯୋଗକୁ ସେହି ସମୟରେ ଅଶୋକବାଟିକାରେ ମହାରାଜ ଯଯାତି ଏକା ଏକା ବୁଲୁଥିବାର ସେ ଦେଖିଲା । ଶର୍ମିଷ୍ଠାର ଏପରି ସଂଯୋଗରେ

Digitized by srujanika@gmail.com

ଯାହାସ ଟିକେ ବଢ଼ିଗଲା । ସେ ଲଜ୍ଜିତ ଭାବରେ ନିଜ ମସ୍ତକକୁ ତଳକୁ କରି ଧୀରେ ଧୀରେ ରାଜାଙ୍କ ନିକଟକୁ ଆସିଲା । ତଳେ ଆଣ୍ଠୁ ଲଗାଇ ସେ ରାଜାଙ୍କୁ ପ୍ରଣାମ କଲାପରେ ମଥା ତଳକୁ କରି ଚୁପ୍ ଚାପ୍ ରାଜାଙ୍କ ନିକଟରେ ଛିଡ଼ାହୋଇ ରହିଲା । ତା'ର ସାଧାସିଧା ବେଶ, ନତମସ୍ତକ ଏବଂ ସରଳ ମୁହଁକୁ ଦେଖି ଏପରି ମନେ ହେଉଥିଲା ସତେ ଯେପରି ମୂର୍ତ୍ତିମତୀ ସଜୀବ କରୁଣା ହିଁ ରାଜାଙ୍କ ସମ୍ମୁଖରେ ଛିଡ଼ା ହୋଇଛି ।

ରାଜା ଅତ୍ୟନ୍ତ ସ୍ନେହରେ ପଚାରିଲେ—"ରାଜପୁତ୍ରୀ ! ତୁମର ମୋତେ କିଛି କହିବାକୁ ଅଛି ?"

ଶର୍ମିଷ୍ଠା ତ ମୁଣ୍ଡ ତଳକୁ କରିଥିଲା । ସେ ସେହିପରି ରହି କହିଲା—"ପ୍ରଭୁ ! ମୋର କିଛି ମାଗିବାକୁ ଅଛି । ଯେତେହେଲେ ମୁଁ ତ ଦାସୀ ।"

ରାଜା ଦେଖିଲେ ତା'ର ପ୍ରତ୍ୟେକ ଶବ୍ଦରେ କରୁଣା ଭରପୁର ହୋଇ ରହିଛି । ଅତ୍ୟନ୍ତ ସ୍ନେହ ପୂର୍ବକ ସେ କହିଲେ—"ତୁମେ ଯାହାର ଦାସୀ ତା'ର ଦାସୀ ହୋଇପାର । ମୋ ପାଇଁ ତ ତୁମେ ସେହି ପ୍ରକାର ଆଦରଣୀୟା, ଯେପରି ଦେବଯାନୀ । ମୋ ପାଖରେ ରହି ତୁମର କେଉଁ ଜିନିଷର ଅଭାବ ହେଲା, ଯେଉଁଥିପାଇଁ ତୁମକୁ ମୋତେ କହିବାକୁ ପଡ଼ିଲା । ଏଥିପାଇଁ ମୋର ଦୁଃଖ ହେଉଛି ।"

ଶର୍ମିଷ୍ଠା କହିଲା—"ନାଁ ପ୍ରଭୁ ! ଆପଣଙ୍କର ଶାସନରେ ମୋତେ କ'ଣ କାହାକୁ ମଧ୍ୟ କୌଣସି ବସ୍ତୁର ଅଭାବ ହେବନାହିଁ । ଆପଣ ତ ପ୍ରତ୍ୟେକର ଦ୍ୱାରରେ କଳ୍ପବୃକ୍ଷ ଲଗାଇ ଦେଇଛନ୍ତି । ମୁଁ ତ ଆପଣଙ୍କ ଛତ୍ରଛାୟାରେ ଆପଣଙ୍କ ଅନ୍ତଃପୁରରେ ହିଁ ରହୁଛି । ମୋର କୌଣସି ପ୍ରକାର ବସ୍ତୁର ଅଭାବ କିପରି ହୋଇ ପାରିବ ? ମୁଁ ତ ଆଜି ଆପଣଙ୍କଠାରୁ ସହବାସର ଆକାଂକ୍ଷା କରି ଆସିଛି ।"

ରାଜା କହିଲେ—"ସୁନ୍ଦରୀ ! ତୁମେ ମୋ ନିକଟରେ ଏପରି ଧର୍ମବିରୁଦ୍ଧ ପ୍ରସ୍ତାବ କିପରି କରୁଛ ? ମୁଁ କିପରି ଧର୍ମବିରୁଦ୍ଧ ଆଚରଣ କରିପାରିବି ?"

ଶର୍ମିଷ୍ଠା କହିଲା—"ପ୍ରଭୁ ! ମୋତେ ତ ଏହା ଧର୍ମ-ବିରୁଦ୍ଧ କାର୍ଯ୍ୟ ବୋଲି ମନେ ହେଉନାହିଁ । ଆପଣ ମଧ୍ୟ ମୋର କୁଳ, ଶୀଳ, ସଦାଚାର ସମ୍ବନ୍ଧରେ ଅପରିଚିତ ନୁହଁନ୍ତି । ମୁଁ ଋତୁସ୍ନାନ କରିଛି । ମୁଁ ବଡ଼ ଆଶା ନେଇ ଆପଣଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛି । ମୋତେ ଆପଣଙ୍କ ନିକଟରୁ ନିରାଶ ହୋଇ ଫେରିବାକୁ ନ ପଡ଼ୁ, ଏହା ହିଁ ମୋର ପ୍ରାର୍ଥନା ।"

Digitized by srujanika@gmail.com

ରାଜା କହିଲେ—"ଶର୍ମିଷ୍ଠା ତୁମେ ରାଜପୁତ୍ରୀ, ଯୁବତୀ, ପରମସୁନ୍ଦରୀ, କୁଳବତୀ ତଥା ଶାଳୀନ । ତଥାପି ବି ମୁଁ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ । ନ ହେଲେ ତୁମର ପ୍ରାର୍ଥନା ସ୍ୱୀକାର କରିବା ନିମନ୍ତେ ମୋର ଆଦୌ ଆପତ୍ତି ନ ଥିଲା । ମୁଁ ଧର୍ମଦ୍ୱାରା ହିଁ ବାନ୍ଧି ହୋଇ ରହିଛି ।"

ଶର୍ମିଷ୍ଠା କହିଲା—"ସ୍ୱାମୀ ! ଧର୍ମର ଗତି ଅତ୍ୟନ୍ତ ସୂକ୍ଷ୍ମ । ଋଷିମାନେ କେଉଁଠାରେ ଧର୍ମପରି ଦେଖାଯାଉଥିବା କର୍ମକୁ ଅଧର୍ମ କହିଛନ୍ତି ତ କେଉଁଠି ଅଧର୍ମପରି ଦେଖାଯାଉଥିବା କର୍ମକୁ ଧର୍ମ କହିଛନ୍ତି । ପ୍ରକୃତରେ ତ ମୁଖ୍ୟକଥା ବାଣୀ ନ ହୋଇ ଭାବ ହିଁ ହୋଇଥାଏ । ପିଲମାନଙ୍କୁ ଖୋଇଦେଲାବେଳେ ଅଯଥାରେ ଅନେକ ମିଛସତ କାହାଣୀ କହିବାକୁ ହୋଇଥାଏ । ଏହି ମିଛସବୁ ବିଶେଷ ନିନ୍ଦନୀୟ ହୋଇ ନ ଥାଏ । ସେହିପରି ସ୍ତ୍ରୀମାନଙ୍କ ସମ୍ବନ୍ଧରେ, ହାସ୍ୟ ପରିହାସରେ, ବିବାହ ପ୍ରସଙ୍ଗରେ ଆଜୀବିକାର ରକ୍ଷା ନିମନ୍ତେ, ଜୀବନ ଉପରେ ଭୟଙ୍କର ସଙ୍କଟ ଉପସ୍ଥିତ ହେବା ସମୟରେ, ଗୋ-ବ୍ରାହ୍ମଣଙ୍କର ରକ୍ଷା ସମୟରେ, କାହାର ସତୀତ୍ୱ ରକ୍ଷା କରୁଥିବା ସମୟରେ, ସର୍ବସ୍ୱ ଅପହରଣ ହେଉଥିବା ସମୟରେ ତଥା ଯୋଗ୍ୟା ସ୍ତ୍ରୀ ସମ୍ବନ୍ଧରେ ଯଦି ଅଳ୍ପବହୁତ ମିଛ କହିବାକୁ ପଡ଼ିଥାଏ ତେବେ ଦୋଷ ଲାଗେ ନାହିଁ । କିନ୍ତୁ ସେ ସମୟରେ ଆପଣ ପ୍ରତିଜ୍ଞା କରି ଆପଣ ଉଚିତ କଥା ହିଁ କଲେ । ବର୍ତ୍ତମାନ ମୋର ଧର୍ମର ରକ୍ଷା ଆପଣଙ୍କୁ ହିଁ କରିବାକୁ ପଡ଼ିବ । ଆପଣ ଦେବଯାନୀର ପତି, ତେଣୁ ଧର୍ମତଃ ଆପଣ ମଧ୍ୟ ମୋର ପତି । ମୁଁ ଅନ୍ତରରେ ହିଁ ଆପଣଙ୍କୁ ପତି ରୂପେ ବରଣ କରିସାରିଛି । ଯାହା ସମ୍ପତ୍ତି ଥାଏ ସବୁକିଛି ଗୃହସ୍ୱାମୀର ହିଁ ଅଧିକୃତ । ଯଦ୍ୟପି ମୁଁ ଦେବଯାନୀର ଦାସୀ କିନ୍ତୁ ଧର୍ମାନୁସାରେ ତା'ସହି ବିବାହ ପରେ ଆପଣଙ୍କର ମଧ୍ୟ ମୋ ଉପରେ ପୂର୍ଣ୍ଣ ଅଧିକାର ଅଛି । ଦେବଯାନୀର ତ ନିଜର ହୋଇ କିଛି ନାହିଁ । ସେ ତ ନିଜର ତନୁ ମନ, ଧନ ତଥା ସର୍ବସ୍ୱ ଆପଣଙ୍କୁ ହିଁ ସମର୍ପଣ କରିଦେଇଛି । ତେଣୁ ମୋର ଇଚ୍ଛା ପୂର୍ଣ୍ଣକରିବା ମଧ୍ୟ ଆପଣଙ୍କର ପରମ ଧର୍ମ ।"

ରାଜା କହିଲେ—"ପ୍ରିୟେ ! ତୁମର ସବୁକିଛି କଥା ସତ୍ୟ ତଥା ଧର୍ମାନୁକୂଳ । କିନ୍ତୁ ବଡ଼ମାନେ ଯେପରି ଆଚରଣ କରନ୍ତି ସାନମାନେ ସେମାନଙ୍କର ଅନୁକରଣ ହିଁ କରିଥାନ୍ତି । ପ୍ରଜାଙ୍କ ନିମନ୍ତେ ରାଜା ଉଦାହରଣ । ଯଦି କାମର ବଶ ହୋଇ ମୁଁ ନିଜେ ଅଧର୍ମ ଆଚରଣ କରିବି ତେବେ ଅନ୍ୟ ସମସ୍ତେ ମଧ୍ୟ ଅନାଚାରୀ ହୋଇଯିବେ ।"

ଶର୍ମିଷ୍ଠା କହିଲା—"ମୁଁ ତ ଅଧର୍ମ କରିବାପାଇଁ କହୁନାହିଁ । ଆପଣ ଧର୍ମତଃ, ନ୍ୟାୟତଃ ମୋର ସ୍ୱାମୀ, ଭର୍ତ୍ତା ତଥା ପତି ଅଟନ୍ତି । ଋତୁମତୀ ସ୍ତ୍ରୀ ଯଦି ସନ୍ତାନ

Digitized by srujanika@gmail.com

ଇଚ୍ଛାରେ ପତି ନିକଟକୁ ଯାଏ ଏବଂ ପତି ତାକୁ ତିରସ୍କାର କରିଦିଅନ୍ତି ତେବେ ତାଙ୍କର ଭ୍ରୂଣ-ହତ୍ୟା ପାପ ହୋଇଥାଏ ।"

ରାଜା ଶର୍ମିଷ୍ଠାର ଯୁକ୍ତିଯୁକ୍ତ କଥା ଶୁଣି କିଛି ସମୟ ଚିନ୍ତା କରି କହିଲେ—"ରାଜକୁମାରୀ, ପ୍ରାର୍ଥୀର ମନୋକାମନା ପୂର୍ଣ୍ଣ କରିବା ମୋର ବ୍ରତ ଅଟେ । ଯଦି ଏ ସମୟରେ ମୁଁ ତୁମର ପ୍ରେମଭିକ୍ଷା ଗ୍ରହଣ କରିବା ଅଧର୍ମ ନୁହେଁ, ତେବେ ତୁମେ କହ ମୋତେ କ'ଣ କରିବାକୁ ହେବ ?"

ଶର୍ମିଷ୍ଠା କହିଲା—"ପ୍ରଭୁ, ବର୍ତ୍ତମାନ ମୁଁ ସନ୍ତାନ କାମନା କରୁଛି । ଏହା କିଛି ଦୋଷ-ଅପରାଧ ନୁହେଁ । ଆପଣ ଆପଣଙ୍କର ବ୍ରତ ରକ୍ଷା କରିବା ସଙ୍ଗେ ସଙ୍ଗେ ମୋର ଧର୍ମ ମଧ୍ୟ ରକ୍ଷା କରନ୍ତୁ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଶର୍ମିଷ୍ଠାର କଥା ରାଜାଙ୍କୁ ଯୁକ୍ତିଯୁକ୍ତ ଲାଗିଲା । ସେ ଭାବିଲେ—"ହେଉ, ଭଗବାନଙ୍କର ଯେପରି ଇଚ୍ଛା । ପ୍ରାରବ୍ଧକୁ କିଏ ଏଡ଼େଇ ପାରିବ ? ଯାହା ହେବ ଏବେ ହେଉ ।" ଏହା ଭାବି ସେ ଶାସ୍ତ୍ରୀୟ ବିଧି ଅନୁସାରେ ଶର୍ମିଷ୍ଠାର ଗର୍ଭାଧାନ ସଂସ୍କାର କଲେ । ଦୈତ୍ୟକନ୍ୟା ଏଥିରେ ଅଶେଷ ଆନନ୍ଦ ଲାଭ କଲା । ଧୀରେ ଧୀରେ ତା'ର ଗର୍ଭ ବଢ଼ିବାକୁ ଲାଗିଲା । ନିର୍ଦ୍ଦିଷ୍ଟ ସମୟରେ ଶର୍ମିଷ୍ଠା ଏକ ପୁତ୍ରରତ୍ନକୁ ଜନ୍ମ ଦେଲା । ଏହାର ନାମ ଦିଆଗଲା ଦ୍ରୁହ୍ୟୁ ।"

## ଛପ୍‌ପୟ

ବୋଲି ହେ ନରଦେବ ! ଧର୍ମ କେ ତୁମ ସେତୁ ପତି ।
ଦାସିନ କ ସବ ଭାଁତି ବତାୟେ ସ୍ୱାମୀ ହି ଗତି ॥
ବୀର୍ଯ୍ୟଦାନ ଅବ ଦେହୁ ପସାରୁଁ ପଲ୍ଲୋ ପ୍ରିୟତମ ।
ଦାସୀ ପୌ ମତ ବନୋ ଦୟାସାଗର ଅସ ନିର୍ମମ ॥
ରୂପବତୀ ଅରୁ ଋତୁମତୀ, ଶର୍ମିଷ୍ଠା, କ ସୁନି ବଚନୟ ।
ଶୁକ୍ର-ପ୍ରତିଜ୍ଞା ଭଙ୍ଗ କରି, ଦୟୋ ଦାନ ହୈ କେଂ ସଦୟ ॥



Digitized by srujanika@gmail.com

# ଦେବଯାନୀର ଶିକ୍ଷା

ରାଜପୁତ୍ର୍ୟାର୍ଥିତୋଽପତ୍ୟେ ଧର୍ମଂ ଚାବେକ୍ଷ୍ୟ ଧର୍ମବିତ୍ ।
ସ୍ମରଞ୍ଛୁକ୍ରବଚଃ କାଲେ ଦିଷ୍ଟମେବାଭ୍ୟପଦ୍ୟତ ॥ *

( ଶ୍ରୀ-ଭା-୯ସ୍କ -୧୮-ଅ ୩୬ଶ୍ଳୋ)

## ଛପ୍‌ପୟ

ଶର୍ମିଷ୍ଠା ସୁତ ଜନେ୍ୟା ଦେବଯାନୀ ସୁନ ଆଇ ।
ଭଇ କ୍ରୋଧ ତେ'ଂ ଜଲ ଅସୁର-ତନୟା ଧମକାଇ ॥
ଇତ-ଉତ ବାତ ବନାୟ ଦେବଯାନୀ ଟରକାଇ ।
ଗୁରୁ-ପୁତ୍ରୀହିଁ ବହକାଇ ଦୈତ୍ୟ-ପୁତ୍ରୀ ହରଷାଇ ॥
ଶର୍ମିଷ୍ଠା ମହଁ ଫଁସେ୍ୟା ମନ, ବଚସେ୍ୟା ଦମ୍ଭ ନୃପ କେ ହିୟେ ।
ଭୟେ କାମବଶ ଶୀଲ ତଜି, ରତ ସୁଖ-ହିତ କାରଜ କୟେ ॥

ମନୁଷ୍ୟ କାମର ଅଧୀନ ନ ହେଲେ ତା'ର ଜରା ମୃତ୍ୟୁର ଭୟ ମଧ୍ୟ ହୁଏ ନାହିଁ । ମନରେ ବିକାର ଆସିଲେ ହିଁ ଶରୀରରେ ବିକାର ଆସିଥାଏ । ମନୁଷ୍ୟ କାମର ବଶବର୍ତ୍ତୀ ହୋଇ ନିଜର ସମ୍ମାନ, ସଂଯମ, ସଦାଚାର ସବୁକିଛୁ ହରେଇ ଦେଇଥାଏ । ହୃଦୟର ପ୍ରବଳ କାମନାଦ୍ୱାରା ଦୁଃସାହସ ସୃଷ୍ଟି ହୋଇଥାଏ । ଦୁଃସାହସ ଫଳରେ ଯେଉଁ ଅନର୍ଥ ସୃଷ୍ଟି ହୋଇଥାଏ, ତାହା ଲୁଚାଇବା ନିମନ୍ତେ ଛଳନା, କପଟତା ତଥା ମିଥ୍ୟା ବ୍ୟବହାରର ଆଶ୍ରୟ ନେବାକୁ ପଡ଼ିଥାଏ । ଏହାରଦ୍ୱାରା ହିଁ ଶରୀରରେ ଜରା ମୃତ୍ୟୁ ପ୍ରବେଶ କରିଥାଏ ।

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଯେତେବେଳେ ରାଜକୁମାରୀ ଶର୍ମିଷ୍ଠା ପୁତ୍ରପ୍ରାପ୍ତି ନିମନ୍ତେ ପ୍ରାର୍ଥନା କଲେ । ଧର୍ମଜ୍ଞ ମହାରାଜ ଯଯାତି ଏହାକୁ ଧର୍ମ ବୋଲି ମନେକରି, ଶୁକ୍ରାଚାର୍ଯ୍ୟଙ୍କ ଆଜ୍ଞାକୁ ସ୍ମରଣ ରଖିବା ସତ୍ତ୍ୱେ ମଧ୍ୟ ଦୈବାଧୀନ ହୋଇ ତାହାକୁ ଋତୁଦାନ ଦେଲେ । ସେ ଭାଗ୍ୟକୁ ହିଁ ଅନୁସରଣ କଲେ ।"

Digitized by srujanika@gmail.com

ସୂତ ମୁନି କହୁଛନ୍ତି—"ମୁନିମାନେ ! ଯେତେବେଳେ କେହି ଅନୁଚିତ କାର୍ଯ୍ୟ କରିବାକୁ ଆରମ୍ଭ କରେ ସେତେବେଳେ ତା'ର ଭୟ ମଧ୍ୟ କ୍ରମଶଃ ଲୋପ ହୋଇଯାଇଥାଏ । ଥରେ ଯେ ପ୍ରତିଜ୍ଞା ଭଙ୍ଗ କରିଥାଏ ପୁନଶ୍ଚ ତା' ନିକଟରେ ପ୍ରତିଜ୍ଞା ରକ୍ଷାର ଆଶା କରିବା ବୃଥା । ଯେତେବେଳେ ଆମେ କୌଣସି ପ୍ରତିଜ୍ଞା କରିଥାଉ ସେତେବେଳେ ପ୍ରତିଜ୍ଞା-ବିରୋଧୀ କାର୍ଯ୍ୟ କରିବାପାଇଁ ବାରମ୍ବାର ଇଚ୍ଛା ହୋଇଥାଏ । ମନଭିତରେ ଅନେକ ପ୍ରକାର ଯୁକ୍ତି ଉଠିଥାଏ, ଯେତେବେଳେ ବୁଦ୍ଧି ସବୁ ଯୁକ୍ତିକୁ କାଟିଦିଏ । ଶେଷରେ ମନ କହେ—"ହେଉ ତେବେ ଏଇ ଗୋଟିଏ ଥର କରିଦେବି ପଛେ ଆଉ କରିବିନି ।" ଯେତେବେଳେ ଥରେ ଗୋଟିଏ କାମ ହୋଇଯାଏ ସେତେବେଳେ ସେହି କାମ ହଜାରେ ଥର କରିବାରେ ଆଉ କ'ଣ ଥାଏ ? ଏମିତି ପ୍ରତିଜ୍ଞା ଭଙ୍ଗ ହୋଇଯାଇ ପ୍ରାଣୀ ଭ୍ରଷ୍ଟାଚାରୀ, ମିଥ୍ୟାଚାରୀ ହୋଇ ଯାଇଥାଏ । ରାଜା ଯଯାତି ମନେ ମନେ ଭାବିଲେ ମୁଁ ଧର୍ମ କରୁଛି କିନ୍ତୁ ତାଙ୍କୁ ଜଣା ନ ଥିଲା ଯେ ଏସବୁ ଦେବତାମାନଙ୍କର ଷଡ଼ଯନ୍ତ୍ର ଥିଲା । ତେଜସ୍ୱୀ ତଥା ସଦାଚାରୀ ଲୋକଙ୍କର ପରୀକ୍ଷା କରିବା ନିମନ୍ତେ ଦେବତାମାନେ ବିଭିନ୍ନ ପ୍ରକାରର ପ୍ରଲୋଭନ ଉପସ୍ଥିତ କରି ଥାଆନ୍ତି । ରାଜା ଯଯାତି ଧର୍ମାତ୍ମା ଓ ଭଗବତ୍ ଭକ୍ତ ଥିଲେ । ସେ ପୃଥିବୀ ଉପରେ ହିଁ ବୈକୁଣ୍ଠ ସୃଷ୍ଟି କରିଥିଲେ । ତାଙ୍କ ରାଜ୍ୟରେ ପ୍ରତ୍ୟେକ ଗ୍ରାମରେ ଭଗବାନ ବିଷ୍ଣୁଙ୍କର ମନ୍ଦିର ଥିଲା, ଯେଉଁଠାରେ ନିରବଚ୍ଛିନ୍ନ ଭାବେ ଭଗବତ୍ ନାମକୀର୍ତ୍ତନ ହେଉଥିଲା । ମୁଖ୍ୟ ମୁଖ୍ୟ ସମସ୍ତ ପର୍ବ ପାଳନ କରାଯାଉଥିଲା, ବଡ଼ ବଡ଼ ଉତ୍ସବମାନ ହେଉଥିଲା । ସର୍ବତ୍ର ତୁଳସୀବଣ ଏବଂ ପଦ୍ମବନ ସୃଷ୍ଟି କରାଯାଇଥିଲା । ଏପରି ରାଜାଙ୍କ ନିକଟକୁ ଜରା ବି କିପରି ଆସିପାରିବ ? ମୃତ୍ୟୁର ତ ତାଙ୍କ ସମ୍ମୁଖରେ ଛିଡ଼ା ହେବାର ସାହସ ମଧ୍ୟ ନ ଥିଲା । ସହସ୍ର ବର୍ଷପର୍ଯ୍ୟନ୍ତ ସେ ଯୁବାବସ୍ଥାରେ ରହି ଧର୍ମପୂର୍ବକ ପ୍ରଜାପାଳନ କରୁଥିଲେ । ଦେବତାମାନଙ୍କର ଏହା ଦେଖି ଚିନ୍ତା ହୋଇଗଲା ଯେ ରାଜା ଯଦି ଏହିପରି ପରମ ଧର୍ମକରି ଚାଲିବେ ତେବେ ସ୍ୱୟଂ ତ ମୃତ୍ୟୁ ମୁଖରେ ପଡ଼ିବେନି ନିଜ ପ୍ରଜାମାନଙ୍କୁ ମଧ୍ୟ ମରିବାକୁ ଦେବେ ନାହିଁ । ମୃତ୍ୟୁକୁ ମଧ୍ୟ ତା'ର ପଦ ଚାଲିଯିବାର ଭୟ ହୋଇଗଲା । ତେଣୁ ଧର୍ମରାଜ ଇନ୍ଦ୍ରଙ୍କ ନିକଟକୁ ଗଲେ । ଇନ୍ଦ୍ର ଧର୍ମରାଜ-ଯମଙ୍କର ସ୍ୱାଗତ ସତ୍କାର କରି ତାଙ୍କ ନିକଟକୁ ଆସିବାର କାରଣ ପଚାରିଲେ । ଯମ କହିଲେ—"ଦେବେନ୍ଦ୍ର ! ଆପଣ ଯେଉଁ ପ୍ରକାରରେ ସମ୍ଭବ ସେ ପ୍ରକାରରେ ମହାରାଜ ଯଯାତିଙ୍କୁ ସ୍ୱର୍ଗକୁ ଡାକନ୍ତୁ । ଯଦି ସେ ପୃଥିବୀରେ ରହିବେ ତେବେ ସମସ୍ତଙ୍କୁ ସେ ମୃତ୍ୟୁହୀନ କରିଦେବେ ।"

ଧର୍ମରାଜଙ୍କ କଥା ଶୁଣି ଦେବେନ୍ଦ୍ର ନିଜ ସାରଥି ମାତଳିକୁ ମହାରାଜ ଯଯାତିଙ୍କ ନିକଟକୁ ପଠେଇଲେ ଏବଂ ତାଙ୍କୁ ସ୍ୱର୍ଗକୁ ଆସିବା ନିମନ୍ତେ ମାତଳି

Digitized by srujanika@gmail.com

ହାତରେ ଅନୁରୋଧ ଜଣାଇଲେ । ଇନ୍ଦ୍ରଙ୍କ ସାରଥି ଯାଇ ମହାରାଜ ଯଯାତିଙ୍କର ଜୟ ଜୟକାର କରି ତାଙ୍କୁ କହିଲା—"ଆୟୁଷ୍ମାନ୍ ! ଆପଣଙ୍କର ପୃଥିବୀ ଉପରେ ରହିବା ଅନେକ ଦିନ ହୋଇଗଲାଣି । ତେଣୁ ଆପଣ ବର୍ତ୍ତମାନ ସ୍ୱର୍ଗକୁ ଆସନ୍ତୁ । ଦେବରାଜ ଇନ୍ଦ୍ର ଆପଣଙ୍କୁ ଡକାଇଛନ୍ତି । ସ୍ୱର୍ଗରୁ ଆପଣ ଯେତେବେଳେ ଚାହିଁବେ ବ୍ରହ୍ମଲୋକ, ରୁଦ୍ରଲୋକ ଆଦି ଦିବ୍ୟଲୋକର ସୁଖଭୋଗ କରି ବୈକୁଣ୍ଠ ଲୋକକୁ ଚାଲିଯିବେ । ଆପଣଙ୍କର ପୁଣ୍ୟ ଅନନ୍ତ, ତା' ପ୍ରଭାବରେ ଆପଣ ଅକ୍ଷୟଲୋକକୁ ଉପଭୋଗ କରି ପାରିବେ ।" ଏହା ଶୁଣି ରାଜା ମାତଳିଙ୍କୁ ବିଭିନ୍ନ କର୍ମର ଫଳ ବିଷୟରେ ପଚାରିଲେ । ତା'ଠାରୁ ସ୍ୱର୍ଗରେ ଥିବା ଲୋକର ସୁଖ ସମ୍ବନ୍ଧରେ ବୁଝିଲେ ଏବଂ ଶେଷରେ କହି ଦେଲେ—"ମାତଳି ! ମୁଁ ସ୍ୱର୍ଗକୁ ଯିବାକୁ ଚାହୁଁନି । ନିଜ ପୁଣ୍ୟ ବଳରେ ମୁଁ ଏଇ ପୃଥିବୀ ଉପରେ ହିଁ ବୈକୁଣ୍ଠ ସ୍ଥାପନା କରିବାକୁ ଚାହେଁ ।" ଏହାଶୁଣି ମାତଳି ରାଜାଙ୍କଠାରୁ ଅନୁମତି ନେଇ, ତାଙ୍କୁ ଆଶୀର୍ବାଦ କରି ସ୍ୱର୍ଗକୁ ଚାଲିଗଲେ ଏବଂ ସମସ୍ତ କଥା ଇନ୍ଦ୍ରଙ୍କୁ କହିଲେ । ଏହାଶୁଣି ଇନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ତେଣୁ ସେ ବର୍ତ୍ତମାନ ଏପରି ଏକ ଷଡ଼ଯନ୍ତ୍ର କଲେ ଯାହାଦ୍ୱାରା ରାଜା କାମର ବଶ ହୋଇଯିବେ । କାମର ବଶ ହେବାମାତ୍ରେ ହିଁ ମନୁଷ୍ୟର କ୍ରୋଧ ଆସିଥାଏ । କ୍ରୋଧରେ ମଣିଷ ହିତାହିତଜ୍ଞାନ ଭୁଲି ଅଜ୍ଞାନୀ ହୋଇଯାଏ । ଏହାଫଳରେ ଚିନ୍ତା ଆସିଥାଏ ଏବଂ ଚିନ୍ତାରୁ ଜରା ଆସିବା ଫଳରେ ଜରାବସ୍ଥାରେ କାମବାସନା ପ୍ରବଳ ହୋଇଯାଏ । ଏହାଦ୍ୱାରା ମଣିଷର ମୂର୍ଖ ହୋଇଯାଏ । ବାସନା କର୍ତ୍ତବ୍ୟର ତଥା ଧର୍ମର ରୂପ ଧାରଣ କରି ଆସିଥାଏ । ତେଣୁ ଧର୍ମାତ୍ମା ପୁରୁଷଗଣ ମଧ୍ୟ ଏହାଦ୍ୱାରା ପ୍ରତାରିତ ହୋଇ ଛନ୍ଦିହୋଇ ପଡ଼ି ଥାଆନ୍ତି । "ପ୍ରାର୍ଥୀର ମନୋରଥ ପୂର୍ଣ୍ଣ କରିବା ଧର୍ମ ଅଟେ ।"—ଏହି ସିଦ୍ଧାନ୍ତ ଗ୍ରହଣ କରି ରାଜା ଶର୍ମିଷ୍ଠା ସହ ସଙ୍ଗମ କରିଥିଲେ, କିନ୍ତୁ ତା'ର ପରିଣାମ ବିପରୀତ ହିଁ ହେଲା । ତାଙ୍କର ଶର୍ମିଷ୍ଠା ପ୍ରତି ଦେବଯାନୀଠାରୁ ମଧ୍ୟ ଅଧିକ ଆସକ୍ତ ହୋଇଗଲା । ସେ ଶୁକ୍ରାଚାର୍ଯ୍ୟଙ୍କର ତେଜ ଓ ସିଦ୍ଧି କଥା ଜାଣିଥିଲେ । ତାଙ୍କର ସେଥିପାଇଁ ଭୟ ଥିଲା । ପ୍ରାଣୀ ଯେତେବେଳେ ଧର୍ମପୂର୍ବକ ନିଜ ବାସନାର ତୃପ୍ତି କରି ପାରେ ନାହିଁ ସେତେବେଳେ ସେ ଅଧର୍ମର ଆଶ୍ରୟ ନେଇଥାଏ । ତା'ପରେ ହିଁ ତା'ର ପତନ ହୋଇଥାଏ ।

ଦେବଯାନୀ ଯେତେବେଳେ ଶର୍ମିଷ୍ଠାର ଗୋଟିଏ ପୁଅ ହୋଇଛି ବୋଲି ଶୁଣିଲା; ସେ ରାଜାଙ୍କ ନିକଟକୁ ଗଲା । ରାଜାଙ୍କ ସମ୍ପର୍କରେ ତ ଦେବଯାନୀର ଆଦୌ ଶଙ୍କା ନଥିଲା । ତା'ର ଶର୍ମିଷ୍ଠା ଉପରେ ସନ୍ଦେହ ହେଲା । ସେ ତାକୁ ଧମକାଇ ପଚାରିଲା— "ଦୈତ୍ୟ କନ୍ୟା, ତୁ ଏ କି ଅଧର୍ମ କଲୁ ? ଆମର ଅନ୍ତଃପୁରରେ ତୁ ଏ ପୁତ୍ର କେଉଁଠୁ ଓ କିପରି ଜନ୍ମ ଦେଲୁ ?"

Digitized by srujanika@gmail.com

ଏହାଶୁଣି ଶର୍ମିଷ୍ଠା ଡରିଗଲା । ତଥାପି ସେ ଛଳନା କରି କହିଲା— "ଭଉଣି ! ମୁଁ କିଛି ଅଧର୍ମ କରି ନାହିଁ । ଦିନେ ମୁଁ ଋତୁସ୍ନାନ କରି ବସିଥିଲି, ମୋ ନିକଟକୁ ଜଣେ ବେଦଜ୍ଞ ଋଷି ଆସିଲେ । ମୁଁ ତାଙ୍କର ବିଧିବତ ସତ୍କାର କଲି । ମୋର ଆତିଥ୍ୟରେ ସନ୍ତୁଷ୍ଟ ହୋଇ ସେ ମୋତେ ବର ମାଗିବାପାଇଁ କହିଲେ । ମୁଁ ହାତଯୋଡ଼ି କହିଲି—''ପ୍ରଭୁ ! ନିଜ ଧର୍ମରକ୍ଷା କରି ମୋତେ ପୁତ୍ର ପ୍ରଦାନ କରନ୍ତୁ ।" ସେହି ଧର୍ମାତ୍ମା ଋଷି ମୋତେ ଧର୍ମପୂର୍ବକ ପୁତ୍ରପ୍ରଦାନ କଲେ । କାମବଶ ହୋଇ ମୁଁ କୌଣସି ପ୍ରକାରର ଅନୁଚିତ କାର୍ଯ୍ୟ କରି ନାହିଁ ।"

ଦେବଯାନୀ କହିଲା—"ସେ ଋଷି କିଏ ? କାହାର ପୁତ୍ର ସେ ? କେଉଁ ଗୋତ୍ରର ସେ ?

ଶର୍ମିଷ୍ଠା କହିଲା—"ଭଉଣି ! ମୁଁ ତ ସେ ଋଷିଙ୍କ ତେଜ ଏବଂ ପ୍ରଭାବରେ ଏପରି ପ୍ରଭାବିତ ହୋଇ ଯାଇଥିଲି ଯେ ତାଙ୍କ ନାମ, ଗୋତ୍ର କିଛି ବି ପଚାରି ପାରିଲି ନାହିଁ ।"

ଶର୍ମିଷ୍ଠାର ଏଇ କଥାକୁ ଦେବଯାନୀ ବିଶ୍ୱାସ କରି କହିଲା— "ତୋର କଥାସବୁ ଯଦି ପ୍ରକୃତ ହୁଏ ତେବେ ମୁଁ ତୋ ଉପରେ ବହୁତ ଖୁସି । ବେଦଜ୍ଞ ଶ୍ରେଷ୍ଠ ଋଷିଙ୍କ ବରଦାନଦ୍ୱାରା ପୁତ୍ର ଉତ୍ପନ୍ନ କରିବା ପୁତ୍ରାର୍ଥୀଙ୍କ ନିକଟରେ କୌଣସି ପ୍ରକାରର ଅଧର୍ମ ନୁହେଁ ।" ଏହାକହି ଦେବଯାନୀ ନିଜସ୍ଥାନକୁ ଫେରିଆସିଲା । ଶର୍ମିଷ୍ଠା ମନେ ମନେ ଖୁସି ହୋଇଗଲା ଯେ ଯାହାହେଉ ଗୁରୁପୁତ୍ରୀଙ୍କ ଆଖିରେ କପଟର ଅନ୍ଧପୁଟୁଳି ବାନ୍ଧି ଦେଲି ।

ଯେତେବେଳେ ରାଜା ଜାଣିବାକୁ ପାଇଲେ ଯେ ଦେବଯାନୀ ଶର୍ମିଷ୍ଠାର ଗତିବିଧି ଉପରେ ଶକ୍ତ ନିଘ୍ନରଖିଛି, ସେତେବେଳେ ରାଜା ଶର୍ମିଷ୍ଠାକୁ ଏପରିଭାବରେ ରଖିଲେ ଯେପରିକି ଦେବଯାନୀ ତା' ବିଷୟରେ କିଛି ଜାଣି ପାରିବ ନାହିଁ । ରାଜା ଦେବଯାନୀକୁ ଲୁଚି ଶର୍ମିଷ୍ଠା ମହଲକୁ ଯାଉଥିଲେ ।

ଦେବଯାନୀର ପ୍ରଥମ ପୁତ୍ର ଯଦୁ ଏବଂ ତା'ର ଅନେକ ଦିନ ପରେ ଅନ୍ୟ ଏକ ପୁତ୍ର ହେଲା ତାହାର ନାମ ହେଲା ତୁର୍ବସୁ । ଏହିପରି ଦେବଯାନୀର ଦୁଇ ପୁତ୍ର ହୋଇଥିଲେ ।

ଶର୍ମିଷ୍ଠାର ଦ୍ରୁହ୍ୟୁ, ଅନୁ ଏବଂ ପୁରୁ ଏହିପରି ତିନି ପୁତ୍ର ହେଲେ । କିନ୍ତୁ ରାଜା ତାଙ୍କୁ ଏପରି ଲୁଚାଇ ରଖିଥିଲେ ଯେ ଶର୍ମିଷ୍ଠାର ଆଉ ପୁତ୍ର ଅଛି ବୋଲି ଦେବଯାନୀକୁ ଜଣା ନଥିଲା । ରାଜା ମୋର ଅଧୀନ, ମୋତେ ହିଁ କେବଳ ପ୍ରେମ

Digitized by srujanika@gmail.com

କରୁଛନ୍ତି ବୋଲି ଦେବଯାନୀ ମନେ ମନେ ଭାବୁଥିଲା । ଶର୍ମିଷ୍ଠା ମନେ ମନେ ଭାବୁଥିଲା—"ରାଜାଙ୍କର ସମ୍ପୂର୍ଣ୍ଣ ପ୍ରେମର ଅଧିକାରିଣୀ ମୁଁ; ସେ ମୋର ଅଧୀନ ।" କିନ୍ତୁ ରାଜା ଯଯାତି ନା ଶର୍ମିଷ୍ଠାର ଅଧୀନ ଥିଲେ ନା ଦେବଯାନୀର ! ସେ ତ କାମର ଅଧୀନ ଥିଲେ । ଏହିପରି ଭାବେ, ଦେବତାମାନଙ୍କର ଷଡ଼ଯନ୍ତ୍ରଦ୍ୱାରା ଜରା ତାଙ୍କ ଶରୀରରେ ପ୍ରବେଶ କଲା । ସେ ଭିତରେ ଭିତରେ ଚନ୍ଦ୍ରା ରୂପରେ ନିଜ କାମ କରୁଥିଲା । ଶେଷରେ ତା'ର ସବୁ କାମ ପଦାରେ ପଡ଼ିଗଲା ଏବଂ ଜରା ତାଙ୍କ ଉପରେ ଖୋଲି ଖୋଲି ଆକ୍ରମଣ ଆରମ୍ଭ କରି ଦେଲା । ରାଜାଙ୍କର ମୁଣ୍ଡ ଥରିଲା, ବାଳସବୁ ଧଳା ହୋଇଗଲା । ମୁଖ ଦନ୍ତହୀନ ହୋଇଗଲା, ଅଣ୍ଟା ନଇଁ ପଡ଼ିଲା, ଚର୍ମ କୁଞ୍ଚିତ ହୋଇ ଆସିଲା ଏବଂ ତା' ସହିତ ଇନ୍ଦ୍ରିୟଶକ୍ତି ମଧ୍ୟ ନଷ୍ଟପ୍ରାୟ ହୋଇଗଲା ।"

ଶୌନକ ମୁନି ପଚାରିଲେ—"ବୃଦ୍ଧାବସ୍ଥା ରାଜାଙ୍କ ଶରୀରରେ କିପରି ପ୍ରବେଶ କଲା କୃପାକରି ସେ ପ୍ରସଙ୍ଗରେ ଆମକୁ କିଛି କୁହନ୍ତୁ ।"

ତାଙ୍କ ପ୍ରଶ୍ନର ଉତ୍ତର ଦେଇ ସୂତ ମୁନି କହିଲେ—"ମହାରାଜ ! ସେଇ ମନୋରଞ୍ଜକ ବୃତ୍ତାନ୍ତ ମୁଁ ବର୍ତ୍ତମାନ ଆପଣମାନଙ୍କୁ ଶୁଣାଇବାପାଇଁ ଯାଉଛି । ଆପଣମାନେ ମନଧ୍ୟାନ ଦେଇ ଶୁଣନ୍ତୁ ।"

## ଛପ୍‌ପୟ

ଯଦୁ ଅରୁ ତୁର୍ବସୁ ତନୟ ଦେବଯାନୀ କେ ଯାଏ ।
ଶର୍ମିଷ୍ଠା ହୁ ତୀନ ତନୟ ଭୂପତି ତେଂ ପାଏ ॥
ଦ୍ରୁହ୍ୟୁ ଓ ପୈର ଅନୁ ପୂରୁ ନାମ ତିନକେ ଅତି ମନହର ।
ପ୍ରକଟ ନ ବାହର ହୋହିଁ ରହେଂ ମହଲନି କେ ଭୀତର ॥
ଶର୍ମିଷ୍ଠା କେ ରୂପ ମହଁ, ରଂଖେଯା ରଁଗୀଲେ ନୃପ ହୃଦୟ ।
ଦେବ-ସରସ ସୁନ୍ଦର ଭୟେ, ତା ତେଂ ତନୋ ତନୟ ॥



Digitized by srujanika@gmail.com

# ଯଯାତିଙ୍କ ଉପରେ ଦେବଯାନୀ ଏବଂ ଶୁକ୍ରଙ୍କ ପ୍ରକୋପ

ଯଦୁଂ ଚ ତୁର୍ବସୁଂ ଚୈବ ଦେବଯାନୀ ବ୍ୟଜାୟତ ।
ଦ୍ରୁହ୍ୟୁଂ ଚାନୁଂ ଚ ପୁରୁଂ ଚ ଶର୍ମିଷ୍ଠା ବାର୍ଷପର୍ବଣୀ ॥
ଗର୍ଭସମ୍ଭବମାସୁର୍ଯା ଭର୍ତୁର୍ବିଜ୍ଞାୟ ମାନିନୀ ।
ଦେବଯାନୀ ପିତୁର୍ଗେହଂ ଯଯୌ କ୍ରୋଧ ବିମୂର୍ଛିତା ॥ *

(ଶ୍ରୀ ଭା ୯ ସ୍କ ୧୮ ଅଧ୍ୟାୟ ୩୩, ୩୪ ଶ୍ଳୋକ)

### ଛପ୍ପୟ

ଏକ ଦିବସ ନୃପ ସଙ୍ଗ ଦେବଯାନୀ ଉପବନ ମହିଁ ।
ଘୂମତ-ଘୂମତ ଗଇ ପରମ ପ୍ରମୁଦିତ ହ୍ୱୈ ମନ ମହିଁ ॥
ଦେବ-କୁମାର ସମାନ ନିହାରେ ଦ୍ୱୈ ଶିଶୁ ସୁନ୍ଦର ।
ରୂପରଙ୍ଗ ଉନହାର-ଶୀଳ ନୃପ ସଦୃଶ ମନୋହର ॥
ପୁଛେ ପତି ତେଁ ପ୍ରେମବଶ, ଜୀବନ-ଧନ ଦ୍ୱୈ ଶିଶୁ ସୁଘର ।
ହ୍ୱୈ ନିର୍ଭୟ କ୍ରୀଡ଼ା କରହିଁ, କହହୁ କୌନ କେ ହୈଂ କୁମର ॥

ପାପ-ପୁଣ୍ୟ ଯେତେ ଲୁଚାଇଲେ ମଧ୍ୟ ଲୁଚି ରହେ ନାହିଁ । ସୂର୍ଯ୍ୟ, ଚନ୍ଦ୍ରମା, ପୃଥିବୀ, ଜଳ, ବାୟୁ, ଆକାଶ, ଦିନ, ରାତି, ସନ୍ଧ୍ୟା, ଯମ ଆଦି ଦେବତାଗଣ ସମସ୍ତଙ୍କର

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ଦେବଯାନୀଠାରୁ ଯଦୁ ଏବଂ ତୁର୍ବସୁ ଏହି ଦୁଇ ପୁତ୍ର ଜନ୍ମ ହେଲେ ତଥା ଶର୍ମିଷ୍ଠାଠାରୁ ଦ୍ରୁହ୍ୟୁ, ଅନୁ ଏବଂ ପୁରୁ ଏହି ତିନି ପୁତ୍ର ଜନ୍ମ ହେଲେ । ଯେତେବେଳେ ମାନିନୀ ଦେବଯାନୀ ଜାଣିପାରିଲା ଯେ ଶର୍ମିଷ୍ଠାର ଗର୍ଭ ମୋର ପତିଙ୍କଦ୍ୱାରା ହୋଇଛି ସେତେବେଳେ ସେ କ୍ରୋଧରେ ମୂର୍ଛିତା ହୋଇ ନିଜ ପିତା ଶୁକ୍ରାଚାର୍ଯ୍ୟଙ୍କ ଘରକୁ ଚାଲିଗଲା ।"

Digitized by srujanika@gmail.com

ଗତିବିଧି ଲକ୍ଷ୍ୟ କରୁଛନ୍ତି । ଏମାନେ ସମସ୍ତେ କର୍ମର ସାକ୍ଷୀ । ବାୟୁ ମଣ୍ଡଳରେ ଯେଉଁଠାରେ ପାପପୁଣ୍ୟ ରହିଛି ତାହା ଜଣାପଡ଼ି ଯାଇଥାଏ । କେହି ଶୀଘ୍ର ଜଣାପଡ଼ିଥାଏ ତ ଆଉ କେଉଁଠା ବିଳମ୍ବରେ ଜଣାପଡ଼ିଥାଏ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ଦେବଯାନୀ ତ ମନେ ମନେ ସନ୍ତୁଷ୍ଟ ଥିଲି ଯେ ତା'ର ଦୁଇଟି ପୁତ୍ର ସନ୍ତାନ ହୋଇଛି । କିନ୍ତୁ ସେ ଜାଣି ନ ଥିଲି ଯେ ଶର୍ମିଷ୍ଠା ତିନି ପୁତ୍ରଙ୍କୁ ଜନ୍ମ ଦେଇଛି । ଯାହାଙ୍କର ପିତା ମଧ୍ୟ ମହାରାଜ ଯଯାତି । ଶର୍ମିଷ୍ଠା ଯେବେ ଦେବଯାନୀ ନିକଟକୁ ଆସୁଥିଲା ପୂର୍ବରୁ ସମସ୍ତ ନିର୍ଦ୍ଦିଷ୍ଟ କରି ଆସୁଥିଲି । ତେଣୁ ସେଇ ଅନୁସାରେ ତା' ପିଲାମାନଙ୍କୁ ଲୁଚାଇ ଦିଆ ଯାଉଥିଲି । କିନ୍ତୁ ପିଲାମାନେ ତ ଯାହା ହେଲେ ବି ପିଲା । ସେମାନେ ଏ ଷଡ଼ଯନ୍ତ୍ର ବିଷୟରେ କ'ଣ ବା ଜାଣିବେ ! ସେମାନେ ଜାଣିଥିଲେ ଯେ ଶର୍ମିଷ୍ଠା ତାଙ୍କର ମାତା ତଥା ମହାରାଜ ଯଯାତି ତାଙ୍କର ପିତା । ମହାରାଜା ଏକାନ୍ତରେ ପିଲାମାନଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ।"

ଦିନେ ରାଜା ଦେବଯାନୀ ସହିତ ଅଶୋକବନରେ ବୁଲୁଥିଲେ । ବସନ୍ତ ଋତୁର ସମୟ । ଶର୍ମିଷ୍ଠାର ଦୁଇ ପୁତ୍ର ଅନୁ ଏବଂ ପୁରୁ ସେଇ ବଣରେ ହସି ହସି ଖେଳୁଥିଲେ । ଦୁଇ ପୁଅଯାକ ଅତ୍ୟନ୍ତ ସୁନ୍ଦର ଓ ସୁକୁମାର ଥିଲେ । ବର୍ଣ୍ଣ ତାଙ୍କର ଉତ୍ତପ୍ତ ସ୍ୱର୍ଣ୍ଣ ପରି ଉଜ୍ଜ୍ୱଳ ଥିଲି । ସେମାନେ ଲାଲ ରଙ୍ଗର ବସ୍ତ୍ର ପରିଧାନ କରିଥିଲେ । ସେଥିରେ ପୀତାମ୍ବର ବନ୍ଧା ହୋଇଥିଲି । ଘନ କୁଞ୍ଚିତ କେଶରେ ତାଙ୍କର ଉଜ୍ଜ୍ୱଳ ମୁଖ ଆବୃତ ହୋଇ ଆହୁରି କମନୀୟ ଜଣା ଯାଉଥିଲି । କାନରେ ମଣିମୟ କୁଣ୍ଡଳ ଝଲମଲ ହେଉଥିଲି । ଦେବଯାନୀ ଏତେ ସୁନ୍ଦର ବାଳକଙ୍କୁ ଉପବନରେ ବୁଲିବା ଆଗରୁ କେବେ ଦେଖି ନ ଥିଲି । ପ୍ରଥମେ ତା'ର ଭ୍ରମ ହୋଇଥିଲି ଯେ ବୋଧହୁଏ କେଉଁ ଦେବକୁମାର କ୍ରୀଡ଼ା କରିବା ପାଇଁ ଏଠାକୁ ଚାଲି ଆସିଛନ୍ତି । କିନ୍ତୁ ସେ ଧ୍ୟାନ ଦେଇ ଦେଖିଲି ତାଙ୍କର ପାଦ ତଳେ ଲାଗୁ ଥିଲା, ସେମାନଙ୍କର ପଲକ ମଧ୍ୟ ପଡ଼ୁଥିଲି ତଥା ତାଙ୍କ ଶରୀରର ଛାୟା ମଧ୍ୟ ସ୍ପଷ୍ଟ ହେଉଥିଲି । ତେଣୁ ସେମାନେ ମାନବ-କୁମାର ଅଟନ୍ତି ବୋଲି ସେ ଜାଣିଗଲି । ସେମାନଙ୍କର ଆକୃତି, ପ୍ରକୃତି, ମୁଖର ଗଠନ, ଶାରୀରିକ ଗଠନ, ଚାଲିଚଳଣ ସବୁକିଛି ରାଜାଙ୍କ ସହିତ ପ୍ରାୟ ସମାନ ଥିଲି । ଦେବଯାନୀ ସେମାନଙ୍କୁ ଦେଖି ବିସ୍ମିତ ହୋଇଗଲି । ରାଜା ଭୟରେ କମ୍ପିବାକୁ ଲାଗିଲେ । ମୁହଁ ତାଙ୍କର ରକ୍ତଶୂନ୍ୟ ହୋଇଗଲି । କେତେଥର ପିଲାମାନଙ୍କୁ ସେଠାରୁ ଚାଲିଯିବାପାଇଁ ସେ ଆଖିରେ ସଙ୍କେତ ଦେଲେ । ପିଲାମାନେ କିନ୍ତୁ ସେ ସଙ୍କେତରୁ କ'ଣ ବା ବୁଝିବେ ! ବରଂ ନିଜ ପିତାଙ୍କୁ ନିକଟରେ ଦେଖି ଆନନ୍ଦରେ ତାଙ୍କ ନିକଟକୁ ଦୌଡ଼ି ଗଲେ ।

Digitized by srujanika@gmail.com

ଦେବଯାନୀ ଶଙ୍କା, ବିସ୍ମୟ, ଆଶ୍ଚର୍ଯ୍ୟ ତଥା କୌତୁହଳ ସହିତ ରାଜାଙ୍କୁ ପଚାରିଲେ—"ପ୍ରାଣନାଥ ! ଏମାନେ କାହାର ବାଳକ ? ଏଠାରେ ଆମ ଅନ୍ତଃପୁର ଉପବନରେ ଏତେ ନିର୍ଭୟ ହୋଇ କିପରି ଖେଳୁଛନ୍ତି ?"

ରାଜା ଉତ୍ତର ଦେବା ଆଗରୁ ପିଲାମାନେ ହସି ହସି ରାଜାଙ୍କ ନିକଟକୁ ଆସିଗଲେ । ଦେବଯାନୀ ଅତ୍ୟନ୍ତ ସ୍ନେହରେ ଦୁଇ ବାଳକଙ୍କୁ ପଚାରିଲା—"ପିଲାମାନେ ! ସତ ସତ କଥା କୁହ, ତୁମେ କାହାର ପୁତ୍ର । କାହା ସହିତ ଏହି ଉପବନକୁ ଆସିଛ ?"

ପିଲାମାନେ ଅତ୍ୟନ୍ତ ସରଳତାସହ ନିର୍ଭୟଭାବେ କହିଲେ—"ଆମର ମାତା ଶର୍ମିଷ୍ଠା, ମହାରାଜ ଯଯାତି ଆମର ପିତା ଅଟନ୍ତି । ଏଇଠି ଆମର ଘର । ଆମେ ଆମ ନିଜ ବଗିଚାରେ ହିଁ ଖେଳୁଛୁ ।" ଏହା କହି ସେମାନେ ରାଜାଙ୍କ କୋଳକୁ ଉଠିବାକୁ ଲାଗିଲେ; କିନ୍ତୁ ରାଜା ସେମାନଙ୍କୁ କୋଳ କଲେ ନାହିଁ । ବର୍ତ୍ତମାନ ଦେବଯାନୀ ସବୁ ରହସ୍ୟର ସନ୍ଧାନ ପାଇଗଲା । ରାଜା ତ ନିର୍ବାକ୍ ହୋଇଗଲେ । କ୍ରୋଧ ତଥା ବ୍ୟଙ୍ଗ ସହ ଦେବଯାନୀ ଆଖି ଲାଲ କରି ରାଜାଙ୍କୁ ପଚାରିଲା—"ମହାରାଜ ! ଏପରି କପଟ ବ୍ୟବହାର କାହିଁକି ? ଏହା କ'ଣ ଆପଣଙ୍କର ଧର୍ମ ?"

ରାଜା ନୀରବରେ ଛିଡ଼ା ହୋଇଥିଲେ । ଦେବଯାନୀ ଆଉ ସମ୍ଭାଳି ପାରିଲା ନାହିଁ । ସେ ସାଙ୍ଗେ ସାଙ୍ଗେ ଶର୍ମିଷ୍ଠା ମହଲ ଭିତରକୁ ପଶିଗଲା ଏବଂ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ କହିଲା—"ଦୈତ୍ୟପୁତ୍ରୀ ! ମୁଁ ଭାବିଥିଲି ଦାସୀ ହୋଇ ତୋ'ର ଦୁଷ୍ଟାମି ଚାଲିଯିବ, କିନ୍ତୁ ତୁ ନିଜ ନୀଚ ସ୍ୱଭାବକୁ ତ୍ୟାଗ କରି ପାରିଲୁ ନାହିଁ । ତୁ ମୋ ସହିତ ବିଶ୍ୱାସଘାତକତା କରିଛୁ ।"

ଶର୍ମିଷ୍ଠା ତ ସ୍ୱାମୀ ସ୍ନେହ ପାଇଥିଲା ତେଣୁ ସେଥିପାଇଁ ତା'ର ମଧ୍ୟ ଅଭିମାନ ଥିଲା । ସେ ବା କାହିଁକି ଆଉ ବର୍ତ୍ତମାନ ଦେବଯାନୀର ଏତେ କଠୋର କଥା ସହିବାକୁ ଯାଆନ୍ତା ? ନିର୍ଭୟ ଭାବରେ ସେ କହିଲା—"ତୁ ନିଜକୁ ଭୁଲି ଯାଉଛୁ କାହିଁକି ? ମୁଁ ତୋ' ସହିତ କ'ଣ ବିଶ୍ୱାସଘାତକତା କରିଛି ? କେଉଁ ପ୍ରକାର ଧୃଷ୍ଟତା କରିଛି ?"

ଦେବଯାନୀ କହିଲା—"ତୁ ତୋ'ର ଏହି ଅପକର୍ମକୁ ଲୁଚାଇ ରଖିଲୁ କାହିଁକି ? ଯେତେବେଳେ ତୁ ମୋର ଦାସୀ ତୋ'ର ଏକଥା ମୋତେ କହିବା ଉଚିତ ଥିଲା ।"

ଶର୍ମିଷ୍ଠା କହିଲା—"ମୁଁ କେତେଥର କହି ଥାଆନ୍ତି କି ? ତଥାପି ତ ମୁଁ ସେଦିନ କହି ଦେଇଥିଲି ।"

ଦେବଯାନୀ କହିଲା—"ସେ ଦିନ ତୁ ମିଛ କହିଥିଲୁ । ତୁ କହିଲୁ, ମୁଁ ଏକ ଋଷିଙ୍କ ବରଦାନରେ ପୁତ୍ରଲାଭ କରିଛି ।"

Digitized by srujanika@gmail.com

ଶର୍ମିଷ୍ଠା କହିଲା—ମୁଁ ଟିକିଏ ହେଲେ ବି ଅସତ୍ୟ କହି ନାହିଁ । ଧର୍ମାତ୍ମା ରାଜର୍ଷି ଯଯାତି କ'ଣ କେଉଁ ଋଷିଙ୍କ ଠାରୁ କମ୍ ? ଇନ୍ଦ୍ର ମଧ୍ୟ ତାଙ୍କର ଆଦର କରୁଛନ୍ତି । ତାଙ୍କର ସତ୍କାର କରି ତାଙ୍କର ବରଦାନ ଫଳରେ ହିଁ ମୁଁ ଏହି ପୁତ୍ରମାନଙ୍କୁ ପାଇଛି । ଏ କଥା ମୁଁ ସେତେବେଳେ ମଧ୍ୟ କହିଥିଲି, ବର୍ତ୍ତମାନ ମଧ୍ୟ କହୁଛି । ଏକାନ୍ତରେ ହେଉ କିମ୍ବା ହଜାର ଲୋକଙ୍କ ସମ୍ମୁଖରେ ହେଉ ମୁଁ ସେଇ ଗୋଟିଏ କଥା ହିଁ କହିବି ।''

ଦେବଯାନୀ କହିଲା—''ତୁ ମୋର ଦାସୀ, ରାଜାଙ୍କ ନିକଟରୁ ଏପରି ପ୍ରାର୍ଥନା କରିବା ପାଇଁ ତୋ'ର କି ଅଧିକାର ଥିଲା ?''

ଶର୍ମିଷ୍ଠା କହିଲା—''ଯେଉଁ ଅଧିକାର ତୋ'ର ଅଛି ତାହା ମୋର ମଧ୍ୟ ଅଛି । ଯେତେବେଳଯାଏ ତୁ ଅବିବାହିତା ଥିଲୁ ସେତେବେଳଯାଏ ମୁଁ ଅବଶ୍ୟ ତୋ'ର ଦାସୀ ଥିଲି; କିନ୍ତୁ ତୁ ଯେତେବେଳେ ମହାରାଜଙ୍କର ଧର୍ମପତ୍ନୀ ହେଲୁ, ସମସ୍ତ ବସ୍ତୁର ସ୍ୱାମୀ ମହାରାଜ ହେଲେ । ସେଇ ଦୃଷ୍ଟିରୁ ସେ ମୋର ମଧ୍ୟ ସ୍ୱାମୀ । ମୁଁ କୌଣସି ଅଧର୍ମ କରି ନାହିଁ । ବ୍ରାହ୍ମଣ କନ୍ୟା ହୋଇଥିବାରୁ ତୁ ମୋ ନିକଟରେ ସମ୍ମାନନୀୟା; କିନ୍ତୁ ମହାରାଜ ଯଯାତି ତୋ' ଅପେକ୍ଷା ଅଧିକ ସମ୍ମାନପ୍ରଦ । ତାଙ୍କ ସମ୍ମୁଖରେ ତୁ ମୋ ଉପରେ ଶାସନ କରି ପାରିବୁ ନାହିଁ ।''

ଶର୍ମିଷ୍ଠା ନିକଟରୁ ସିଧା ସିଧା ଉତ୍ତରପାଇ ଦେବଯାନୀ ଆହତ ସର୍ପିଣୀ ପରି ରାଜାଙ୍କ ଉପରେ ଗର୍ଜିବାକୁ ଲାଗିଲା । ସେ ରାଜାଙ୍କୁ କ୍ରୁଦ୍ଧ ହୋଇ କହିଲା—''ହେ ରାଜା ! ତୁମେ କେବେ ମୋ ସହିତ ବିଶ୍ୱାସଘାତକତା କରିବ ଏହା ମୁଁ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲି । ଏପରି ପରୋକ୍ଷ ଭାବରେ ତୁମେ ମୋର ଅପମାନ କରିବ ଏହା ମୋର କଳ୍ପନାତୀତ ଥିଲା । ବର୍ତ୍ତମାନ ମୁଁ ଆଉ ତୁମ ନିକଟରେ ରହିବି ନାହିଁ । ଏଥର ମୁଁ ମୋର ପିତାଙ୍କ ନିକଟକୁ ଯାଉଛି ।'' ଏହାକହି ସେ ସେହିଠାରୁ ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଚାଲିଗଲା । ତାଙ୍କ ପଛେ ପଛେ ବୃଷଭ ଗଲାପରି ରାଜା ମଧ୍ୟ ତା'ର ପଛେ ପଛେ ଗଲେ । ରାଜା ହାତ ଯୋଡ଼ିଲେ, ଦାନ୍ତରେ ତିରଣ ଧରି ଦେବଯାନୀକୁ କ୍ଷମା ମାଗିଲେ । ତା'ର ପାଦ ଧରି କହିଲେ—'ହେ ଅଭିମାନିନୀ ! ମୋ ଉପରେ ଦୟା କର, ମୋର ଅପରାଧ କ୍ଷମା କରି ଦିଅ । ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ଯାଅ ନାହିଁ ସେ ମହର୍ଷିଙ୍କୁ ମୋର ଭୀଷଣ ଭୟ ।'' କିନ୍ତୁ ଦେବଯାନୀ ତାଙ୍କ କଥାକୁ ଆଦୌ ଭ୍ରୂକ୍ଷେପ କଲା ନାହିଁ । ସେ ଶୀଘ୍ର ନିଜ ପିତାଙ୍କ ନିକଟରେ ପହଞ୍ଚିଗଲା । ସେଇ ସମୟ ଭିତରେ ମହାରାଜ ଯଯାତି ମଧ୍ୟ ଉଦାସ-ମନରେ ଯାଇ ସେଠାରେ ପହଞ୍ଚି ଗଲେ । ଯଯାତିଙ୍କୁ ଦେଖି ଦେବଯାନୀ ନିଜ ପିତାଙ୍କୁ କହିଲା—''ପିତା ! ଅଧର୍ମ ଧର୍ମକୁ ଜିତି ଗଲା । ଦେବତାମାନଙ୍କର ଭକ୍ଷଣଯୋଗ୍ୟ ଘିଅକୁ କୁକୁର ଖାଇଗଲା । ଏଇ ଧର୍ମାତ୍ମା ରାଜା ଅଧର୍ମ କରି ମୋତେ ଠକି ଦେଲେ ।''

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ ଗମ୍ଭୀର ହୋଇ କହିଲେ—"କ'ଣ ହୋଇଛି । ଆଜି ଏତେ ରାଗିବାର କାରଣ ?"

ଦେବଯାନୀ କହିଲା—"ପିତା ! ଦାସୀ ଶର୍ମିଷ୍ଠା ଏ ଭିତରେ ମୋର ସଉତୁଣୀ ହୋଇଯାଇଛି । ଏ ରାଜା ମଧ୍ୟ ଧର୍ମପଥରୁ ବିଚ୍ୟୁତ ହୋଇ ଯାଇଛନ୍ତି । ଦେଖନ୍ତୁ, ତାଙ୍କ ଦ୍ୱାରା ଶର୍ମିଷ୍ଠାର ତିନିପୁଅ ଜାତ ହୋଇଛନ୍ତି, ଅଥଚ ମୋର ଦୁଇପୁଅ । ଏହିସବୁ କଥା ଜଣାଇ ଦେବାପାଇଁ ମୁଁ ଆପଣଙ୍କ ନିକଟକୁ ଆସିଛି ।"

ଏହାଶୁଣି ଶୁକ୍ରାଚାର୍ଯ୍ୟ ରାଗରେ ଆଖି ନାଲି କରି ପଚାରିଲେ—"କ'ଣ ରାଜା ! ଦେବଯାନୀ ଯାହା କହୁଛି ସେସବୁ ସତ ? ଆପଣଙ୍କ ଦ୍ୱାରା ଶର୍ମିଷ୍ଠାର ତିନିପୁଅ ହୋଇଛନ୍ତି ?"

ରାଜା ମୁଣ୍ଡ ହଲାଇ ସେ କଥା ସ୍ୱୀକାର କଲେ । ଏହାଶୁଣି ଶୁକ୍ର କ୍ରୁଦ୍ଧ ହୋଇ କହିଲେ—"ହେ ରାଜା ! ତୁମେ ପ୍ରତିଜ୍ଞା ଭଙ୍ଗ କରିଛ । ତେଣୁ ତୁମେ ବୃଦ୍ଧ ହୋଇଯାଅ ।"

ବ୍ୟାକୁଳ ହୋଇ ରାଜା କହିଲେ—"ପ୍ରଭୁ ! ମୁଁ ଧର୍ମକାର୍ଯ୍ୟ ମନେ କରି ଶର୍ମିଷ୍ଠାକୁ ଋତୁଦାନ ଦେଇଥିଲି । ଭାର୍ଗବ ! ମୁଁ କୌଣସି ଅନୁଚିତ କାର୍ଯ୍ୟ କରି ନାହିଁ ।"

ଶୁକ୍ରାଚାର୍ଯ୍ୟ କହିଲେ—"ଋତୁମତୀ ଭାର୍ଯ୍ୟାକୁ ଋତୁଦାନ ଦେବା ଉଚିତ ହେଲେ ମଧ୍ୟ ତୁମେ ପ୍ରତିଜ୍ଞା ଭଙ୍ଗ କରିଛ । ମୋ ଠାରୁ ଅନୁମତି ନେଇ ତୁମର ଯାହାକିଛି କରିବା ଉଚିତ ଥିଲା ।"

ରାଜା କହିଲେ—"ହେ ବ୍ରାହ୍ମଣ ! ମୋର ଏହା ନିଶ୍ଚିତ ରୂପେ ଅପରାଧ ହୋଇଛି ।"

ଶୁକ୍ରାଚାର୍ଯ୍ୟ କହିଲେ—"ଅପରାଧ ଯେତେବେଳେ ହୋଇଛି ତା'ର ଫଳ ମଧ୍ୟ ଭୋଗ କର ।"

ସୂତ ମୁନି କହୁଛନ୍ତି—"ମୁନିମାନେ ଏହା କହି ଶୁକ୍ରାଚାର୍ଯ୍ୟ ନୀରବ ହୋଇଗଲେ ।" ରାଜା ତାଙ୍କ ସମ୍ମୁଖରେ ଯୋଡ଼ହସ୍ତରେ ଛିଡ଼ା ହୋଇ ରହିଲେ ।"

## ଛପ୍ପୟ

ଭୟେ ଭୂପ ଭୟଭୀତ ନ ବୋଲେ କଛୁ ଯଦବୟେ ।
କର କର କୋ ସଂକେତ କ୍ରମର ଦ୍ୱିଜ ସୁତା ବୁଲୟେ ॥
ପୂଛେ କନକେ ପୂତ ଶିଶୁନ ସଚ ବାତ ବତାଇ ।
ଶର୍ମିଷ୍ଠା ଢିଂଗ କୁପିତ ଦେବଯାନୀ ସୁନ ଆଇ ॥
ବାତ ଖରି-ଖୋଟୀ କହୀଂ, ଶର୍ମିଷ୍ଠା ଉତରପୀ ନ କବ ।
ଭରୀ କ୍ରୋଧ ମହଁ ନୃପହୁଂ ତଜି, ପିତୁ-ଢିଂଗ ସେବତ ଗଇତବ ॥

Digitized by srujanika@gmail.com

## ଯଯାତିଙ୍କ ଉପରେ ଜରାର ଆକ୍ରମଣ

ଶୁକ୍ରସ୍ତମାହ କୁପିତଃ ସ୍ତ୍ରୀକାମାନୃତପୂରୁଷ ।
ତ୍ୱାଂ ଜରା ବିଶତାଂ ମନ୍ଦ ବିରୂପକରଣୀ ନୃଣାମ୍ ॥
ଅତୃପ୍ତୋଽସ୍ମ୍ୟଦ୍ୟ କାମାନାଂ ବ୍ରହ୍ମନ୍ ଦୁହିତରି ସ୍ମ ତେ ।
ବ୍ୟତ୍ୟସ୍ୟତାଂ ଯଥାକାମଂ ବୟସା ଯୋ ଽଭିଧାସ୍ୟତି ॥ *

(ଶ୍ରୀ ଭା ୯ ସ୍କ ୧୮ ଅ: ୩୬-୩୭ ଶ୍ଳୋକ)

### ଛପ୍ପୟ

ବୃଦ୍ଧ ସୁତନ୍ୟା ସବ ଶୁକ୍ର ଶାପ ଭୂପତି କୂଁ ଦୀନ୍ହୋ ।
କରୀ ପ୍ରତିଜ୍ଞା ଭଙ୍ଗ ଅନାଦର ମେରେ କୀନ୍ହୋ ॥
ତାତେଁ ବୁଢ଼ାପୋ ତୁରତ ହିଁ ଜରା ଦେହ ତେରୀ ମହଁ ଆବୈ ।
ବେଗି ସକେ ନହିଁ ଭୋଗ ଅନୃତୁ କୋ ଫଲ ସବ ପାବୈ ॥
ନୃପ ବୋଲେ—ତବ ସୁତା ତେଁ, ବ୍ରହ୍ମନ୍ ! ତୃପ୍ତି ଭଈ ନହୀଂ ।
ଉଭୟ ଓର ତେଁ ବିଷୟ କୀ, ଇଚ୍ଛା ଅବହୁଁ ଗଈ ନହୀଂ ॥

ରାମ-ନାମ ଜପ କରିବାଦ୍ୱାରା ଆଧି, ବ୍ୟାଧି, ଦୁଃଖ, ଶୋକ, ଗ୍ଲାନି ତଥା ସମସ୍ତ ପ୍ରକାରର ମନସ୍ତାପ ଦୂର ହୋଇ ଯାଏ । ସମସ୍ତ ସୁଖର ଏକମାତ୍ର ସାଧନ

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜା ! ନିଜ କନ୍ୟାର କଥାଶୁଣି କ୍ରୋଧିତ ହୋଇ ଶୁକ୍ରାଚାର୍ଯ୍ୟ ଯଯାତିଙ୍କୁ କହିଲେ—"ହେ ସ୍ତ୍ରୀ କାମୀ ! ହେ ଅସତ୍ୟବାଦୀ ! ହେ ମଦାନ୍ଧ ! ତୋତେ ମନୁଷ୍ୟଙ୍କୁ ବିରୂପ କରୁଥିବା ଜରାବସ୍ଥା ପ୍ରାପ୍ତ ହେଉ ।" ଏହାଶୁଣି ଯଯାତି କହିଲେ—"ବ୍ରହ୍ମନ୍ ! ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଆପଣଙ୍କ କନ୍ୟା ସହିତ ବିଷୟ ଭୋଗରେ ତୃପ୍ତିଲାଭ କରି ନାହିଁ । ତେଣୁ ଶୁକ୍ର କହିଲେ—"ଭଲ କଥା, ଯେ ଆନନ୍ଦର ସହିତ ସ୍ୱେଚ୍ଛାରେ ତୁମକୁ ନିଜର ଯୁବାବସ୍ଥା ଦେବ ତା'ଦ୍ୱାରା ତୁମେ ତା' ସହିତ ନିଜ ବୃଦ୍ଧାବସ୍ଥାକୁ ବଦଳ କରିପାର ।"

Digitized by srujanika@gmail.com

ଭଗବତ୍ ନାମ ଏବଂ ସବୁ ଅନର୍ଥର ମୂଳ କେବଳ ଏକମାତ୍ର କାମ । ପୃଥିବୀ, ଜଳ, ତେଜ, ବାୟୁ ଏବଂ ଆକାଶ—ଏଇ ପଞ୍ଚଭୂତରେ ଗଢ଼ା ଏଇ ଶରୀର । ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶ—ଏଇ ପାଞ୍ଚଟା ତାହାର ବିଷୟ । କାନ, ଆଖି, ରସନା, ଘ୍ରାଣ ଏବଂ ତ୍ୱକ୍—ଏଇ ପଞ୍ଚେନ୍ଦ୍ରିୟ ଦ୍ୱାରା ପ୍ରାଣୀ ଏଇସବୁ ବିଷୟକୁ ଉପଭୋଗ କରିଥାଏ । ବିଷୟ ଭୋଗ କରୁ କରୁ ବୀର୍ଯ୍ୟ ଏବଂ ରକ୍ତର ନାଶ ହୋଇଥାଏ । ବୀର୍ଯ୍ୟ, ରକ୍ତ ତଥା ମଳରେ ହିଁ ପ୍ରାଣ ରହିଥାଏ । ଯେତେବେଳେ ଶରୀରରେ ବୀର୍ଯ୍ୟ ଏବଂ ରକ୍ତର ଅଭାବ ହୋଇଯାଏ ସେତେବେଳେ ଶରୀର ଜର୍ଜର ହୋଇଯାଏ । ବିଷୟାସକ୍ତ ମନ ଇତସ୍ତତଃ ହୋଇଥାଏ । ଇନ୍ଦ୍ରିୟ ଶକ୍ତି କ୍ଷୀଣ ହୋଇଯିବା ଫଳରେ ବିଷୟଭୋଗ ତ ହୋଇପାରେ ନାହିଁ; କିନ୍ତୁ ସେଥିରେ ତୃଷ୍ଣା ଲାଗିରହେ । କାମବାସନାକୁ ସବୁ ଅନର୍ଥର ମୂଳ ବୋଲି କୁହାଯାଇଛି । ଶରୀର ଜର୍ଜରିତ ହେବାମାତ୍ରେ ହିଁ ଜରାବସ୍ଥା ଆକ୍ରମଣ କରିଥାଏ ।

ସୂତମୁନି କହୁଛନ୍ତି—"ମୁନିମାନେ ! ମହାରାଜ ଯଯାତିଙ୍କୁ ଯେତେବେଳେ ଶୁକ୍ରାଚାର୍ଯ୍ୟ ଶାପ ଦେଇଦେଲେ ସେତେବେଳେ ସେ ହାତଯୋଡ଼ି ଆଚାର୍ଯ୍ୟଙ୍କୁ କହିଲେ —"ବ୍ରହ୍ମନ୍ ! ଆପଣ ଶାପ ଦେଇ କେବଳ ମୋର ଅନିଷ୍ଟ କରି ନାହାନ୍ତି, ନିଜ କନ୍ୟାର ମଧ୍ୟ ଅପକାର କରିଛନ୍ତି । କେହି କ୍ରୁଦ୍ଧ ହୋଇ ନିଜ ଜାମାତାଙ୍କୁ ଯଦି ମୃତ୍ୟୁର ଶାପ ଦେଇଥାଏ; ତେବେ ସେ ନିଜ କନ୍ୟାକୁ ସ୍ୱୟଂ ବିଧବା କରିଥାଏ । ବିଷୟଭୋଗରୁ ଏବେ ସୁଦ୍ଧା ମୋର ତୃପ୍ତି ହୋଇ ନାହିଁ ଓ ଆପଣଙ୍କର କନ୍ୟାର ମଧ୍ୟ । ତେଣୁ ଏପରି ଉପାୟ କରନ୍ତୁ, ଯାହାଦ୍ୱାରା ବୃଦ୍ଧାବସ୍ଥା ମୋତେ ଆକ୍ରମଣ କରିବ ନାହିଁ ।"

ଶୁକ୍ରାଚାର୍ଯ୍ୟ କହିଲେ—"ହଁ, ପ୍ରକୃତରେ ଭୁଲ୍ ହୋଇଗଲା । ବର୍ତ୍ତମାନ ଆଉ କ'ଣ ବା କରି ହେବ ? ମୋର ଶାପ ତ କେବେହେଲେ ଅନ୍ୟଥା ହେବ ନାହିଁ !"

ରାଜା କହିଲେ—"ମହାରାଜ ! ଆପଣ ସର୍ବସମର୍ଥ । ଏପରି କିଛି ଉପାୟ ବାହାର କରନ୍ତୁ, ଯାହାଦ୍ୱାରା ଆପଣଙ୍କର ବଚନ ମିଥ୍ୟା ହେବନାହିଁ ତଥା ମୁଁ ଯୁବାବସ୍ଥାରେ ରହି ଦେବଯାନୀ ସହ ବିଷୟ ଉପଭୋଗ କରି ପାରିବି ।"

କିଛି ସମୟ ଚିନ୍ତା କରି ଶୁକ୍ରାଚାର୍ଯ୍ୟ କହିଲେ—"ହେ ରାଜା ! ଯଦି ଆପଣଙ୍କର କୌଣସି ପୁତ୍ର ତଥା ସମ୍ବନ୍ଧୀ ସ୍ୱେଚ୍ଛାରେ ଆପଣଙ୍କର ବୃଦ୍ଧାବସ୍ଥା ନେଇ ଇଚ୍ଛାନୁସାରେ ସୁଖ ଉପଭୋଗ କରି ପାରିବେ ।"

ଶୀଘ୍ର ଶୀଘ୍ର ରାଜା କହିଲେ—"ବ୍ରହ୍ମନ୍ ! କୃପାକରି ମୋତେ ଆଉ ଏକ ବର ଦିଅନ୍ତୁ ଯେ ମୋର ଯେଉଁ ପୁତ୍ର ମୋତେ ତା'ର ଯୁବାବସ୍ଥା ଦେଇ ମୋର ବୃଦ୍ଧାବସ୍ଥା ନେବ ସେ ହିଁ ମୋ ପରେ ସିଂହାସନର ଅଧିକାରୀ ହେବ, ତା'ର ପରମ ପୁଣ୍ୟ ହେବ, ଏବଂ ସେ ହିଁ ସଂସାରରେ କୀର୍ତ୍ତିଶାଳୀ ହେବ ।"

Digitized by srujanika@gmail.com

ଶୁକ୍ରାଚାର୍ଯ୍ୟ ତ ଆଗରୁ ପ୍ରସନ୍ନ ଥିଲେ, ତେଣୁ କହିଦେଲେ—"ଭଲ କଥା, ଯେଉଁ ପୁତ୍ର ପ୍ରସନ୍ନତା ସହ ତୁମର ବୃଦ୍ଧାବସ୍ଥା ଗ୍ରହଣ କରିବ ସେ ହିଁ ତୁମ ପରେ ରାଜଗାଦିରେ ବସିବ ।"

ସୂତମୁନି କହୁଛନ୍ତି—"ମୁନିମାନେ ! ଏ ପ୍ରକାର ବର ପାଇ ଦେବଯାନୀ ସହିତ ରାଜା ନିଜ ପୁରକୁ ଚାଲି ଆସିଲେ । ରାଜାଙ୍କ ଶରୀରରେ ବୃଦ୍ଧାବସ୍ଥା ଆସି ଯାଇଥିଲା । ରାଜାଙ୍କ ଶରୀରରେ ବୃଦ୍ଧାବସ୍ଥା କିପରି ପ୍ରବେଶ କଲା ଏବଂ କିପରି ସେ କାମନା ବଶବର୍ତ୍ତୀ ହୋଇ ସ୍ୱର୍ଗକୁ ଗଲେ, ପୁରାଣରେ ଏହାର ଅତି ସୁନ୍ଦର ଭାବରେ ବର୍ଣ୍ଣନ ହୋଇଅଛି । ମୁନିମାନେ ! ଆପଣମାନଙ୍କର ଇଚ୍ଛାଥିଲେ ମୁଁ ତାହା ଆପଣମାନଙ୍କୁ ଶୁଣାନ୍ତି ।"

ଶୌନକ ଏହା ଶୁଣି ଉତ୍ତର ଦେଲେ—"ଆମେ ତ ଭାବୁଥିଲୁ ଆପଣ ଯେତେସବୁ କାହାଣୀ ଶୁଣାଇଲେଣି ଆମେ ସେ ସବୁକୁ କୌଣସି ନା କୌଣସି ରୂପକ ବୋଲି ଭାବି ଆସିଛୁ । ହଁ, ଏକଥା ଅଲଗା ଯେ ଆମେ ସେ ରୂପକର ଅଭିପ୍ରାୟକୁ ବୁଝିପାରି ନାହୁଁ । ଏହାଦ୍ୱାରା ଏହା ଭାବିବା ଉଚିତ ନୁହେଁ ଯେ ଚନ୍ଦ୍ର, ଏଲ, ଯଯାତି, ମାନ୍ଧାତା ଇତ୍ୟାଦି ଐତିହାସିକ ପୁରୁଷ ନ ଥିଲେ । ହଁ ବର୍ତ୍ତମାନ ଏଇ ରୂପକ ମଧ୍ୟ ଆପଣ ନିଶ୍ଚୟ ଶୁଣାଇବେ ।"

ଏହାଶୁଣି ହସି ହସି ସୂତ ମୁନି କହିଲେ— "ମହାରାଜ ! ଏ ସବୁ ଯେତେ ଦୃଶ୍ୟ ପ୍ରପଞ୍ଚ ଅଛି ସବୁ ହିଁ ରୂପକ । ସେଥିରେ ଏକମାତ୍ର ଶ୍ରୀହରି ହିଁ ସତ୍ୟ ଅଟନ୍ତି । ଯେପରି ହେବାକୁ ଥାଏ, ସେପରି ବାୟୁମଣ୍ଡଳ ସୂକ୍ଷ୍ମ ଜଗତରେ ସୃଷ୍ଟି ହୋଇ-ଯାଇଥାଏ । ଶୁକ୍ରାଚାର୍ଯ୍ୟଙ୍କର ଶାପ ତ ନିମିତ୍ତ ମାତ୍ର । ରାଜାଙ୍କ ବିରୁଦ୍ଧରେ ଦେବତାମାନେ ପ୍ରଥମରୁ ଷଡ଼ଯନ୍ତ୍ର କରୁଥିଲେ । ସେମାନେ କୌଣସି ପ୍ରକାରେ ରାଜାଙ୍କୁ ସ୍ୱର୍ଗକୁ ଆଣିବାକୁ ଚାହୁଁଥିଲେ । ରାଜା କିନ୍ତୁ ସେଇଠି ପୃଥିବୀ ଉପରେ କଥା-କୀର୍ତ୍ତନର ପ୍ରଚାର କରି ବୈକୁଣ୍ଠ କରିବା ପାଇଁ ଚାହୁଁଥିଲେ । ଯେତେବେଳେ ମାତଲି ଦ୍ୱାରା ଡକାହେଲା ପରେ ମଧ୍ୟ ମହାରାଜ ଯଯାତି ସ୍ୱର୍ଗକୁ ଆସିଲେ ନାହିଁ ସେତେବେଳେ ଇନ୍ଦ୍ରଙ୍କର ମଧ୍ୟ ଚିନ୍ତା ହୋଇଗଲା । ସେ ରାଜାଙ୍କୁ ଡକାଇବାର ଅନ୍ୟ ଉପାୟ ଚିନ୍ତା କରିବାକୁ ଲାଗିଲେ ।"

ତନେ ଦେବରାଜ ଇନ୍ଦ୍ର କାମଦେବ, ବସନ୍ତ, ମଲୟାନିଳ ତଥା ଗୀତବାଦ୍ୟ କରୁଥିବା ଆହୁରି ଅନେକ ଗନ୍ଧର୍ବଙ୍କୁ ଡାକି କହିଲେ—"ତୁମେ ସବୁ ତୁମ ଗୁଣଯୋଗୁ ସାରା ସଂସାରରେ ପ୍ରଶଂସା ପାଉଛ, ପ୍ରସିଦ୍ଧି ଲାଭ କରିଛ । କୌଣସି ପ୍ରକାରରେ ତୁମେ ମହାରାଜ ଯଯାତିଙ୍କର ମନକୁ ଆକର୍ଷଣ କରି ତାଙ୍କୁ ସ୍ୱର୍ଗକୁ ଆଣ ।"

Digitized by srujanika@gmail.com

ଦେବରାଜଙ୍କ କଥା ଶୁଣି କାମଦେବ କହିଲେ—"ପ୍ରଭୁ ! ମହାରାଜ ଯଯାତି ଅତ୍ୟନ୍ତ ଧର୍ମାତ୍ମା । ସେ ପୃଥିବୀ ଉପରେ ହିଁ ବୈକୁଣ୍ଠ ସୃଷ୍ଟି କରିବାରେ ସଫଳ ହୋଇଛନ୍ତି । ସେ ଆମଦ୍ୱାରା ବା କପରି ଆକର୍ଷିତ ହୋଇପାରିବେ ? ତଥାପି ଆମେ ଯାଉଛୁ ରିଦ୍ଧି-ସିଦ୍ଧି ଭଗବାନଙ୍କ ହାତରେ ।" ଏହା କହି ଗୀତ ବାଦ୍ୟ କରୁଥିବା ନାଟକମଣ୍ଡଳୀ ଧରି ସେମାନେ ରାଜା ଯଯାତିଙ୍କର ସଭାକୁ ଗଲେ ।

ରାଜସଭାରେ ପହଞ୍ଚି ସେମାନେ ମହାରାଜାଙ୍କର ଜୟ ଜୟକାର କଲେ ଏବଂ କହିଲେ—"ମହାରାଜ ! ଆମେ ସବୁ ଏକ ଧାର୍ମିକ ନାଟକ ଆପଣଙ୍କୁ ଦେଖାଇବା ପାଇଁ ଚାହୁଁଛୁ ।"

ରାଜା ନିଜର ସମସ୍ତ ମନ୍ତ୍ରୀ-ପୁରୋହିତଙ୍କୁ ଏକତ୍ରିତ କଲେ, ସମସ୍ତଙ୍କଠାରୁ ସମ୍ମତି ନେଲେ । ସମସ୍ତେ କହିଲେ—"ମହାରାଜ ! ଧାର୍ମିକ ନାଟକରେ କ'ଣ ବା କ୍ଷତି ହେବ ? ସମସ୍ତଙ୍କର ସମ୍ମତି ନେଇ ମହାରାଜ ଅଭିନୟ ନିମନ୍ତେ ଅନୁମତି ଦେଇଦେଲେ । ରାଜଦ୍ୱାରରେ ନାଟକର ପ୍ରସ୍ତୁତି ହେବାକୁ ଲାଗିଲା । ରଙ୍ଗମଞ୍ଚ ସଜା ହେଲା । ସେମାନେ ସମସ୍ତେ ଦେବତା ହିଁ ଥିଲେ । ତେଣୁ ସେମାନେ ଏତେ ସୁନ୍ଦର ଭାବରେ ରଙ୍ଗମଞ୍ଚ ସଜାଇଲେ ଯେ ଦର୍ଶକମାନେ ଆଶ୍ଚର୍ଯ୍ୟଚକିତ ହୋଇଗଲେ । ଅନେକ ପ୍ରଜା ନାଟକ ଦେଖିବାକୁ ଆସିଲେ । ନାଟକର ନାମ ଥିଲା "ବଟୁବାମନ ବିଜୟ ।" ସେଇ ନାଟକର ସୂତ୍ରଧର ହେଲେ ସାକ୍ଷାତ କାମଦେବ ସ୍ୱୟଂ । ତାଙ୍କ ପତ୍ନୀ ରତି ନଟୀର ବେଶ ସାଜିଲା । ବସନ୍ତ ପାରିପାର୍ଶ୍ୱିକ କାର୍ଯ୍ୟ କଲା । ସେ ନିଜ ହାବଭାବ ଦ୍ୱାରା ରାଜାଙ୍କ ମନକୁ ନିଜର ବଶ କରିନେଲା । ସମସ୍ତ ପାତ୍ର ଅଭିନୟର ଅନୁରୂପ ଦିବ୍ୟ ବସ୍ତ୍ରାଭୂଷଣ ଧାରଣ କରିଥିଲେ ।

ଯେଉଁ ନାଟକରେ ସ୍ୱୟଂ କାମଦେବ ଏବଂ ରତି ନୃତ୍ୟଗୀତ ଆଦି ସହ ଅଭିନୟ କରିବେ । ତା'ର ମାଧୁର୍ଯ୍ୟ ବିଷୟରେ ଆଉ କ'ଣ କହିବା ? ତା'ର ବର୍ଣ୍ଣନା ହିଁ ଅସମ୍ଭବ । କାମଦେବ ନିଜ କୌଶଳଦ୍ୱାରା ରାଜାଙ୍କ ମନକୁ ଏପରି ଆକର୍ଷିତ କରିଦେଲେ ଯେ ରାଜା ନିଜର ଚେତନା ହରେଇଲାପରି ମୂର୍ତ୍ତିମନ୍ତ ହୋଇ ଅଭିନୟ ଦେଖିବାକୁ ଲାଗିଲେ । ବିଭିନ୍ନ ପାତ୍ରଙ୍କର ନୃତ୍ୟ, ଗୀତ, ସମ୍ବାଦ ଏବଂ ଲଳିତ ହାସ୍ୟରେ ସମ୍ମୋହିତ ହୋଇ ତାଙ୍କର ବ୍ୟବହାର ମଧ ତଦନୁରୂପ ହୋଇଗଲା । ଏହା ମଧ୍ୟରେ ତାଙ୍କର ଲଘୁଶଙ୍କା ଦେଖାଗଲା । ତୁରନ୍ତ ଲଘୁଶଙ୍କାରୁ ନିବୃତ୍ତ ହୋଇ ସେ ଆସି ନିଜ ଆସନ ଉପରେ ବସିଲେ । ହାତଗୋଡ଼ ଧୋଇବା, କୁଳି କରି ମୁହଁ ଧୋଇବା ସବୁକିଛି ସେ ଭୁଲିଗଲେ । ଏଇ ଅଶୁଚିର ଅବସର ପାଇ ଜରା ତାଙ୍କ ଶରୀରରେ ପ୍ରବେଶ କଲା । ରାଜାଙ୍କୁ ଜଣା ମଧ୍ୟ ପଡ଼ିଲା ନାହିଁ ଯେ ବୃଦ୍ଧାବସ୍ଥା କେତେବେଳେ ତାଙ୍କ ଶରୀରରେ

Digitized by srujanika@gmail.com

ପ୍ରବେଶ କଲା । କାମଦେବ ମଧ୍ୟ ଅବସର ପାଇ ତାଙ୍କ ଅଙ୍ଗମାନଙ୍କରେ ବ୍ୟାପ୍ତ ହୋଇଗଲେ । ବର୍ତ୍ତମାନ ରାଜା କାମର ମଧ୍ୟ ବଶୀଭୂତ ହୋଇଗଲେ । ନାଟକ ସମାପ୍ତ ହେଲା । ରାଜାଙ୍କର ମନ ଏବେ ଶର୍ମିଷ୍ଠା ଦେବଯାନୀଙ୍କ ଠାରୁ ତୃପ୍ତ ନ ହୋଇ ଆହୁରି ଅନେକ କିଛି ଚାହୁଁଥିଲା ।

ଥରେ ରାଜା ମୃଗୟା ନିମନ୍ତେ ବନକୁ ଗଲେ । ଗୋଟିଏ ବଡ଼ ଶୂକରକୁ ପିଛା କରି କରି ଏକ ସୁନ୍ଦର ସ୍ୱଚ୍ଛସଲିଳ ସରୋବର ନିକଟରେ ପହଞ୍ଚିଲେ । ସେଠାରେ ସେ ଦେଖିଲେ ଯେ ଏକ ଅତ୍ୟନ୍ତ ସୁନ୍ଦରୀ ରୂପବତୀ ଯୁବତୀ ବୀଣା ବଜାଇ ଗୀତ ଗାଉଛି । ରାଜା ତ କ୍ଲାନ୍ତ ହୋଇଥିଲେ; ତେଣୁ ରଥରୁ ଓହ୍ଲାଇ ସେ ସେହି ବିସ୍ତୃତ ସରୋବରରେ ସ୍ନାନ କଲେ ତଥା ଜଳପାନ କଲେ । ପଦ୍ମଫୁଲର ବାସ୍ନା ବାହାରୁଥିବା ସେଇ ଜଳରେ ସ୍ନାନ କରିବାଦ୍ୱାରା ରାଜାଙ୍କ ଶରୀର ଫୁଲପରି ହୋଇଗଲା । ସେଇ ମଧୁର ସଙ୍ଗୀତର ଧ୍ୱନି ରାଜାଙ୍କ କର୍ଣ୍ଣକୁହରରେ ପ୍ରବେଶ କରି ଅମୃତପରି ଲାଗୁଥିଲା । ବୀଣାଧ୍ୱନି ସହ କେହି ତରୁଣୀର ତନୁରୂପ କୋକିଳକଣ୍ଠୀ କଣ୍ଠସ୍ୱର ମଧ୍ୟ ତାଙ୍କ ହୃଦୟରେ ରହି ରହି ଉତ୍କଣ୍ଠା, ଅଭିଳାଷା ତଥା କାମନା ଉତ୍ପନ୍ନ କରୁଥିଲା । ସେଇ ଧ୍ୱନିକୁ ଅନୁସରଣ କରି ନରରାଜେଶ୍ୱର ମହାରାଜ ଯଯାତି ସେଇ ସ୍ଥାନରେ ପହଞ୍ଚିଲେ, ଯେଉଁଠାରେ ସେ ଯୁବତୀ ବସି ବୀଣା ବଜାଇ ଗୀତ ଗାଉଥିଲା । ରାଜାଙ୍କୁ ଦେଖି ସେ ସଲଜ୍ଜଭାବେ ବୀଣାକୁ ରଖିଦେଲା ଏବଂ ଛିଡ଼ା ହୋଇଗଲା । ତା'ପାଖରେ ବସିଥିବା ତା'ର ସଖୀ ମଧ୍ୟ ଉଠି ଠିଆ ହୋଇପଡ଼ିଲା । ରାଜା ଶିଷ୍ଟାଚାର ଦେଖାଇ କହିଲେ—"ମୋତେ କ୍ଷମା କରିବେ, ମୁଁ ଆପଣଙ୍କ ସଙ୍ଗୀତରେ ବିଘ୍ନ ସୃଷ୍ଟି କଲି । ଆପଣ ଗୀତ କାହିଁକି ବନ୍ଦ କରିଦେଲେ ? ସେଇ ଗୀତ ଶୁଣିବାପାଇଁ ତ ମୁଁ ଏଠାକୁ ଆସିଥିଲି ।"

ସେ ସୁନ୍ଦରୀ ଏ କଥାର କୌଣସି ଉତ୍ତର ଦେଲାନାହିଁ । ରାଜାଙ୍କୁ ଏକ ସୁନ୍ଦର ଆସନ ଦେଇ ସେ ବସିବା ନିମନ୍ତେ ପ୍ରାର୍ଥନା କଲା । ରାଜା ଚୁପ୍‌ଚାପ୍ ସେଇ ଆସନରେ ବସିଗଲେ । ସେଇ ସୁନ୍ଦରୀର ଆଖି ପଦ୍ମଫୁଲପରି ସୁନ୍ଦର ତଥା ଆକର୍ଷଣୀୟ ଥିଲା । ତାହା କାନ ପର୍ଯ୍ୟନ୍ତ ଲମ୍ବିଥିଲା । ସେଥିରେ କଜ୍ଜଳକଳା ଲଗା ହୋଇଥିଲା । ଅନୁପମ ଥିଲା ତା'ର ରୂପ ସୌନ୍ଦର୍ଯ୍ୟ ତଥା ଲାବଣ୍ୟ ଓ ଜ୍ୟୋତି । ରାଜା ଅନୁଭବ କଲେ ଯେ ତା'ପରି ଦ୍ୱିତୀୟ ସୁନ୍ଦରୀ ତ୍ରିଭୁବନରେ ବୋଧେ ସୃଷ୍ଟି ହୋଇ ନ ଥିବେ । ନାଟକ ସମୟରେ ତାଙ୍କ ଶରୀରରେ ସୂକ୍ଷ୍ମ ରୂପରେ ପ୍ରବିଷ୍ଟ କାମ ସେଇ ସର୍ବଶ୍ରେଷ୍ଠ ସୁନ୍ଦରୀର ଦର୍ଶନରେ ବିଶାଳ ଆକାରରେ ପ୍ରକଟିତ ହୋଇପଡ଼ିଲା । ତାଙ୍କ ହୃଦୟରେ ଧୂ ଧୂ ହୋଇ କାମାଗ୍ନି ଜଳିବାକୁ ଲାଗିଲା । ଅତ୍ୟନ୍ତ ମଧୁର ଭାବ ତଥା ସ୍ନେହରସସହିତ ରାଜା ପଚାରିଲେ—"ସୁନ୍ଦରୀ ! ତୁମେ କାହାର କନ୍ୟା ? ତୁମର ଏହି ସୁନ୍ଦର ସଖୀଟି କିଏ ?

Digitized by srujanika@gmail.com

ମୁଁ ପରିଚୟ ପ୍ରାପ୍ତ କରିବା ନିମନ୍ତେ ଅତ୍ୟନ୍ତ ଉତ୍ସୁକ । ମୁଁ ରାଜର୍ଷି ନହୁଷଙ୍କର ପୁତ୍ର ଯଯାତି । ଏଇ ସପ୍ତଦ୍ୱୀପା ବସୁନ୍ଧରାର ମୁଁ ଏକମାତ୍ର ଚକ୍ରବର୍ତ୍ତୀ ସମ୍ରାଟ ।''

ଏହାଶୁଣି ସେ ସୁନ୍ଦରୀ କିଛି ମଧ୍ୟ କହିଲା ନାହିଁ । ଲଜ୍ଜାରେ ସେ ନିଜ ସଖୀ ମୁହଁକୁ ଚାହିଁଲା । ତା'ର ଅଭିପ୍ରାୟ ବୁଝି ଧୀରେ ଧୀରେ ତା'ର ସଖି ବିଶାଳା ରାଜା ଯଯାତିଙ୍କୁ କହିଲା —''ହେ ରାଜା । ମୁଁ ମୋର ସଖିର ପରିଚୟ ଆପଣଙ୍କୁ ଦେଉଛି । ପୂର୍ବ କାଳରେ ଶିବ କାମଦେବଙ୍କୁ ଭସ୍ମ କରି ଦେଇଥିଲେ । ଏହାଦ୍ୱାରା ତାଙ୍କ ପତ୍ନୀ ରତି ଅତ୍ୟନ୍ତ ଦୁଃଖିତା ହେଲା । ଦୁଃଖ ଯୋଗୁ ସେ ସଦାସର୍ବଦା ଏହି ସରୋବରରେ ହିଁ ବାସ କରୁଥିଲା । ଦେବତାମାନଙ୍କର ଦେଖି ରତି ପ୍ରତି ଦୟା ହେଲା । ସେମାନେ ଦେବଦେବ ମହାଦେବଙ୍କ ନିକଟକୁ ଯାଇ କହିଲେ—ପ୍ରଭୁ । ରତି ଅତ୍ୟନ୍ତ ଦୁଃଖୀ । ତା'ର ପ୍ରାଣପ୍ରିୟ ପତିଙ୍କୁ ଆପଣ ପୁନର୍ଜୀବିତ କରି ଦିଅନ୍ତୁ ।''

ଦେବତାମାନଙ୍କର ପ୍ରାର୍ଥନା ସ୍ୱୀକାର କରି ଭଗବାନ ଶୂଳପାଣି କହିଲେ— ''ଦେବତାଗଣ ! କାମଦେବକୁ ମୁଁ ଏବେ ଜୀବିତ କରି ଦେଉଛି; କିନ୍ତୁ ସେ ଅଙ୍ଗହୀନ ହେବ । ସେ ସମସ୍ତ ପ୍ରାଣୀଙ୍କର ଅଙ୍ଗରେ ବ୍ୟାପ୍ତ ହୋଇ ରହିବ । ଅନଙ୍ଗ ନାମରେ ସେ ଜଗତରେ ପ୍ରସିଦ୍ଧି ଲାଭ କରିବେ । ବସନ୍ତ ହେବ ତା'ର ମିତ୍ର । ସେ ସବୁ ଶକ୍ତି-ଶାଳୀଙ୍କ ମଧ୍ୟରେ ବଳୀୟାନ ହେବ ।'' ଶିବ ଏହିପରି ବରଦାନ ଦେଇଦେବା ସାଙ୍ଗେ ସାଙ୍ଗେ କାମ ସେଠାରେ ପ୍ରକଟ ହୋଇଗଲେ । ଶିବ ତାହାଙ୍କୁ ରତି ନିକଟକୁ ପଠାଇ ଦେଲେ । ଶରୀରହୀନ ପତି ନେଇ ରତିକା ସନ୍ତୁଷ୍ଟ ହୁଅନ୍ତା କିପରି ! ଅନ୍ୟ ସମସ୍ତ ପୁରୁଷଙ୍କର ଅଙ୍ଗରେ କାମ ବ୍ୟାପ୍ତ ହେବା ଦ୍ୱାରା ସମସ୍ତେ କାମବଶ ହୋଇଗଲେ । ରତି ଏହି ସରୋବରରେ ବର୍ତ୍ତମାନଯାଏ ରହୁଛି । କାମ ମଧ୍ୟ ନିଜ ପ୍ରିୟା ନିକଟରେ ବୃକ୍ଷ ରୂପରେ ଏଇଠାରେ ଅଛନ୍ତି । ତେଣୁ ଏହା ''କାମ-ସରୋବର'' ଅଟେ । ଶିବଙ୍କ କୋପ ଦ୍ୱାରା ରତିର ଦାରୁଣ ଦୁଃଖ ଉତ୍ପନ୍ନ ହେଲା । ପତି ବିହୀନା ରତି ସେଇ ଦୁଃଖରେ ସଦାସର୍ବଦା ଅଶ୍ରୁ-ବିମୋଚନ କରୁଛି । ରତିର ସେଇ ଅଶ୍ରୁବିନ୍ଦୁ ସବୁରୁ ଏଠାରେ ମହାଶୋକ ଉତ୍ପନ୍ନ ହେଉଛି । ଜରାର ଜନ୍ମ ମଧ୍ୟ ସେଇ ଅଶ୍ରୁବିନ୍ଦୁରୁ ହିଁ ହେଉଛି । ବିୟୋଗ, ଦୁଃଖ, ସନ୍ତାପ ଏବଂ ମୂର୍ଚ୍ଛାର ଜନ୍ମ ମଧ୍ୟ ଏଇ ଶୋକପୂର୍ଣ୍ଣ ଅଶ୍ରୁରୁ ହେଉଛି । ଶୋକଦ୍ୱାରା କାମଜ୍ୱର, ବିଭ୍ରମ ଏବଂ ପ୍ରଳାପ ପ୍ରକଟ ହେଲେ । ପ୍ରଳାପର ପୁତ୍ର ଉନ୍ମାଦ ଏବଂ କନ୍ୟା ବିହ୍ୱଳତା । ଉନ୍ମାଦରୁ ଜନ୍ମ ନେଲା ମୃତ୍ୟୁ । ଏ ସବୁ ମହାଶୋକର ସନ୍ତାନଗଣ ।

ପରେ ରୂପଧର ରତି ପତି କାମଦେବ କାହାର ନିର୍ଦ୍ଦେଶରେ ଏଠାରେ ରତି ନିକଟକୁ ଆସିଲେ । ପତିଙ୍କୁ ଦେଖି ରତି ଅତ୍ୟନ୍ତ ଆନନ୍ଦିତ ହେଲା । ତା'ର ଶୋକ

Digitized by srujanika@gmail.com

ଅଶ୍ରୁ ସହିତ ଆନନ୍ଦ ଅଶ୍ରୁ ସୃଷ୍ଟି ହେଲା । ଏହା ଦ୍ୱାରା ପ୍ରୀତି ନାମକ କନ୍ୟାର ସୃଷ୍ଟି ହେଲା । ପ୍ରୀତିର ତିନୋଟି କନ୍ୟା ହେଲେ—ଖ୍ୟାତି, ଲଜ୍ଜା ଏବଂ ଶାନ୍ତି । ମହାନନ୍ଦ ନାମକ ଏକ ପୁତ୍ର ମଧ୍ୟ ହେଲା । ଶାନ୍ତିର ସୁଖଦାୟିନୀ ଲୀଳା ଏବଂ ସୁଖଦାୟିନୀ କ୍ରୀଡ଼ା—ଏଇ ଦୁଇ କନ୍ୟା ତଥା ମନୋଭବ ଏବଂ ସଂଯୋଗ ଏଇ ଦୁଇ ପୁତ୍ର ହେଲେ । ରତିର ବାମନେତ୍ରରୁ ଯେଉଁ ଆନନ୍ଦାଶ୍ରୁ ଜଳରେ ପଡ଼ିଥିଲା, ସେଥିରେ ଗୋଟିଏ ପଦ୍ମଫୁଲ ସୃଷ୍ଟି ହେଲା ଏବଂ ସେଇ ପଦ୍ମରୁ ସୁନ୍ଦର ଅଙ୍ଗ ଥିବା ପ୍ରାଣୀଙ୍କୁ ନିଜ ଦର୍ଶନରେ ସୁଖ ଦେଉଥିବା ସବୁ ଇନ୍ଦ୍ରିୟ ଏବଂ ମନକୁ ଆକର୍ଷିତ କରୁଥିବା ଏହି ସ୍ତ୍ରୀ ସୃଷ୍ଟି ହେଲା । ଏ ରତିର କନ୍ୟା "ଅଶ୍ରୁ-ବିନ୍ଦୁମତୀ ।" ପ୍ରେମରେ ତଥା ଶୋକରେ ତୁରନ୍ତ ଏହାର ନେତ୍ରରୁ ଅଶ୍ରୁ ଝରିଯାଏ । ଏହା ହିଁ ଏଇ ସୁନ୍ଦରୀ ଯୁବତୀର ପରିଚୟ । ହେ ରାଜା ! ମୁଁ ମୋର ସଖୀର ପରିଚୟ ଆପଣଙ୍କୁ ଦେଲି । ବର୍ତ୍ତମାନ ଆପଣ ଆଉ କ'ଣ ପଚାରିବାକୁ ଚାହୁଁଛନ୍ତି ?"

ମହାରାଜ ଯଯାତି କହିଲେ—"ଦେବି ! ତୁମେ ତ ତୁମ ସଖୀର ପରିଚୟ ଦେଲ କିନ୍ତୁ ନିଜ ପରିଚୟ ଦେଲନାହିଁ । ତୁମେ କିଏ ? ଏଇ ସୁନ୍ଦରୀ ସହିତ କାହିଁକି ରହିଛ ?"

ବିଶାଳା କହିଲା—"ହେ ରାଜା ! ମୋର କ'ଣ ପରିଚୟ ? ମୁଁ ଲୋକପାଳ ବରୁଣଙ୍କର କନ୍ୟା ବିଶାଳା । ମୋର ଏବଂ ଏହାର ବନ୍ଧୁତା ସ୍ୱାଭାବିକ । ଏହାର ସ୍ନେହବଶରେ ମୁଁ ଏହା ନିକଟରେ ରହିଛି ।"

ରାଜା କହିଲେ—"ତୁମ ସଖୀର ଏଠାରେ ରହିବାର କାରଣ କ'ଣ ?"

ବିଶାଳା କହିଲା—"ମହାରାଜ ! ଆପଣ ତ ଜାଣିଛନ୍ତି ଏ ଏବେ ଯୁବତୀ ହୋଇସାରିଲାଣି, କେଉଁ ଜୀବନସଙ୍ଗୀ ଅନ୍ୱେଷଣରେ ଅଛି । ଯୋଗ୍ୟ ପତି ମିଳିବା ପରେ ଏ ତାଙ୍କର ଜୀବନସଙ୍ଗିନୀ ଧର୍ମପତ୍ନୀ ହୋଇଯିବ । ସଂସାର ରୂପକ ପଥକୁ ଜୀବନ ରୂପକ ରଥ ଦ୍ୱାରା ଏକାକୀ ଅତିକ୍ରମ କରିବା କଠିନ । ପୁରୁଷକୁ ସ୍ତ୍ରୀର ତଥା ସ୍ତ୍ରୀକୁ ପୁରୁଷର ପ୍ରତୀକ୍ଷା ରହିଥାଏ । ଯେପରି ଗୋଟିଏ ପକ୍ଷ ଦ୍ୱାରା ପକ୍ଷୀ ଉଡ଼ିପାରେନା, ଗୋଟିଏ ଚକ ଦ୍ୱାରା ରଥ ଚାଲିପାରେ ନାହିଁ, ଏକ ଅରଣି ଦ୍ୱାରା ଅଗ୍ନି ସୃଷ୍ଟି ହୋଇ-ପାରେ ନାହିଁ, ଏକ ହାତରେ ତାଳି ବାଜେ ନାହିଁ ସେହି ପ୍ରକାର ଏକାକୀ ଜୀବନ ନିର୍ବାହ କରିବା ମଧ୍ୟ ଅତ୍ୟନ୍ତ କଠିନ ହୋଇପଡ଼େ । ତେଣୁ ଏ ଯୋଗ୍ୟ ବର ନିମନ୍ତେ ପ୍ରାର୍ଥନା କରୁଅଛି ।"

ରାଜା ଉତ୍ସୁକତା ସହ ପଚାରିଲେ—"ତୁମର ଏଇ ସଖୀ କେଉଁ ପ୍ରକାରର ପତି ଚାହୁଁଛନ୍ତି ?"

Digitized by srujanika@gmail.com

ବିଶାଳା କହିଲା—"ସେ ବୃହସ୍ପତି, ମୋର ପତି ସଦସ୍ୟ ସୁହୃଦ, ସୁବୁଦ୍ଧି, ସୁପ୍ରିୟ ତଥା ସମସ୍ତ ସଦ୍‌ଗୁଣଯୁକ୍ତ ପୁରୁଷ ହୋଇ ଥାଆନ୍ତୁ । ତାଙ୍କର ଯୌବନ ସ୍ଥିର ହେତୁ ସେ ପରମ ପରାକ୍ରମୀ, ମହାନ ତେଜସ୍ୱୀ, ବିପୁଳ ଐଶ୍ୱର୍ଯ୍ୟ-ସମ୍ପନ୍ନ, ପ୍ରିୟଦର୍ଶନ, କାମଦେବଙ୍କ ପରି ସୁନ୍ଦର, କୁଳୀନ, ରତିପ୍ରିୟ ଏବଂ ଧର୍ମ ପରାୟଣ ହୋଇଥାଆନ୍ତୁ ।"

ରାଜା କହିଲେ—"ଦେବି ! ଯଦି ମୋତେ ତୁମର ସଖୀ ସ୍ୱୀକାର କରନ୍ତି ତେବେ ମୁଁ ମୋ ନିଜକୁ ଅତ୍ୟନ୍ତ ସୌଭାଗ୍ୟଶାଳୀ ମନେକରିବି । ମୁଁ ମୋର ପୁରୁଷାର୍ଥଯୋଗେ ପୃଥିବୀ ଉପରେ ହିଁ ବୈକୁଣ୍ଠ ସ୍ଥାପନା କରିଛି ! ପ୍ରଜାମାନେ ମୋତେ ପିତାତୁଲ୍ୟ ମନେକରନ୍ତି । ମୁଁ ସଦାସର୍ବଦା ଦୀନଦୁଃଖୀଙ୍କ ଦୁଃଖ ଲାଘବ କରିବାରେ ନିଯୁକ୍ତ ଥାଏ ତଥା ଗୁରୁଜନମାନଙ୍କୁ ଆଦର କରିଥାଏ । ମୁଁ ସପ୍ତଦ୍ୱୀପା ଏବଂ ବସୁମତୀକୁ ନିଜ ବାହୁବଳରେ ଲାଭ କରିଅଛି । ମୋର ଐଶ୍ୱର୍ଯ୍ୟ ଦେଖି ଦେବରାଜ ଇନ୍ଦ୍ର ମଧ୍ୟ ମୋତେ ଈର୍ଷା କରୁଛନ୍ତି । ଯଦି ତୁମର ସଖୀ ମୋତେ ନିଜର ପତିରୂପେ ସ୍ୱୀକାର କରନ୍ତି ତେବେ ମୋର ଜୀବନ ସଫଳ ହୋଇଯିବ ।"

ବିଶାଳା କହିଲା—"ମହାରାଜ ! ଆପଣଙ୍କ ନିକଟରେ ସବୁକିଛି ଅଛି; କିନ୍ତୁ ଗୋଟିଏ ଦୋଷ ଅଛି ଯେଉଁ କାରଣରୁ ମୋର ସଖୀ ଆପଣଙ୍କୁ ପତିରୂପେ ସ୍ୱୀକାର କରି ପାରିବେ ନାହିଁ ।"

ରାଜା କହିଲେ—"କ'ଣ ଦୋଷ ମୋ ପାଖରେ ରହିଲା ? କହିଲେ ମୁଁ ତାହା ଦୂର କରିବାକୁ ଚେଷ୍ଟା କରିବି ।"

ବିଶାଳା କହିଲା—"ମହାରାଜ ! ଆପଣଙ୍କ ଶରୀରରେ ବୃଦ୍ଧାବସ୍ଥା ପ୍ରବେଶ କରିଛି । ସ୍ତ୍ରୀମାନଙ୍କ ନିକଟରେ ବୃଦ୍ଧ ପୁରୁଷ ପ୍ରିୟ ହୋଇ ପାରନ୍ତି ନାହିଁ । ବୃଦ୍ଧାବସ୍ଥା ଯାହା ଶରୀରରେ ପ୍ରବେଶ କରେ ତା'ର ତେଜ, ବଳ, ବୀର୍ଯ୍ୟ ଏବଂ ଭୋଗ ଶକ୍ତି ନଷ୍ଟ ହୋଇଯାଏ । ଭୋଗଶକ୍ତି ତ ଯୁବାବସ୍ଥାରେ ହିଁ ସର୍ବାଧିକ ଥାଏ । ଆପଣ ଯଦି ଯୁବକ ହୋଇଥାଆନ୍ତେ ମୋର ସଖୀ ଆପଣଙ୍କୁ ଆନନ୍ଦରେ ସ୍ୱୀକାର କରିଥାଆନ୍ତା ।"

ରାଜା କହିଲେ—"ଦେବି ! ବୃଦ୍ଧାବସ୍ଥା ତ ମୋତେ ଶୁକ୍ରାଚାର୍ଯ୍ୟଙ୍କର ଅଭିଶାପ ଦ୍ୱାରା ପ୍ରାପ୍ତ ହୋଇଛି । ମୋତେ ସେ ହିଁ ପୁଣି ବରଦାନ କରିଛନ୍ତି ଯେ ମୁଁ ଯାହାଠାରୁ ଚାହିଁବି ମୋର ବୃଦ୍ଧାବସ୍ଥା ବଦଳରେ ତା'ର ଯୁବାବସ୍ଥା ନେଇ ପାରିବି ।"

ବିଶାଳା କହିଲା—"ଯଦି ଏପରି କଥା ଅଛି ତେବେ ଆପଣଙ୍କର ପୁତ୍ରମାନଙ୍କ ମଧ୍ୟରୁ କାହା ସହିତ ଆପଣଙ୍କ ବୃଦ୍ଧାବସ୍ଥା ବଦଳ କରି ତା'ଠାରୁ ତା'ର ଯୁବାବସ୍ଥା ନେଇ ଆସନ୍ତୁ । ତା'ପରେ ଏ ଆପଣଙ୍କୁ ନିଜ ପତି ରୂପେ ସ୍ୱୀକାର କରିନେବ ଏବଂ ଆପଣ ଆନନ୍ଦିତ ସହିତ ତାକୁ ନେଇ ସୁଖ ଉପଭୋଗ କରିବେ ।"

Digitized by srujanika@gmail.com

ରାଜା କହିଲେ—"ଭଲ କଥା, ମୁଁ ଯାଇ ମୋର ବୃଦ୍ଧାବସ୍ଥା ନିଜ ପୁତ୍ରଙ୍କୁ ଦେଇ ଦେବ । ଯେ ମୋର ଆଜ୍ଞାର ପାଳନ ନ କରିବ ମୁଁ ତାକୁ କ୍ରୋଧରେ ଶାପ ଦେବ । ଯେ ମୋ କଥା ରକ୍ଷା କରି ମୋ ବୃଦ୍ଧାବସ୍ଥା ଗ୍ରହଣ କରିବ ମୁଁ ତାକୁ ମୋର ଉତ୍ତରାଧିକାରୀ କରିବ ।"

ଏହାକହି ରାଜା ସେଇ ଦୁଇଜଣଙ୍କ ଠାରୁ ବିଦାୟ ନେଇ ନିଜ ପୁରକୁ ଚାଲିଗଲେ । ସୂତ ମୁନି କହୁଛନ୍ତି—"ମୁନିମାନେ ! ହୃଦୟରେ ଯେତେବେଳେ କାମନା ଜାଗ୍ରତ ହୋଇପଡ଼େ ସେତେବେଳେ ମନ ସେଇଥିରେ ହିଁ ବାନ୍ଧି ହୋଇଯାଏ । କାମନା ପୂର୍ତ୍ତି ନ ହେଲେ କ୍ରୋଧଜାତ ହୁଏ । କ୍ରୋଧରୁ ଶାପ ଉତ୍ପନ୍ନ ହୁଏ । ଜରାରେ କାମନାର ବୃଦ୍ଧି ହୋଇଥାଏ ଏବଂ କାମନା ହିଁ ସବୁ ଦୋଷ ଅପରାଧର ସୃଷ୍ଟି କାରିଣୀ ଜନନୀ । ରାଜା ନିଜ ବୃଦ୍ଧାବସ୍ଥା ନିଜ ପୁତ୍ରମାନଙ୍କୁ ଦେବା ନିମନ୍ତେ ଉତ୍ସୁକ ହୋଇ ପଡ଼ିଲେ ।"

## ଛପ୍ପୟ

ମୁନି ପ୍ରସନ୍ନ ପୁନି ଭୟେ ଭୂପ ତୈଂ ବୋଲେ ବାନୀ ।  
ନୃପବର ! ମନ କି ବାତ ତୁହ୍ମାରୀ ସବ ହେୈଂ ଜାନୀ ।।  
ଜାଓ ଅପନୀ ଜରା ବଦଲି ତନୟନି ତେ ଲେଓ ।  
ସୁତ କୋ ଯୌବନ ପାଇ ଯଥାରୁଚି ବିଷୟନି ସେଓ ।।  
ରାଜା ବୋଲେ—ଜରା କୋ, ସ୍ୱୀକାରେ ମେରେ ତନୟ ।  
ପାବୈ ସୋ ସମ୍ରାଟ-ପଦ, ଜଗ ମହଁ ଯଶ, କୀରତି ବିଜୟ ।।



Digitized by srujanika@gmail.com

## ପୁରୁ ଦ୍ୱାରା ଯଯାତିଙ୍କର ଯୌବନ ପ୍ରାପ୍ତି

ଉତ୍ତମଶ୍ଚିନ୍ତିତଂ କୁର୍ଯାତ୍ ପ୍ରୋକ୍ତକାରୀ ତୁ ମଧ୍ୟମଃ ।
ଅଧମୋ ଅଶ୍ରଦ୍ଧୟା କୁର୍ଯାଦକର୍ତ୍ତୋଚରିତଂ ପିତୁଃ ॥
ଇତି ପ୍ରମୁଦିତଃ ପୁରୁଃ ପ୍ରତ୍ୟଗୃହ୍ଣଜ୍ଜରାଂ ପିତୁଃ ।
ସୋଽପି ତଦ୍‌ବୟସା କାମାନ୍ ଯଥାବଜ୍ଜୁଜୁଷେ ନୃପ ॥ *

( ଶ୍ରୀ-ଭା-ସ୍କ ୯-୧୮-ଅ ୪୪-୪୫ ଶ୍ଳୋ)

### ଛପ୍ପୟ

ଏବଂ ସବୁ ମୁନି କହୀ ବହୁଁସି ନୃପ ପୁର ମହଁ ଆୟେ ।
ପାଁଶ୍ୱେ ପଂକରେ ପୂର୍ତ୍ତ ପ୍ରେମ ତେଂ ପାସ ବୁଲାୟେ ॥
ଶୁକ୍ରଶାପ କ ବାତ ବତାଇ ଯୌବନ ମାଁଗେଂ ।
ଯଦୁ, ଅନୁ, ତୁର୍ବସୁ, ଦ୍ରୁହ୍ୟୁ, ସୁନତ ବଚ ସବ ସମ ଲଗେଂ ।
ଗୃହେ ହୀ ପିତୁ-ବଚନ ସୁନି, ବୟ ଦେବେ ତେଂ ନଟି ଗୟେ
ଛାତ୍ର-ଧର୍ମ ତେଂ ଶାପ ଦୈ, ଭ୍ରଷ୍ଟ ଭୂପ ନେ କର ଦୟେ ।

ଏ ସଂସାର ସ୍ୱାର୍ଥରେ ପରିପୂର୍ଣ୍ଣ । ସମସ୍ତ ସମ୍ବନ୍ଧ ସ୍ୱାର୍ଥ ଉପରେ ହିଁ ସୃଷ୍ଟି । ଆମେ ସ୍ୱାର୍ଥର ବଶୀଭୂତ ହୋଇ ଅନ୍ୟଠାରୁ ନ ମାଗିବା ଯୋଗ୍ୟ ପ୍ରିୟରୁ ପ୍ରିୟ ବସ୍ତୁ

---

* ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜା ! ଯଯାତିଙ୍କର ଯୌବନ ଅବସ୍ଥା ମାଗିବା ହେତୁ ତାଙ୍କର ସର୍ବ କନିଷ୍ଠ ପୁତ୍ର ପୁରୁ କହିଲେ—ଯେଉଁ ପୁତ୍ର ପିତାଙ୍କ ଚିନ୍ତା କରିଥିବା କାର୍ଯ୍ୟକୁ କହିବା ଆଗରୁ କରି ଦେଇଥାଏ ସେ ଉତ୍ତମ ପୁତ୍ର, କହିବା ପରେ ଯେ କରେ ସେ ଅଧମ ଏବଂ କହିବା ପରେ ମଧ୍ୟ ଯେ କରେ ନାହିଁ ସେ ପିତାଙ୍କର ମଳମୂତ୍ର ସହ ସମାନ ଅଟେ । ଏହା କହି ସେ ଆନନ୍ଦ ମନରେ ନିଜ ପିତାଙ୍କ ବୃଦ୍ଧାବସ୍ଥା ଗ୍ରହଣ କରି ନେଲେ । ମହାରାଜା ଯଯାତି ମଧ୍ୟ ପୁତ୍ରର ଯୌବନ ପ୍ରାପ୍ତି କରି ଯଥେଷ୍ଟ ବିଷୟଭୋଗ ଉପଭୋଗ କରିବାକୁ ଲାଗିଲେ ।”

Digitized by srujanika@gmail.com

ମଧ୍ୟ ମାଗି ଦେଉଛେ । ଯାହାଦ୍ୱାରା ଆମେ ଯେଉଁ ବସ୍ତୁ ମାଗୁଛୁ ତାକୁ ଦେବାଦ୍ୱାରା ଦେଉଥିବା ବ୍ୟକ୍ତିର ଯେଉଁ କଷ୍ଟ ହେବ ତାହା ମାଗିବା ଲୋକ ଅନୁଭବ କରି ପାରିବ ନାହିଁ । କାରଣ ଶରୀରପାଖରେ କୌଣସି ଅପରାଧ ଦେଖା ଯାଏ ନାହିଁ । ଯାଚକ ତ ଶ୍ରେଷ୍ଠ ହୋଇଥାଏ; କିନ୍ତୁ ଯାଚକଠାରୁ ମଧ୍ୟ ଶ୍ରେଷ୍ଠ ସେ, ଯେ ବସ୍ତୁ ରହିଥିବା ସତ୍ତ୍ୱେ ତଥା ଦାନ ଦେବାର କ୍ଷମତା ଥିବା ସତ୍ତ୍ୱେ ମଧ୍ୟ ଯେ 'ନାଁ, ପଦ କହିଥାଏ । ଯେ ନିଜ ଶରୀର ବିନିମୟରେ ମଧ୍ୟ ନିଜ ମାତାପିତାଙ୍କର ଇଚ୍ଛାପୂର୍ଣ୍ଣ କରିଥାଏ, ସଂସାରରେ ସେ ହିଁ ସତ୍ପୁତ୍ର ଭବେ ଯଶସ୍ୱୀ ହୋଇଥାଏ ।

ସୂତ ମୁନି କହୁଛନ୍ତି—"ମୁନିମାନେ ! ମହାରାଜ ଘରକୁ ଫେରି ନିଜର ପାଞ୍ଚ ପ୍ରିୟ ପୁତ୍ରଙ୍କୁ ଶ୍ରଦ୍ଧା ସହିତ ନିଜ ପାଖକୁ ଡାକିଲେ । ସର୍ବପ୍ରଥମେ ସେ ନିଜ ବଡ଼ ପୁତ୍ର ଯଦୁକୁ କହିଲେ—"ପୁଅ ! ମୁଁ ତୋଠାରୁ ଗୋଟିଏ ଜିନିଷ ମାଗିବି । ତୁ ମୋତେ ଦେବୁ ?"

ଯଦୁ କହିଲେ—"ପିତା ! ମୋର ଅଛି କଅଣ ? ସବୁ ତ ଆପଣଙ୍କର ? ଆଜ୍ଞା କରନ୍ତୁ ।"

ରାଜା କହିଲେ—"ଦେଖ ପୁଅ ! ତୁମର ଅଜା ମୋତେ ବୃଦ୍ଧାବସ୍ଥାର ଅଭିଶାପ ଦେଇଛନ୍ତି ।"

ଯଦୁ କହିଲା—"ହଁ ତେବେ ମୋତେ ସେଥିପାଇଁ କ'ଣ କରିବା ପାଇଁ ପଡ଼ିବ ? ଯଦି ମୋତେ କୌଣସି ଯନ୍ତ୍ର, ମନ୍ତ୍ର, ଔଷଧ କିମ୍ବା ଅନ୍ୟ କୌଣସି ବସ୍ତୁ କେଉଁଠାରୁ ଆଣିବାପାଇଁ ପଡ଼ିବ ତେବେ ଆଜ୍ଞା ଦିଅନ୍ତୁ ।"

ରାଜା କହିଲେ—"ପୁଅ ! ଏଇ ଜରା ଏ ସବୁ ଉପାୟ ଦ୍ୱାରା ଯିବାବାଲା ନୁହଁ । ଏହା ଯୌବନାବସ୍ଥାସହ ବଦଳ କରାଯାଇପାରେ । ତୁ ମୋ'ର ଶରୀରରୁ ଉତ୍ପନ୍ନ ହୋଇଛୁ, ତୁ ମୋର ସବୁ ପୁତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତୁ ତୋର ଯୌବନାବସ୍ଥାକୁ ମୋର ଜରାବସ୍ଥାସହ ବଦଳ କରିଦେ ।"

ଯଦୁ ଇତସ୍ତତଃ ହୋଇ କହିଲା—"ପିତା ଆପଣ ଏପରି କାହିଁକି କହୁଁଛନ୍ତି ?"

ଯଯାତି ସ୍ନେହସହକାରେ କହିଲେ—"ଦେଖ ପୁଅ ! ତୋର ଯୌବନାବସ୍ଥା ପ୍ରାପ୍ତକରି ତା' ଦ୍ୱାରା ମୁଁ କିଛି ବର୍ଷ ନିମନ୍ତେ ଅଧିକ ବିଷୟଭୋଗ କରିବି ।"

ଏହାଶୁଣି ଯଦୁ ବିନୀତ ଭାବରେ କହିଲା—"ପିତା ! ଆପଣ ଭାବନ୍ତୁ, ଯେତେବେଳଯାଏ ମନୁଷ୍ୟ ବିଷୟସୁଖ ଅନୁଭବ କରିବ ନାହିଁ ସେତେବେଳଯାଏ

Digitized by srujanika@gmail.com

ତା' ନିକଟରୁ ସେ ସମ୍ବନ୍ଧରେ ବିରକ୍ତ ମଧ୍ୟ ହୋଇପାରିବ ନାହିଁ । ବୃଦ୍ଧାବସ୍ଥାରେ ବିଷୟଭୋଗ ସବୁ ଭଲଭାବେ ହୋଇପାରିବ ନାହିଁ । ବୁଢ଼ା ମଣିଷର ରୂପବେଶ ବିକୃତ ହୋଇଯାଏ । ନିଶଦାଢ଼ୀ ସବୁ ଧଳା ହୋଇଯାଏ । ଗାଲ ପଶି ମୁହଁ ହାଡ଼ୁଆ ହୋଇଯାଏ । ମୁଣ୍ଡ ହଲିବାକୁ ଲାଗେ, ବୁଢ଼ା ମାଙ୍କଡ଼ ପରି ଚେହେରା ହୋଇଯାଏ । ଅଙ୍ଗ ଶିଥିଳ ହୋଇଯାଏ, ଚର୍ମ ଶିକୁଡ଼ି ଯାଏ, ଦାନ୍ତ ଭାଙ୍ଗି ପାକୁଆପାଟି ହୋଇଯାଏ । ଶରୀର ଶୁଦ୍ଧ ଆଚରଣ ହୁଏନାହିଁ । ତେଣୁ ମୋତେ ଏଥିପାଇଁ କ୍ଷମା କରନ୍ତୁ ।"

ତେଣୁ ରାଜା ତା'ପରେ ଦ୍ୱିତୀୟ ପୁତ୍ର ତୁର୍ବସୁଙ୍କୁ କହିଲେ—"ପୁଅ ! କ'ଣ ତୁ ମୋତେ ତୋର ଯୁବାବସ୍ଥା ଦେଇପାରିବୁ ?"

ତୁର୍ବସୁ କହିଲା—"ପିତା ! ବର୍ତ୍ତମାନଯାଏ ତ ମୁଁ ସଂସାରର କୌଣସି ସୁଖ ଭୋଗ କରି ନାହିଁ । ବଡ଼ ବଡ଼ ଯୁଦ୍ଧରେ ମଧ୍ୟ ମୁଁ ବଳ ପ୍ରଦର୍ଶନ କରି ନାହିଁ । ବୃଦ୍ଧବସ୍ଥା ଗ୍ରହଣ କରିବା ଦ୍ୱାରା ମୋର ରୂପ କୁରୂପ ହୋଇଯିବ, ବଳବୀର୍ଯ୍ୟ ନଷ୍ଟ ହୋଇଯିବ, ଶକ୍ତି କ୍ଷୀଣ ହୋଇଯିବ, ଭୋଗ କରିବାର ସାମର୍ଥ୍ୟ ମଧ୍ୟ ରହିବ ନାହିଁ, ତେଣୁ ମୁଁ ଅସମୟରେ ବୃଦ୍ଧ ହୋଇଯିବି । ଅତଏବ ମୁଁ ଏହା ଗ୍ରହଣ କରିବାକୁ ଚାହୁଁ ନା ।"

ତା'ପରେ ମହାରାଜ ଯଯାତି ଶର୍ମିଷ୍ଠାର ପୁତ୍ର ଦ୍ରୁହ୍ୟୁଙ୍କୁ କହିଲେ—"ପୁଅ ! ତୁ ମୋତେ ତୋର ଯୁବାବସ୍ଥା ଦେଇ ମୋର ବୃଦ୍ଧାବସ୍ଥା ଗ୍ରହଣ କରି ପାରିବୁ ?"

ଏହାଶୁଣି ଦ୍ରୁହ୍ୟୁ କହିଲେ—"ପିତା ! ବୃଦ୍ଧାବସ୍ଥା ଅନେକ ଦୋଷ । ପାଦରେ ଚାଲିହୁଏ ନାହିଁ । ହାତୀ, ଘୋଡ଼ା, ରଥ ଇତ୍ୟାଦି ବାହାନ ଉପରେ ଚଢ଼ିଲେ ମଧ୍ୟ ଶୀଘ୍ର କ୍ଳାନ୍ତ ଆସିଯାଏ । ଦାନ୍ତ ନ ରହିବା ଦ୍ୱାରା କୌଣସି କଠିନ ବସ୍ତୁ ଖାଇହୁଏ ନାହିଁ କିମ୍ବା ଶବ୍ଦ ଉଚ୍ଚାରଣ କରିହୁଏ ନାହିଁ । ତେଣୁ ମୁଁ ଆପଣଙ୍କର ବୃଦ୍ଧାବସ୍ଥା ଗ୍ରହଣ କରିବା ନିମନ୍ତେ ସମ୍ପୂର୍ଣ୍ଣ ଅସମର୍ଥ ।"

ତା'ପରେ ରାଜା ନିଜ ଚତୁର୍ଥ ପୁତ୍ର ଅନୁଙ୍କୁ କହିଲେ—"ପୁଅ ! ତୁ ମୋତେ ତୋର ଯୁବାବସ୍ଥା ଦେଇ ପାରିବୁ ?"

ଅନୁ କହିଲା—"ପିତା ! ମୁଁ ତ ବର୍ତ୍ତମାନ ପର୍ଯ୍ୟନ୍ତ ସଂସାରର କୌଣସି ଭୋଗାଭୋଗ କରିନାହିଁ । ଅଗ୍ନିହୋତ୍ର, ଦାନ, ଧର୍ମ, ତଥା ବଡ଼ ବଡ଼ ଯଜ୍ଞର ଅନୁଷ୍ଠାନ ମଧ୍ୟ ମୁଁ କରି ନାହିଁ । ବୃଦ୍ଧାବସ୍ଥାରେ ସବୁକାର୍ଯ୍ୟ କରିବାପାଇଁ ଆଳସ୍ୟ ଆସିଯାଏ । ପବିତ୍ରତା-ଅପବିତ୍ରତାର ମଧ୍ୟ ସେତେ ଧ୍ୟାନ ରହେ ନାହିଁ । ଜୀବନ ଅନ୍ୟର

Digitized by srujanika@gmail.com

ଅଧୀନ ହୋଇଯାଏ । ତେଣୁ ମୋର ଏପରି ସାମର୍ଥ୍ୟ ନାହିଁ ଯେ, ମୁଁ ଆପଣଙ୍କର ବୃଦ୍ଧାବସ୍ଥା ଗ୍ରହଣ କରି ପାରିବି ।"

ରାଜା ନିଜର କନିଷ୍ଠ ପୁତ୍ର ପୁରୁଙ୍କୁ ଡାକି କହିଲେ—"ଦେଖ୍ ପୁଅ ! ତୁ ମୋର ସବୁଠାରୁ ଆଦରର ପୁଅ । ଏମାନେ ସମସ୍ତେ ଧୂର୍ତ୍ତ, ମୋର ଆଜ୍ଞା ପାଳନ କରୁ ନାହାନ୍ତି । ମୁଁ ଏକ ସହସ୍ର ବର୍ଷ ପର୍ଯ୍ୟନ୍ତ ତୋର ଯୁବାବସ୍ଥା ଦ୍ୱାରା ସାଂସାରିକ ସୁଖ ଆନନ୍ଦର ଭୋଗ କରିବା ପାଇଁ ଚାହୁଁଛି । ପରେ ମୁଁ ପୁଣି ତୋ'ର ଯୌବନ ଅବସ୍ଥା ତୋତେ ଫେରାଇ ଦେବି । ଆଉ ତୋର ଅନ୍ୟ ଭାଇମାନଙ୍କୁ ତ ମୁଁ ନିଶ୍ଚୟ ଅଭିଶାପ ଦେବି ।"

ପୁରୁ ହାତଯୋଡ଼ି କହିଲେ—"ପିତା ! ଆପଣ ଏପରି କଥା କାହିଁକି କହୁଛନ୍ତି ? ମୋତେ ପଚାରିବାର ବା କଅଣ ଆବଶ୍ୟକତା ଅଛି ? ଆପଣ ମୋର ଏହି ଶରୀରର ସର୍ବଥା ସ୍ୱାମୀ ଅଟନ୍ତି । ହେ ଦେବ ! ସଂସାରରେ ପିତାଙ୍କଠାରୁ ବଳି ଉପକାରୀ ଆଉ କିଏ ହୋଇ ପାରିବ ? ପିତାଙ୍କ ଉପକାରର ପ୍ରତିଦାନ ପୁତ୍ର ଶହେଥର ଜନ୍ମ ନେଇ ମଧ୍ୟ ଦେଇ ପାରେ ନାହିଁ । ଆମକୁ ତ ଆପଣଙ୍କର ମନକଥା ବୁଝି ଆପଣଙ୍କର ବାଞ୍ଛିତ କାର୍ଯ୍ୟ କରିବା ଉଚିତ । ଆପଣ ତିନି ପ୍ରକାରର ପୁତ୍ରମାନଙ୍କ ମଧ୍ୟରୁ ମୋତେ ଅଧମ କରିଦେଲେ ।"

ଯଯାତି ପଚାରିଲେ—"ତିନି ପ୍ରକାରର ପୁତ୍ର କିପରି କିଏ କିଏ ? ଏ କଥା ମୋତେ ବୁଝାଇଦେ ।"

ପୁରୁ କହିଲେ—"ପିତା ! ଯିଏ କହିବା ପୂର୍ବରୁ ପିତାଙ୍କର ମନୋଭାବ ବୁଝି ତାଙ୍କର ଇପ୍ସିତ କାର୍ଯ୍ୟ ଶ୍ରଦ୍ଧା ସହିତ କରିଦିଏ ସେ ଉତ୍ତମ ପୁତ୍ର । ପିତାଙ୍କ କହିବା ପରେ ଶ୍ରଦ୍ଧାହୀନ ଭାବରେ କେବଳ କରିବାକୁ ହେବବୋଲି ଯେ ବାଧ୍ୟ ହୋଇ କରିଥାଏ ସେ ଅଧମ ପୁତ୍ର । ଆଉ ଯେ ପିତାଙ୍କ କହିବା ପରେ ମଧ୍ୟ କିଛି କରେନାହିଁ, ସେ ପୁତ୍ର କଦାପି ନୁହେଁ । ତେଣୁ ହେ ପିତା ! ଆପଣ ମୋତେ ଯେଉଁ ପ୍ରକାରର ଆଜ୍ଞା ଦେବେ ମୁଁ ତାହା ହିଁ କରିବି । ଆପଣ ଏକ ସହସ୍ର ବର୍ଷ ପାଇଁ କ'ଣ କହୁଛନ୍ତି, ମୁଁ ତ ସାରାଜୀବନ ପାଇଁ ଆପଣଙ୍କୁ ମୋର ଯୌବନାବସ୍ଥା ବଦଳ ଦେବାପାଇଁ ତତ୍ପର ହୋଇ ରହିଛି ।" ଏହା କହି ପୁରୁ ସଂକଳ୍ପପୂର୍ବକ ନିଜ ଯୁବାବସ୍ଥା ପିତାଙ୍କୁ ଦେଇଦେଲେ ଏବଂ ଶୁକ୍ରାଚାର୍ଯ୍ୟଙ୍କୁ ସ୍ମରଣ କରି ରାଜା ତାହା ଗ୍ରହଣ କରି ନେଲେ ।

ରାଜା ସନ୍ତୁଷ୍ଟ ହୋଇ ପୁରୁଙ୍କୁ ଆଶୀର୍ବାଦ ଦେଲେ—"ତୁମେ ମୋର ରାଜ୍ୟର ପୂର୍ଣ୍ଣ ଅଧିକାରୀ ହୁଅ । ସମ୍ରାଟ ପଦ ତୁମକୁ ହିଁ ପ୍ରାପ୍ତ ହେଉ । ତୁମେ ଯଶସ୍ୱୀ, ତେଜସ୍ୱୀ

Digitized by srujanika@gmail.com

ତଥା ଦୀର୍ଘାୟୁ ହୁଅ । ଏ ବଂଶ ତୁମର ନାମରେ ସଂସାରରେ ପ୍ରସିଦ୍ଧ ହେଉ ।" ଏହିପରି ପୁରୁଙ୍କୁ ବରଦାନ ଦେଇ ରାଜା ଅନ୍ୟ ଚାରିପୁତ୍ରଙ୍କୁ କ୍ରୁଦ୍ଧ ହୋଇ ଶାପ ଦେଲେ । ସେ ଯଦୁଙ୍କୁ ଅଭିଶାପ ଦେଇ କହିଲେ—"ଯାଆ, ତୋ ବଂଶର କେହି ରାଜ୍ୟର ଅଧିକାରୀ ହେବେ ନାହିଁ ।"

ଯଦୁ ହାତଯୋଡ଼ି କହିଲେ—ପିତା ! ଆପଣ ମୋତେ ଏପରି ଦାରୁଣ ଅଭିଶାପ କାହିଁକି ଦେଉଛନ୍ତି ? ମୁଁ ଆପଣଙ୍କର ଜ୍ୟେଷ୍ଠ ପୁତ୍ର, ଅସମର୍ଥ ହୋଇ ମୁଁ ଆପଣଙ୍କ ଆଜ୍ଞା ପାଳନ କରି ପାରିଲି ନାହିଁ ।"

ଏହା ଶୁଣି ମହାରାଜ ଯଯାତି କହିଲେ—"ହଉ, ବତ୍ସ ଭଗବାନଙ୍କ କୃପାରୁ ତୋର ବଂଶଜ ମଧ୍ୟ ରଜା ହେବେ ଏବଂ ଯେତେବେଳେ ତୋ' ବଂଶରେ ଆନନ୍ଦକନ୍ଦ ବ୍ରଜଚନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ର ଜନ୍ମ ହେବେ, ସେତେବେଳେ ତୋ'ର ବଂଶ ବିଶୁଦ୍ଧ ହୋଇଯିବ ।"

ଏହାକହି ସେ ତୁର୍ବସୁଙ୍କୁ କହିଲେ—"ତୁ କଠୋର ଶବ୍ଦରେ ମୋତେ ତିରସ୍କାର କରିଛୁ, ତେଣୁ ତୋର ବଂଶରକ୍ଷା ହେବ ନାହିଁ । ତୁ ଅତି ସଙ୍କୀର୍ଣ୍ଣମନା, ନିଜର ଗୋତ୍ରରେ ବିବାହ କରୁଥିବା ବର୍ଣ୍ଣଶଙ୍କର ନୀଚ,କ୍ରୂର, ହିଂସ୍ର, ମାଂସଭୋଜୀ, ଗୁରୁପତ୍ନୀଗାମୀ, ମ୍ଳେଚ୍ଛ ଚଣ୍ଡାଳମାନଙ୍କର ରାଜା ହେବୁ ।" ଏହିପରି ତୁର୍ବସୁଙ୍କୁ ଅଭିଶାପ ଦେଇ ରାଜା ଦ୍ରୁହ୍ୟୁ ଆଡ଼କୁ ଅନାଇଲେ ।

ଦ୍ରୁହ୍ୟୁଙ୍କୁ ସମ୍ବୋଧନ କରି ରାଜା କହିଲେ—"ଦ୍ରୁହ୍ୟୁ ! ତୁ ମୋର କଥା ମାନି ନାହୁଁ, ତେଣୁ ତୋର ବଂଶଧରମାନେ ସମୁଦ୍ରପାର ଦ୍ୱୀପରେ ବିକଟ ପାର୍ବତ୍ୟ ପ୍ରଦେଶରେ ନାମମାତ୍ରକୁ ରାଜା ହେବେ, ଯେଉଁଠାରେ ରଥ, ହାତୀ ଚାଲି ପାରିବେ ନାହିଁ, ଲୋକେ ପାଦରେ କିମ୍ବା ନୌକାରେ ହିଁ ଯାତ୍ରା କରିବେ । ତୋତେ କୌଣସି ପ୍ରକାରର ସାଂସାରିକ ସୁଖ ଲାଭ ହେବ ନାହିଁ ।"

ତା'ପରେ ରାଜା ଅନୁଙ୍କୁ ଅଭିଶାପ ଦେଇ କହିଲେ—"ଅନୁ ! ତୁ ବୃଦ୍ଧାବସ୍ଥାକୁ ଘୃଣାଚକ୍ଷୁରେ ଦେଖିଛୁ । ତେଣୁ ତୁ ଖୁବ୍ ଶୀଘ୍ର ବୁଢ଼ା ହୋଇଯିବୁ । ତୋର ବଂଶଧରମାନେ ଧର୍ମଭ୍ରଷ୍ଟ ହୋଇ ଅନାର୍ଯ୍ୟ ହୋଇଯିବେ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଏହି ପ୍ରକାର ରାଜା ଯଯାତି ନିଜ ଚାରିପୁତ୍ରଙ୍କୁ ଅଭିଶାପ ଦେଲେ । ପୁରୁଙ୍କର ଯୁବାବସ୍ଥା ଲାଭ କରି ରାଜା ଯୁବକ ହୋଇଗଲେ । ସେ ପୁଣି କାମସରୋବର ନିକଟକୁ ଗଲେ ଏବଂ କାମକନ୍ୟା ଅଶ୍ରୁବିନ୍ଦୁମତୀର ସଖୀ ବିଶାଳାକୁ କହିଲେ—"ବିଶାଳା ! ବର୍ତ୍ତମାନ ମୁଁ ମୋର ବୃଦ୍ଧାବସ୍ଥାକୁ

Digitized by srujanika@gmail.com

ନିଜ ପୁତ୍ରକୁ ଦେଇ ଅଛିନ୍ତି । ତେଣୁ ବର୍ତ୍ତମାନ ତୁମର ଏଇ ସଖୀ ମୋତେ ପତିରୂପେ ସ୍ୱୀକାର କରନ୍ତୁ ।”

ବିଶାଲା କହିଲା—“ହେ ରାଜା ! ଆପଣଙ୍କ ଶରୀରରୁ ଜରାବସ୍ଥା ତ ଚାଲିଗଲା ତଥାପି ଆପଣଙ୍କ ନିକଟରେ ଗୋଟିଏ ଦୋଷ ରହିଯାଇଛି । ସେଇ କାରଣରୁ ମୋର ସଖୀ ଆପଣଙ୍କୁ ବରଣ କରିପାରୁ ନାହିଁ ।”

ଆଶ୍ଚର୍ଯ୍ୟ ଚକିତ ହୋଇ ରାଜା ପଚାରିଲେ—“କ’ଣ ଅଉ ଦୋଷ ମୋ ନିକଟରେ ରହିଗଲା ?”

ବିଶାଳା କହିଲା—“ହେ ରାଜା ! ଆଗରୁ ଆପଣଙ୍କର ଦେବଯାନୀ ତଥା ଶର୍ମିଷ୍ଠା ଦୁଇ ଅତ୍ୟନ୍ତ ସୁନ୍ଦରୀ ପତ୍ନୀ ଅଛନ୍ତି । ସ୍ତ୍ରୀମାନଙ୍କ ନିମନ୍ତେ ସପତ୍ନୀ ଦୁଃଖ ସର୍ବାପେକ୍ଷା ଯନ୍ତ୍ରଣା ଦାୟକ । ତେଣୁ ମୋର ସଖୀ ଆପଣଙ୍କୁ ବରଣ କରିବ ନାହିଁ ।”

ରାଜା କହିଲେ—“ଦେବି ! ତୁମେ ଆଦୌ ଚିନ୍ତା କର ନାହିଁ । ସେ ଦୁହେଁ ତୁମର ଦାସୀ ହୋଇ ରହିବେ । ତାଙ୍କଠାରେ ମୋର ବା ଆଉ କ’ଣ ପ୍ରୟୋଜନ ? ମୋର ରାଜ୍ୟ ସମ୍ପଦ ଧନରତ୍ନ ତଥା ସ୍ତ୍ରୀ ପୁତ୍ରଙ୍କର ସ୍ୱାମିନୀ ତୁମର ସଖି ହିଁ ହେବ ।”

ଏହାଶୁଣି ବିଶାଳା ଖୁସି ହୋଇଗଲା । ତା’ପରେ ରାଜା ସେଇ କାମକନ୍ୟା ସହ ବିଧିବଦ୍ଧଭାବେ ଗାନ୍ଧର୍ବରୀତିରେ ବିବାହ କରି ନିଜ ମହଲକୁ ନେଇ ଆସିଲେ । ସେ ଯଥେଷ୍ଟ ବିଷୟଭୋଗ ଉପଭୋଗ କରିବାକୁ ଲାଗିଲେ । ତଥାପି ସେ କେବେହେଲେ ନିଜ କର୍ତ୍ତବ୍ୟରୁ ବିଚ୍ୟୁତ ହେଉ ନ ଥିଲେ ।

ମହାରାଜ ସମସ୍ତ ପ୍ରଜାମାନଙ୍କୁ ବୈଷ୍ଣବୀ ଦୀକ୍ଷା ଦେଇଥିଲେ । ସମସ୍ତେ ଶାଳଗ୍ରାମପୂଜା, ନିୟମରେ ଭାଗବତ କଥାର ସୁମଧୁର ସଂକୀର୍ତ୍ତନ, ଚନ୍ଦନ ଏବଂ ତୁଳସୀମାଳା ଧାରଣ କରିବା ସଙ୍ଗେ ସଙ୍ଗେ ଏକାଦଶୀ ବ୍ରତ ମଧ୍ୟ କରୁଥିଲେ । ରାଜା ପୁତ୍ରପରି ସେମାନଙ୍କର ସୁଖ ଦୁଃଖ ବୁଝୁଥିଲେ । ଯଥେଷ୍ଟ ଭୋଗ କରି ସାରିଥିଲେ ସୁଦ୍ଧା ଭଗବାନ୍ ଭକ୍ତିର ପ୍ରଭାବରେ ତାଙ୍କର ଇନ୍ଦ୍ରିୟଶକ୍ତି ଅକ୍ଷୁଣ୍ଣ ଥିଲା । ଦେବଯାନୀ ଏବଂ ଶର୍ମିଷ୍ଠା ରାଜାଙ୍କର କାର୍ଯ୍ୟକଳାପ ଦେଖି ଈର୍ଷା-ଦ୍ୱେଷଗ୍ରସ୍ତ ହୋଇ ରାଜାଙ୍କର ସେବା କରୁଥିଲେ । ପ୍ରାରବ୍ଧ ଫଳରେ କାମ-କନ୍ୟାର ବଶୀଭୂତ ହେବା ଫଳରେ ତାଙ୍କର ଇନ୍ଦ୍ରିୟଗଣ ଉଶୃଙ୍ଖଳ ହୋଇ ପଡ଼ିଲେ । ଯାହାକୁ ଜଣାଥାଏ ଯେ କିଛିଦିନ ମଧ୍ୟରେ ଏ ସବୁ ବିଷୟଭୋଗ ତା’ ନିକଟରୁ ଛଡ଼େଇ ନିଆହେବ, ସେ ତାହା ଅତ୍ୟନ୍ତ ଉତ୍ସୁକତାର ସହ ସେବନ କରିଥାଏ । ଗଙ୍ଗାତୀରରେ ଥିବା ବ୍ୟକ୍ତିର ଗଙ୍ଗାଜଳ ପାଇଁ ସେତେ ଉତ୍ସୁକତା ନ ଥାଏ । ମହାରାଜ ଯଯାତି ଜାଣି ଥିଲେ ଯେ ପୁରୁର

Digitized by srujanika@gmail.com

ଯୌବନାବସ୍ଥା କିଛୁଦିନ ପରେ ଫେରାଇବାକୁ ହେବ । ତେଣୁ ସେ ସହସ୍ର ବର୍ଷ ପର୍ଯ୍ୟନ୍ତ ନିରନ୍ତର ବିଷୟଭୋଗ କଲେ । ତଥାପି ସେ ତୃପ୍ତି ପାଇଲେ ନାହିଁ । ଶେଷରେ ତାଙ୍କର ବୈରାଗ୍ୟ ଆସିଗଲା । ସେ ନିଜ ଜରାବସ୍ଥା ପୁରୁଙ୍କଠାରୁ ନେଇଗଲେ ଏବଂ ଅସଂଖ୍ୟ ରାଜସୂୟ, ଅଶ୍ୱମେଧ ଇତ୍ୟାଦି ଯଜ୍ଞ କଲେ । ଅନନ୍ତ ପୁଣ୍ୟ ତାଙ୍କ ନିକଟରେ ଥିଲା । ସେଇ ପୁଣ୍ୟବଳରୁ ସୁଖଭୋଗ କରି କରି ସେ ଏହି ସଂସାରଚକ୍ରରୁ ଚିରବିଦାୟ ନେଲେ ।”

ଏହାଶୁଣି ଶୌନକ ପଚାରିଲେ—“ମହାରାଜ ଯଯାତିଙ୍କର ବୈରାଗ୍ୟ କିପରି ଆସିଲା, ସେ ସ୍ୱର୍ଗକୁ କିପରି ଗଲେ ଏବଂ କେଉଁ ଅପରାଧରୁ ତାଙ୍କୁ ପୁନଶ୍ଚ ପୃଥିବୀକୁ ଆସିବାକୁ ପଡ଼ିଲା, ଦୟା କରି ଆମକୁ ଏ ସବୁ ବୃତ୍ତାନ୍ତ ଶୁଣାନ୍ତୁ । ଏହା ଶୁଣିବାପାଇଁ ଖୁବ୍ ଭଲ ଲାଗୁଛି ।”

ଏହାର ଉତ୍ତର ଦେଇ ସୂତ ମୁନି କହିଲେ—“ଭଲ କଥା, ତେବେ ଶୁଣ, ମହାରାଜ ଯଯାତିଙ୍କର ଉତ୍ତର-ଚରିତ ଏବେ ଶୁଣାଉଛି ।”

## ଛପ୍‌ପୟ

ପୁତ୍ର ପୁରୁ ତେଂ ଭୂପ ଅନ୍ତ ମହଁ ମାଁଗେଯା ଯୌବନ ।
ସୁନି ସୁତ ବୋଲେଯା ପିତା ତୁହ୍ମାରେ ଇ ସବ ତନ ମନ ।।
ଯୋଂ କହି ଯୌବନ ଦୟୋ ଜରା ଭୂପତି କୀ ଲୀହ୍ନୀ ।
ଅତି ପ୍ରସନ୍ନ ପିତୁ ଭୟେ ହରଷି ଆଶିଷ ବହୁ ଦୀହ୍ନୀଂ ।।
ବୋଲେ ନୃପ ଗମ୍ଭୀର ହ୍ୱୈ, ପୁତ୍ର ଶବ୍ଦ କୀୟୋ ସଫଳ ।
ବନହୁ ଚକ୍ରବର୍ତ୍ତୀ ତୁମହିଁ, ଲହୋ ଜଗତ ମହଁ ଯଶ ବିପୁଳ ।।



Digitized by srujanika@gmail.com

# ମହାରାଜ ଯଯାତିଙ୍କର ବୈରାଗ୍ୟ

ଯତ୍ ପୃଥିବ୍ୟାଂ ବ୍ରୀହିଯବଂ ହିରଣ୍ୟଂ ପଶବଃ ସ୍ତ୍ରିୟଃ ।
ନ ଦୁହ୍ୟନ୍ତି ମନଃ ପ୍ରୀତିଂ ପୁଂସଃ କାମହତସ୍ୟ ତେ ॥
ନ ଯାତୁ କାମଃ କାମାନାମୁପଭୋଗେନ ଶାମ୍ୟତି ।
ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ ॥ *

(ଶ୍ରୀ ଭା ୯ ସ୍କ ୧୯ ଅ ୧୩-୧୪ ଶ୍ଳୋକ)

## ଛପ୍ପୟ

ଭୋଗ୍ୟୋଂ ସୁତ ଯୌବନ ପାଇ ଭୋଗ ଭୋଗେ ସଂସାରୀ ।
ତୋ ଭି ତୃପ୍ତି ନ ଭଇ ଶରି ଅତି ଭୟୋ ଦୁଖାରୀ ॥
ଭୟୋ ବିଷୟ-ବୈରାଗ୍ୟ ବିଚାରେଂ ନହିଁ ସୁଖ ପାୟୋ ।
ବିନ ବିଷୟନି କୋ ଦାସ ସମୟ ଅବ ବ୍ୟର୍ଥ ଗଁବାୟୋ ॥
ତୃପ୍ତି କରି ସକେଂ ବିଷୟ ୟେ, ବିଷୟଗ୍ରସ୍ତ ନର କୂଁ ନହୀଂ ।
ଶାନ୍ତ ହୋହି କହୁ ପ୍ରଜ୍ଜ୍ୱଳିତ-ଅଗ୍ନି ବିନ୍ଦୁ-ଧୃତ ତେଂ କହୀଂ ॥

ଏକ ପରେ ଯେତେ ବିନ୍ଦୁ ବଢ଼ାଇ ଚାଲିବ ସେ ସଂଖ୍ୟା ସେତିକି ବଢ଼ି ବଢ଼ି ଚାଲିବ । ସେହିପରି ସାଂସାରିକ ବ୍ୟକ୍ତି ଯେତିକି ବିଷୟ ଭୋଗ କରିବେ ତାଙ୍କର ଇଚ୍ଛା

* ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯଯାତି ନିଜ ପତ୍ନୀ ଦେବଯାନୀଙ୍କୁ କହୁଛନ୍ତି—"ପୃଥିବୀରେ ଯେତେ ଧନଧାନ୍ୟ, ଯବ, ସୁବର୍ଣ୍ଣ ତଥା ସୁନ୍ଦରୀ ସ୍ତ୍ରୀ ଅଛନ୍ତି, ସେ ସମସ୍ତେ ମିଶି ଜଣେମାତ୍ର ବିଷୟଗ୍ରସ୍ତ ପୁରୁଷଙ୍କୁ ସନ୍ତୁଷ୍ଟ କରିପାରିବେ ନାହିଁ । ବିଷୟଭୋଗ କରିବାଦ୍ୱାରା କେବେହେଲେ ବାସନା ଶାନ୍ତ ହୋଇଯାଏ ନାହିଁ । କେବଳ ଏତିକି ନୁହେଁ; ଯଜ୍ଞରେ ଘୃତ ଆହୁତି ଢାଳିଲେ ତାହା ଯେପରି ଅଧିକରୁ ଅଧିକ ଜଳିଯାଏ; ସେହିପରି ବିଷୟ ଭୋଗ କରିବାଦ୍ୱାରା ଏହାପ୍ରତି ଇଚ୍ଛା ଅଧିକରୁ ଅଧିକ ହୋଇ ଚାଲିଥାଏ ।"

Digitized by srujanika@gmail.com

ସେଥିପ୍ରତି ଅନ୍ତର୍‌ର ଅନ୍ତର ବଢ଼ି ଚାଲିଥିବ । ବିଷୟାସକ୍ତ ଏପରି ଏକ ଧନ ଯାହାର ସୁଧ ଚକ୍ରବୃଦ୍ଧି ଭାବେ ନିରନ୍ତର ବଢ଼ି ଚାଲିଥାଏ । ଯେତେବେଳେ ଇନ୍ଦ୍ରିୟଗଣ ବିଷୟଭୋଗରେ ଅଭ୍ୟସ୍ତ ହୋଇ ଯାଆନ୍ତି ସେତେବେଳେ ସେମାନେ ତାହା ବିନା ରହିପାରନ୍ତି ନାହିଁ । ମୃତ୍ୟୁ ସମୟରେ ମଧ୍ୟ ମନ ସେଇ ଭୋଗ ହୋଇଥିବା ବିଷୟ ମଧ୍ୟରେ ବୁଡ଼ି ଯାଇଥାଏ । ଯାହାର ଯେଉଁ ସଂସ୍କାର ପ୍ରବଳ ହୋଇଥିବ, ତା'ର ସେହି ସ୍ମୃତିରେ ହିଁ ପ୍ରାଣ ତ୍ୟାଗ ହେବ ଏବଂ ପର ଜନ୍ମରେ ତାହାର ପ୍ରାପ୍ତି ନିମନ୍ତେ ପ୍ରାଣୀ ପ୍ରଯତ୍ନଶୀଳ ହେବ । ତେଣୁ ସମସ୍ତ ଇନ୍ଦ୍ରିୟ ଜନ୍ୟ ବିଷୟ ସଂସାରଚକ୍ରକୁ ଅତ୍ୟନ୍ତ ଦୃଢ଼ କରି ଥାଆନ୍ତି । ବିଷୟାସକ୍ତ ହେଲେ ହିଁ ଦୁଃଖ ମିଳିଥାଏ । ବିଷୟରୁ ମୁକ୍ତି ମିଳିଲେ ପରମ ସୁଖ ଲାଭ ହୋଇଥାଏ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ମହାରାଜ ଯଯାତି ନିଜ ପୁତ୍ର ପୁରୁର ଯୌବନ ଅବସ୍ଥା ନେଇ ସମସ୍ତ ପ୍ରକାରର ସାଂସାରିକ ସୁଖଭୋଗ କରିବାକୁ ଲାଗିଲେ । ସେ ଯେତେ ଭୋଗ କରି ଚାଲିଥିଲେ ସେତିକି ଅଶାନ୍ତ ହୋଇ ଯାଉଥିଲେ । ସେ ଅନୁଭବ କଲେ ଯେ ସେ ଅଧଃପାତ ଆଡ଼କୁ ଆସୁଛନ୍ତି । ତାଙ୍କର ତା'ପରେ ଅତ୍ୟନ୍ତ ଆତ୍ମଗ୍ଲାନି ଆସିଲା ଯେ ସମ୍ପୂର୍ଣ୍ଣ ଭୂମଣ୍ଡଳର ସମ୍ରାଟ ଆଜି ସ୍ତ୍ରୀମାନଙ୍କର କ୍ରୀଡ଼ାମୃଗ ହୋଇ ଯାଇଛନ୍ତି, ବିଷୟର ଦାସ ହୋଇ ଯାଇଛନ୍ତି । ବର୍ତ୍ତମାନ ତାଙ୍କୁ ସମସ୍ତ ବିଷୟସୁଖ ଅନାକର୍ଷଣୀୟ ମନେହେଲା ।"

ଦିନେ ସେ ନିଜର ଧର୍ମପତ୍ନୀ ଦେବଯାନୀଙ୍କୁ ଡାକିଲେ । ସେ ଅତ୍ୟନ୍ତ ଶ୍ରଦ୍ଧାସହିତ ସ୍ୱାମୀଙ୍କ ନିକଟକୁ ଆସିଲା । ମହାରାଜ କହିଲେ—"ପ୍ରିୟେ ! ଆଜି ମୁଁ ତୁମକୁ ଗୋଟିଏ କାହାଣୀ ଶୁଣାଇବାକୁ ଚାହୁଁଛି ଶୁଣିବ ?"

ଦେବଯାନୀ ଆଗ୍ରହର ସହିତ କହିଲା—"ହଁ ଶୁଣାନ୍ତୁ ସ୍ୱାମୀ ! ମୋର ଅତ୍ୟନ୍ତ ସୌଭାଗ୍ୟ ଯେ ଆପଣ ମୋତେ କାହାଣୀ ଶୁଣାଇବେ ।"

ରାଜା କହିଲେ—"ହଉ ତେବେ, ମନଦେଇ ଶୁଣ । ଗୋଟିଏ ବିରାଟ ଜଙ୍ଗଲ ଥିଲା । ତାହା ଯେତିକି ଗହନ ଥିଲା ସେତିକି ମନୋହର ମଧ୍ୟ ହୋଇଥିଲା । ସେଥିରେ ଗୋଟିଏ ହୃଷ୍ଟପୁଷ୍ଟ ଛେଳି ରହୁଥିଲା । ତା'ର ବଡ଼ ବଡ଼ ଦାଢ଼ୀ ଥିଲା ତଥା ଶରୀରରେ ଅପର୍ଯ୍ୟାପ୍ତ ଶକ୍ତି ଥିଲା । ଦିନେ ସେ ବୁଲୁ ବୁଲୁ ଗୋଟିଏ ଅନ୍ଧକୂପ ନିକଟରେ ପହଞ୍ଚିଗଲା । ସେଥିରେ ଲମ୍ବା ଲମ୍ବା ଶାଗୁଆ ଦୂବଘାସ ସବୁ ହୋଇଥିଲା । ସେ ସେହି ଦୂବର ଲୋଭରେ ଯେମିତି ଭିତରକୁ ଚାହିଁଛି ତା' ଭିତରେ ଗୋଟିଏ ସ୍ତ୍ରୀ ଛେଳିକୁ ବସିଥିବାର ଦେଖିଲା । ପ୍ରିୟେ ! ତୁମେ ବୁଝିପାରୁଥିବ ଏକାନ୍ତରେ ପୁରୁଷ ଛେଳିକୁ ସ୍ତ୍ରୀ ଛେଳି ମିଳିଗଲେ ତା'ର ଦଶା କିପରି ହୋଇଥାଏ । ପ୍ରକୃତ ଛେଳିଟି ଭାବିଲା ସ୍ତ୍ରୀ ଛେଳିଟି ତା'ର ସଙ୍ଗିନୀମାନଙ୍କ ସହିତରୁ ଦୈବକ୍ରମେ କିପରି କୂପ ମଧ୍ୟରେ ପଡ଼ି ଯାଇଛି । ତେଣୁ

Digitized by srujanika@gmail.com

ତାକୁ କୌଣସିମତେ ବାହାର କରିବାପାଇଁ ପଡ଼ିବ । ସେ ନିଜ ଘର ଦ୍ୱାରା ରାସ୍ତା ବାହାର କଲା । ମାଈ ଛେଳିଟି ବଡ଼ ବଡ଼ କୁକୁଡ଼ାସକୁ ଦାନ୍ତରେ ଧରି ସେହି ରାସ୍ତା ଭିତର ଦେଇ ଉପରକୁ ବାହାରି ଆସିଲା ।

ଦେବଯାନୀ ପଚାରିଲା—"ପୁଣି କ'ଣ ହେଲା ?"

ରାଜା କହିଲେ—"ମାଈ ଛେଳି ଲଙ୍ଗ ହଲାଇ ହଲାଇ ନିଜ ଖୁରାରେ ଅଣ୍ଡିରା ଛେଳିର ଦେହକୁ ଆଉଁଶିବାରେ ଲାଗିଲା । ଅଣ୍ଡିରା ଛେଳି ମଧ୍ୟ ତା' ରୂପରେ ମୁଗ୍ଧ ହୋଇଗଲା । ମାଈ ଛେଳିଟି ତାହାକୁ ନିଜର ପତିରୂପେ ଗ୍ରହଣ କରି ତା'ପାଖରେ ଆତ୍ମସମର୍ପଣ କରିଦେଲା । ହୃଷ୍ଟପୁଷ୍ଟ, ସୁନ୍ଦର, ବଳିଷ୍ଠ ଅଣ୍ଡିରା ଛେଳିକୁ ଦେଖି ତାକୁ ଅତ୍ୟନ୍ତ ରତି ସୁଖଦାୟକ ମନେକରି ଆହୁରି ଅନେକ ମାଈ ଛେଳି ମେଁ ମେଁ ହୋଇ ତାକୁ ଘେରିଗଲେ ଏବଂ ସେମାନେ ସମସ୍ତେ ମଧ୍ୟ ତାକୁ ନିଜର ପତି ରୂପେ ଗ୍ରହଣ କଲେ । ଅଣ୍ଡିରା ଛେଳି ତ କାମୁକ ଥିଲା । ସେ ଏମାନଙ୍କ ମଧ୍ୟରେ ଏତେ ଆସକ୍ତ ହୋଇଗଲା ଯେ ନିଜର ନିଜତ୍ୱକୁ ମଧ୍ୟ ଭୁଲିଗଲା ।"

ଦେବଯାନୀ ଚିଡ଼ିଯାଇ କହିଲା—"ଇଏ କି ଗପ କହୁଛନ୍ତି ଆପଣ, ଏହାର ଅଗ ନାହିଁ କି ମୂଳ ନାହିଁ । ହେଉ ତା'ପରେ କ'ଣ ହେଲା କୁହନ୍ତୁ ।"

ରାଜା କହିଲେ—"ଆରେ ଚଞ୍ଚଳ ହୁଅ ନାହିଁ, ଶାନ୍ତିରେ ସବୁ ଶୁଣ ।"

ରାଜା କହିଲେ—"ହଁ, ଯେଉଁ ଛେଳିଟି କୂଅରୁ ବାହାରିଥିଲା ସେ କୌଣସି ଯୋଗଯୁକ୍ତ ବ୍ରାହ୍ମଣଙ୍କର ଥିଲା । ଆଗେ ବ୍ରାହ୍ମଣମାନେ ମଧ୍ୟ ଛେଳି ରଖୁଥିଲେ ! ଏଇ ଛେଳିଟି ଅତ୍ୟନ୍ତ ଆତ୍ମାଭିମାନୀ ଥିଲା । ତା'ର ବଡ଼ ଗର୍ବ ଥିଲା ଯେ ସ୍ୱାମୀର ସେ ସବୁଠାରୁ ପ୍ରିୟତମା ପତ୍ନୀ । ଦିନେ ସେ ତା'ର ସ୍ୱାମୀକୁ ଅନ୍ୟ ଏକ ଛେଳି ସହିତ ଅତ୍ୟନ୍ତ ପ୍ରେମ କରୁଥିବାର ଦେଖିଲା । ଏହା ଦେଖି ସେ ରାଗରେ ଜଳିଗଲା । ସେ ଏହାକୁ ତା' ସ୍ୱାମୀର ତା' ପ୍ରତି ବିଶ୍ୱାସଘାତକତା ବୋଲି ମନେକଲା । ସେ ଅନୁଭବ କଲା ଯେ ତା'ର ସ୍ୱାମୀ ଅତ୍ୟନ୍ତ ଇନ୍ଦ୍ରିୟାସକ୍ତ, କ୍ଷଣିକ ପ୍ରେମ କରୁଥିବା ପ୍ରତାରକ ପ୍ରେମୀ । ତେଣୁ ସେ ଅତ୍ୟନ୍ତ ଦୁଃଖିତ ହୋଇ ନିଜ ପାଳକଙ୍କ ନିକଟକୁ ଚାଲିଗଲା ।"

ଅଣ୍ଡିରା ଛେଳି ଯେତେବେଳେ ଏହା ଜାଣି ପାରିଲା ସେ ବିବ୍ରତ ହୋଇ-ପଡ଼ିଲା ଏବଂ ନିଜ ସ୍ତ୍ରୀ ପଛେ ପଛେ ସେଇ ଇନ୍ଦ୍ରିୟ-ଲୋଲୁପ ଛେଳିଟି ମେଁ ମେଁ ହୋଇ ଧାଇଁଲା । ସେ ହାତ ଯୋଡ଼ିଲା, ପାଦ ଧରିଲା, ନିଜ ଦାଢ଼ୀ ଦ୍ୱାରା ତା' ସ୍ତ୍ରୀ ଦେହରୁ ଧୂଳି ପୋଛିଲା । ତଥାପି ତା' ସ୍ତ୍ରୀ ତା' କଥା ମାନିଲା ନାହିଁ । ବାଟସାରା ସେ କଥା ମଧ୍ୟ କହିଲା ନାହିଁ ଏବଂ ଏହିପରିଭାବେ ପାଳକ ପିତାଙ୍କ ନିକଟରେ ପହଞ୍ଚି ଗଲା ।

ଦେବଯାନୀ କହିଲା—"ପୁଣି ତା'ର ପିତା କ'ଣ କହିଲେ ।"

Digitized by srujanika@gmail.com

ରାଜା କହିଲେ—"ହଁ ସେଇସ୍ଥା ତ ଶୁଣାଇବାକୁ ଯାଉଛୁ । ଛେଳକଟି ତା'ର ପିତାଙ୍କ ନିକଟରେ ନିଜ ସ୍ୱାମୀ ବିରୁଦ୍ଧରେ ଅନେକ କଥା କହିଲା । କ୍ରୋଧୀ ବ୍ରାହ୍ମଣ ଗୋଟିଏ ତୀକ୍ଷ୍ଣ ଛୁରି ବାହାର କରି ଅଣ୍ଡିରା ଛେଳାର ବଡ଼ ବଡ଼ ବୃଷଣକୁ କାଟି ଦେଲେ । ତା' ଫଳରେ ସେ ନପୁଂସକ ହୋଇଗଲା ।"

ଦେବଯାନୀ ବିରକ୍ତ ହୋଇ କହିଲା—"ହଉ ଥାଉ ସେଥିକରେ, ନିଜ ମନରୁ ବାହାର କରି କ'ଣ ସ୍ୟାଡ଼ୁ ପିଆଡ଼ୁ ଗପି ଯାଉଛ !"

ରାଜା କହିଲେ—"ହଉ ହେଲା, ଧର ମୁଁ ମନରୁ ବାହାର କରି କହୁଛି ! କ'ଣ ମନରୁ କଥା ବାହାର କରି କହିବା ଅପରାଧ ? ଏ ଯେଉଁ କବି, ଲେଖକ, ଏମାନେ ସମସ୍ତେ ମନରୁ ହିଁ ତ ସବୁକଥା ଲେଖିଛନ୍ତି । ଏହି ସୃଷ୍ଟିର ରଚନା ମଧ୍ଯ ଶ୍ରୀହରି ନିଜ ମନରୁ କରିଛନ୍ତି । ମନ ହିଁ ବନ୍ଧନ-ମୋକ୍ଷ ଆଦି ସମସ୍ତ-କାର୍ଯ୍ୟର କାରଣ ଅଟେ ।"

ଦେବଯାନୀ କହିଲା—"ଆହା ! ଆପଣ କବିତା ବି ଲେଖି ଜାଣନ୍ତି । ଏ କଥା ତ ମୁଁ ଜାଣି ନ ଥିଲି ? ପୁଣି କାହାଣୀ ବି କହି ପାରୁଛନ୍ତି ।"

ରାଜା କହିଲେ—"ହଉ ତେବେ ମୋ କାହାଣୀ ଯଦି ତୁମକୁ ରୁଚିକର ମନେ ନ ହଉଛି, ମୁଁ ତେବେ ବନ୍ଦ କରୁଛି ।" ଦେବଯାନୀ କହିଲା—"ନା ନାଁ, ତା' ପରେ କ'ଣ ହେଲା କୁହନ୍ତୁ ।"

ରାଜା କହିଲେ—"ଯୌନାଙ୍ଗ କାଟି ଦେବା ଫଳରେ ଅଣ୍ଡିରା ଛେଳାର ଖୁବ୍ ଦୁଃଖ ହେଲା । ତା'ର କରୁଣ କ୍ରନ୍ଦନ ଶୁଣି ସେହି ବ୍ରାହ୍ମଣଙ୍କର ଦୟା ହେଲା । ସେ ଦେଖିଲେ ଏହା ଦ୍ୱାରା ତାଙ୍କ ଛେଳକଟିର ମଧ୍ଯ କ୍ଷତି ହେଉଛି । ତେଣୁ ସେ ଯନ୍ତ୍ର ଦ୍ୱାରା ପୁଣି ତାକୁ ମିଳାଇ କରିଦେଲେ । ଅଣ୍ଡିରା ଛେଳାଟି ଖୁସି ହୋଇଗଲା । ସେ ପୁଣି ତା' ସହିତ ଅନେକଦିନ ପର୍ଯ୍ୟନ୍ତ ଇନ୍ଦ୍ରିୟସୁଖ ଭୋଗ କରିବାକୁ ଲାଗିଲା । ସେ ଯେତେ ଯେତେ ଭୋଗ କରି ଚାଲିଥିଲା ସେତେ ସେତେ ଅଧିକ ଅସନ୍ତୁଷ୍ଟ ଦୁଃଖୀ ହେଉଥିଲା ।"

ଦେବଯାନୀ କହିଲା—"କ'ଣ ଏତେ ଅଳଙ୍କାର ଉପମା ଦେଇ କଥା କହୁଛନ୍ତି ? ସେ ଛେଳା ଦୁଇଜଣ ପ୍ରକୃତରେ କିଏ ?"

ରାଜା କହିଲେ—"କହିବି ? ଖରାପ ଭାବିବ ନାହିଁ । ସେ ଅଣ୍ଡିରା ଛେଳା ହେଉଛି ମୁଁ ନିଜେ ଆଉ ତୁମେ ହେଉଛ ମାଈ ଛେଳା । ମୁଁ ତୁମରି ପ୍ରେମ ଫାଶରେ ପଡ଼ି ଅତ୍ୟନ୍ତ ଦୀନହୀନ ହୋଇ ଯାଇଛି, ନିଜର ନିଜତ୍ୱ ହଜେଇ ବସିଛି । ଏଇ ଯେଉଁ କାମାଗ୍ନି ଏହା ଅତ୍ୟନ୍ତ ପ୍ରବଳ, ଭୋଗ ଦ୍ୱାରା ଏହା କେବେ ହେଲେ ଶାନ୍ତ ହୁଏ ନାହିଁ ।"

Digitized by srujanika@gmail.com

ଦେବଯାନୀ କହିଲା—"ତୁଏତ ଅଧିକ ପରିମାଣର ଭୋଗ କରିବାପରେ ତୃପ୍ତି ମିଳିଯିବ । ଯେମିତିକ ବହୁତ ଖାଇ ସାରିଲା ପରେ ତୃପ୍ତି ଆସିଯାଏ ।"

ରାଜା କହିଲେ—"ଏ କାମ ଏପରି ପ୍ରଚଣ୍ଡ ଭୂତ ଯେ ଏହା କେବେହେଲେ ତୃପ୍ତ ହୋଇପାରିବ ନାହିଁ । ଜ୍ୱଳନ୍ତ ଅଗ୍ନିରେ ଯେତେ ଇନ୍ଧନ ଦେଲେ ଯେପରି ଉଦ୍ଦୀପ୍ତ ହୁଏ । ସେହିପରି ଘିଅ ଢାଳିଲେ ତାହା ଆହୁରି ପ୍ରଚଣ୍ଡ ହୋଇଯାଏ ।"

ଦେବଯାନୀ କହିଲା—"ଏହି ଦୁଃଖରୁ ରକ୍ଷା ପାଇବାର କୌଣସି ଉପାୟ ନାହିଁ ?"

ରାଜା କହିଲେ—"ନାହିଁ କାହିଁକି ? କିନ୍ତୁ ତାହା ଅତ୍ୟନ୍ତ କଠିନ । ଯେଉଁ ବସ୍ତୁ ସଂସ୍ପର୍ଶରେ ଅମ୍ଭେ ଆସିଥାଉ ସେମାନଙ୍କ ମଧ୍ୟରୁ କେତେକଙ୍କ ପ୍ରତି ଆମର ଅନୁରାଗ ହୋଇଥାଏ ତଥା କେତେକଙ୍କ ପ୍ରତି ଦ୍ୱେଷ ଅନୁରାଗରୁ ଆସକ୍ତି ଆସେ; ଦ୍ୱେଷରୁ ଘୃଣା । ଆସକ୍ତି ଏବଂ ଦ୍ୱେଷରୁ ମନରେ ଅସଯଂମତା ହୋଇଥାଏ । ରାଗ ଯୁକ୍ତ ବସ୍ତୁର ତ ନଷ୍ଟ ହେବାର ଭୟ ରହେ । ଦ୍ୱେଷଯୁକ୍ତ ବସ୍ତୁଠାରୁ ଅଙ୍କମରେ ଭୟ ରହେ । ତେଣୁ କୌଣସି ମତେ ଶାନ୍ତି ମିଳେ ନାହିଁ । ଯେତେବେଳେ ମନୁଷ୍ୟ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ ସେତେବେଳେ କାହାପ୍ରତି ଅନୁରକ୍ତି ବା କାହାପ୍ରତି ବିରକ୍ତି ଆସେ ନାହିଁ । ସେତେବେଳେ ସେହି ସମଦର୍ଶୀ ପୁରୁଷ ନିମନ୍ତେ ସବୁକିଛି ସୁଖମୟ ହୋଇଯାଏ । ଯେତେବେଳେ ସମସ୍ତେ ଆତ୍ମୀୟ ସୁହୃଦ ହୋଇ ଯାଆନ୍ତି କେହି ପର ହୋଇ ରହନ୍ତି ନାହିଁ, ସେତେବେଳେ ଆଉ କାହାକୁ ଡର ଲାଗେ ନାହିଁ । ସଂଗ୍ରହଦ୍ୱାରା ଦୁଃଖ ହୋଇଥାଏ । ସଂଗ୍ରହ ଆସିଥାଏ ତୃଷ୍ଣାରୁ । ତୃଷ୍ଣା ଏପରି ଅମର ଗଛ ଯେ ତାହା କେବଳ ବଢ଼ି ଚାଲିଥାଏ । ଶରୀର ଜୀର୍ଣ୍ଣ ହୋଇଗଲେ ମଧ୍ୟ ତୃଷ୍ଣା ଜୀର୍ଣ୍ଣ ହୁଏ ନାହିଁ । ଜ୍ଞାନୀ ପୁରୁଷମାନେ ବିବେକ-ବଳର ଦ୍ୱାରା ତାକୁ ତ୍ୟାଗ କରି ପାରନ୍ତି; କିନ୍ତୁ ଅଜ୍ଞାନୀ ପୁରୁଷମାନଙ୍କ ନିମନ୍ତେ ତୃଷ୍ଣା ତ୍ୟାଗ କରିବା ଅତ୍ୟନ୍ତ କଠିନ । ଯେଉଁମାନେ ସୁଖର ଇଚ୍ଛା କରନ୍ତି ସେମାନଙ୍କର ପ୍ରଥମେ ତୃଷ୍ଣାଠାରୁ ହିଁ ଦୂରରେ ରହିବାକୁ ହେବ ।"

ଦେବଯାନୀ କହିଲା—"ଭୋଗ୍ୟ ବସ୍ତୁ ସମ୍ମୁଖକୁ ଆସିଲେ ତାହା ଭୋଗ କରିବାର ଇଚ୍ଛା ହୋଇଥାଏ । ଏହି ଇଚ୍ଛା କିପରି ଯିବ ?"

ରାଜା କହିଲେ—"ଅଗ୍ନି ଏବଂ ତୃଣ ଏକ ସାଥିରେ ରହିଲେ ସେଥିରେ ତ ଅଗ୍ନି ହିଁ ଉତ୍ପନ୍ନ ହେବ । ଘୃତ ଯଦି ଅଗ୍ନି ନିକଟରେ ରହେ ତେବେ ନିଶ୍ଚିତ ଭାବେ ଘୃତ ତରଳିବ । ତେଣୁ ସାଧକଙ୍କୁ ଯେତେଦୂର ସମ୍ଭବ, ବିଷୟଠାରୁ ଦୂରରେ ରହିବା ଉଚିତ ।'

ଏହା ଶୁଣି ଶୌନକ ମୁନି ସୂତ ମୁନିଙ୍କୁ ପଚାରିଲେ—"ଏହା କିପରି ସମ୍ଭବ ହୋଇ ପାରିବ ! ପୁରୁଷ ତ ସ୍ତ୍ରୀଠାରୁ ହିଁ ଜନ୍ମ ହୋଇଥାଏ । ଘର ଭିତରେ ଭଉଣୀ, ଝିଅ, ବୋହୂ ତଥା ଅନ୍ୟାନ୍ୟ ସମ୍ପର୍କ ସ୍ତ୍ରୀ ଯୁବତୀମାନେ ରହି ଥାଆନ୍ତି । ସେମାନଙ୍କ

Digitized by srujanika@gmail.com

ନିକଟରୁ କିପରି ରକ୍ଷା ମିଳିବ ? ଗୃହସ୍ଥଙ୍କ କଥା ଛାଡ଼ି ଦିଅନ୍ତୁ । ସାଧୁମାନଙ୍କର ଖାଦ୍ୟ ମଧ୍ୟ ମା'ମାନେ ପ୍ରସ୍ତୁତ କରି ଥାଆନ୍ତି । ଘରେ ତ ସଦାସର୍ବଦା ଗୃହିଣୀ ହିଁ ଥାଆନ୍ତି । ତେଣୁ ସାଧୁମାନେ ଭିକ୍ଷା ଉଦ୍ଦେଶ୍ୟରେ ଗଲେ ସୁଦ୍ଧା ସେହିମାନଙ୍କ ସହିତ ହିଁ କଥାବାର୍ତ୍ତା କରିବେ; ତାଙ୍କରି ହାତରୁ ଅନ୍ନ-ପାଣି ନେବେ ତଥା ତାଙ୍କରି ନିକଟରେ ବସି ଖାଇବେ । ଦର୍ଶନ ନିମନ୍ତେ ମଧ୍ୟ ସ୍ତ୍ରୀ ପୁରୁଷ ଉଭୟେ ଆସନ୍ତି । ଯାହାରେ ପର୍ବପର୍ବାଣୀରେ, ବିବାହ ଇତ୍ୟାଦି ସଂସ୍କାରରେ ସମସ୍ତେ ଏକାଠି ହୋଇ ଯାଇଥାନ୍ତି । ତେଣୁ ଏକାଠି ଉଠନ୍ତି, ବସନ୍ତି, ଏକାଠି ଖିଆପିଆ କରନ୍ତି । ଏସବୁ ପରିସ୍ଥିତିରେ ସଙ୍ଗଦୋଷରୁ ସାଧକଙ୍କୁ କିପରି ମୁକ୍ତି ମିଳିବ ?"

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ଆପଣ ଯାହା କହନ୍ତୁ ପଛକେ । ଆପଣ ତ ନିରନ୍ତର କଥା-କୀର୍ତ୍ତନରେ ସଲଗ୍ନ ହୋଇ ରହିଛନ୍ତି । ଆପଣଙ୍କୁ ବିଷୟାସକ୍ତ ଲୋକର ମନୋଭାବର ଅନୁଭବ ନାହିଁ । ଭଗବନ୍ ! ଯେତେବେଳେ ମନ ଭିତରେ କାମରୂପକ ଭୂତ ପ୍ରବେଶ କରେ ସେତେବେଳେ ମନୁଷ୍ୟର ବିବେକ ନଷ୍ଟ ହୋଇଯାଏ । ସେ କାଲି ପର୍ଯ୍ୟନ୍ତ ଯାହାକୁ ଧର୍ମତଃ ମା' ଭଉଣୀ କହୁଥିଲା, ମନ କାମାସକ୍ତ ହୋଇଯିବା ପରେ ସେଇମାନଙ୍କ ପ୍ରତି ପାପଦୃଷ୍ଟି ସୃଷ୍ଟି ହୋଇଥାଏ । ବାକି ରହିଲା ସଂସର୍ଗ କଥା, ସଂସର୍ଗବିନା ସଂସାରର କାମ ଚଳେ ନାହିଁ । ଯେଉଁଠି ଏକାନ୍ତ ମିଳିଯାଏ ସେଇଠାରେ ହିଁ ମନ ଚଞ୍ଚଳ ହୋଇଥାଏ । ତେଣୁ ଯୁବକ ଯୁବତୀମାନଙ୍କର କେବେହେଲେ ଏକାନ୍ତରେ ବସିଉଠ ହେବା ଉଚିତ ନୁହେଁ । ଯଦି ବି ଏକାଠି ମିଶି ଥାଆନ୍ତି ତେବେ ହାସ ପରିହାସ ନ କରି ଉତ୍ତମ କଥା ହିଁ କହିବା ଶୁଣିବା ଉଚିତ । ଏକାନ୍ତରେ ଗୋଟିଏ ଆସନରେ ନିଜ ସହୋଦରୀ ଭଉଣୀ, ଯୁବତୀ-କନ୍ୟା ତଥା ସମର୍ଥ ହୋଇସାରିବା ପରେ ମାତାଙ୍କ ସହିତ ମଧ୍ୟ ବସିବା ଅନୁଚିତ । ଏଇ ସମ୍ବନ୍ଧରେ ଭଗବାନ ବ୍ୟାସଙ୍କ ଦ୍ୱାରା କୁହାଯାଇଥିବା ଏକ ଅତ୍ୟନ୍ତ ମନୋବୈଜ୍ଞାନିକ କଥା ମୁଁ ଆପଣମାନଙ୍କୁ ଶୁଣାଉଛି । ଧ୍ୟାନ ଦେଇ ଆପଣମାନେ ଶୁଣନ୍ତୁ ।"

### ଛପ୍ପୟ

ରାଗ-ଦ୍ୱେଷ ତେଁ ରହିତ ଶାନ୍ତ ନର ହୋବୈ ଜବହିଁ ।
ସମଦରଶୀ କୁଁ ହୋହି ଦଶୋଂ ଦିଶି ସୁଖମୟୀ ତବହିଁ ॥
ତୃଷ୍ଣା ଦୁଃଖ କୋ ମୂଲ ସହଜ ଗୁନ ସବ ହୀ ଖୋବେଁ ।
ବୂଢ଼ା ହୋହି ଶରୀର ନ ତୃଷ୍ଣା ବୂଢ଼ୀ ହୋବେଁ ।
ପାବୈ ସତ ସୁଖ ତବହିଁ ଜବ, ହୋ'ବୈ ବିଷମୂଳ ତେଁ [illegible] ।
ଯୋ ସୁଖ ଚହେ ଜଗତ ମହିଁ, ତୃଷ୍ଣା କୁଁ ତ୍ୟାଗେ [illegible] ॥



Digitized by srujanika@gmail.com

# ଇନ୍ଦ୍ରିୟମାନଙ୍କର ଶକ୍ତି

ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନାବିବିକ୍ତାସନୋ ଭବେତ୍ ।
ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ॥ ※

( ଶ୍ରୀ-ଭା-୯ସ୍କ ୧୯-ଅ ୧୭ ଶ୍ଳୋ)

## ଛପ୍ପୟ

ଜ୍ୟେଷ୍ଠା ଶ୍ରେଷ୍ଠା ହୋଇ ପୂଜନୀୟା ହୂ ନାରୀ ।
ଯୁବତୀ ହୋଇବେ ବହିନ ମାତୃ-ପୁତ୍ରୀ ଅତି ପ୍ୟାରୀ ॥
ତବ ହୂହେଁ ଏକାନ୍ତ ନ ବୈଠେ ଇନକେ ସଁଗ ମହଁ ।
ସାବଧାନ ନତ ରହେ ସଟାବୈ ଅଁଗ ନହି ଅଁଗ ମହଁ ॥
ପ୍ରବଳ ପ୍ରଚଣ୍ଡ ପିଶାଚ ସମ, ଯହ ଇନ୍ଦ୍ରିୟ ସମୁଦାୟ ଅତି ।
ହୋଇବେ ସନ୍ମୁଖ ବିଷୟ ଲଖି, ପଣ୍ଡିତ ହୂକୀ ଭ୍ରଷ୍ଟ ମତି ॥

ଆକର୍ଷଣ ହେତୁ ହିଁ ପ୍ରାଣୀ ପ୍ରତ୍ୟେକ କାର୍ଯ୍ୟ କରିଥାଏ, ଜୀବନରେ କୌଣସି ଆକର୍ଷଣ ନ ରହିଲେ ସେ କାର୍ଯ୍ୟ ପ୍ରାଣୀ କାହିଁକି କରିବ ! କେତେକ କାର୍ଯ୍ୟ ପରଲୋକ ସୁଖର ଆକର୍ଷଣ ନିମିତ୍ତ କରାଯାଇ ଥାଏ । ପରଲୋକର ସୁଖ କେବଳ ଶୁଣିବା କଥା । ସ୍ୱର୍ଗରେ ନନ୍ଦନକାନନ ଅଛି, କଳ୍ପବୃକ୍ଷ ଅଛି, ଅମୃତ ଅଛି, ଅତ୍ୟନ୍ତ ସୁନ୍ଦରୀ ଅପ୍ସରାଗଣ ଅଛନ୍ତି ତଥା ଚଢ଼ିବା ନିମନ୍ତେ ଦିବ୍ୟ ବିମାନ ଅଛି । ଏ କଥା କେବଳ ଶୁଣା ଯାଇଛି, ଶାସ୍ତ୍ରପୁରାଣରେ ଏପରି ବର୍ଣ୍ଣନା ଅଛି, ତେଣୁ ଶ୍ରଦ୍ଧାରେ, ଆସକ୍ତି ହେତୁ

※ ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଏକାନ୍ତରେ ପୁରୁଷମାନଙ୍କର ଆସନରେ ନିଜ ମାତା, ଭଗିନୀ ତଥା କନ୍ୟା ସହିତ ମଧ୍ୟ ବସିବା ଅନୁଚିତ । କାରଣ ଇନ୍ଦ୍ରିୟମାନଙ୍କର ଶକ୍ତି ପ୍ରବଳ । ସେମାନେ ବିଚାରଶୀଳଙ୍କୁ ମଧ୍ୟ ବିଚଳିତ କରି ଦିଅନ୍ତି ।"

Digitized by srujanika@gmail.com

ଏ ସବୁରେ ବିଶ୍ୱାସ ହୋଇ ଯାଇଥାଏ; କିନ୍ତୁ ସାଧାରଣ ଲୋକେ ତ ପ୍ରକୃତରେ ଏସବୁ ଦେଖି ନାହାଁନ୍ତି । କେହି କେହି ଏ ସବୁର ଆକର୍ଷଣରେ ଆକୃଷ୍ଟ ହୋଇ ପରଲୋକ ସମ୍ବନ୍ଧୀୟ କାର୍ଯ୍ୟ କରନ୍ତି । କେହି କେହି କରନ୍ତି ନାହିଁ । ଯଦି କିଏ କହେ ଯେ ଆମେ ପରଲୋକ ସମ୍ବନ୍ଧୀୟ ଶାସ୍ତ୍ରକୁ ମାନୁ ନାହିଁ ତେବେ ତାଙ୍କ ସମ୍ମୁଖକୁ କୌଣସି ଦେବତା ଆସି ତୁମେ ଆମକୁ ମାନ ବୋଲି କୁହନ୍ତି ନାହିଁ; କିନ୍ତୁ ଏହି ଲୋକର ଭୋଗ ପ୍ରତ୍ୟକ୍ଷ । ସୁନ୍ଦର ଶବ୍ଦ ଶୁଣି କାନ ଆପେ ଆପେ ସେ ଆଡ଼କୁ ଟାଣି ହୋଇଯାଏ । ସେଥିପାଇଁ କୌଣସି ବାହାର ପ୍ରମାଣର ଆବଶ୍ୟକତା ନାହିଁ । ଦୂରରୁ ହିଁ ସୁଗନ୍ଧିତ ବସ୍ତୁକୁ ଶୁଙ୍ଘି ଘ୍ରାଣେନ୍ଦ୍ରିୟ ସୁଖ ଅନୁଭବ କରେ । ଆଖି ସୁନ୍ଦର ରୂପକୁ ଦେଖି ସ୍ୱତଃ ଆକୃଷ୍ଟ ହୋଇଥାଏ । ସୁଖଦ ସ୍ପର୍ଶଦ୍ୱାରା ଅଙ୍ଗପ୍ରତ୍ୟଙ୍ଗ ପୁଲକିତ ହୋଇଉଠେ । ମଧୁର ସ୍ୱାଦିଷ୍ଟ ବସ୍ତୁକୁ ସ୍ପର୍ଶ କଲାମାତ୍ରେ ଜିହ୍ୱା ଲାଳାୟିତ ହୋଇଥାଏ । ନାରୀ ନିକଟରେ ଏ ପାଞ୍ଚ ଇନ୍ଦ୍ରିୟମାନଙ୍କର ଆବଶ୍ୟକ ସୁଖ ବିଦ୍ୟମାନ । ତେଣୁ ଏପରି କେଉଁ ଧୈର୍ଯ୍ୟବାନ ପୁରୁଷ ଅଛନ୍ତି ଯାହାର କି ଏକାନ୍ତରେ ନିଜ ଅନୁକୂଳ କାମିନୀକୁ ଦେଖି ଚିତ୍ତ ଚଞ୍ଚଳ ହୁଏ ନାହିଁ । ଯଦି ଏପରି କିଏ ଥାଏ ତେବେ ସେ ନର ନୁହେଁ ନାରାୟଣ । ତା'ର ପାଦ ପଦ୍ମରେ ଆମର ବାରମ୍ବାର ପ୍ରଣାମ ।"

ସୂତ ମୁନି କହୁଛନ୍ତି—"ମୁନିମାନେ ! ଇନ୍ଦ୍ରିୟଗଣ ଅତ୍ୟନ୍ତ ହିଁ ବଳବାନ । ତାଙ୍କ ଦ୍ୱାରା ବଡ଼ ବଡ଼ ବିଦ୍ୱାନ୍ ମଧ୍ୟ ମୋହଗ୍ରସ୍ତ ହୋଇଯାଆନ୍ତି । ଏ ବିଷୟରେ ମୁଁ ଋଷିମାନଙ୍କ ମୁଖରୁ ନିଜର ପରମ ଗୁରୁ ଭଗବାନ ବ୍ୟାସଙ୍କ ସମ୍ବନ୍ଧରେ ଯେଉଁ ଇତିହାସ ଶୁଣିଛି ତାହା ଏବେ ବର୍ଣ୍ଣନା କରୁଛି ।"

ପ୍ରଥମେ ଗଙ୍ଗାମାତା ହସ୍ତିନାପୁରରେ ହିଁ ଥିଲେ । ତାଙ୍କ ସମ୍ମୁଖ ତଟରେ ବିଦୁରଙ୍କର ଗୋଟିଏ କୁଟୀର ଥିଲା । ଯେଉଁଥିରେ ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କର ବିଧବା ପତ୍ନୀମାନେ ଆସି ରହୁଥିଲେ । ତେଣୁ ସେହି ନଗର 'ଦାରାନଗର' ରୂପେ ବିଖ୍ୟାତ ହେଲା । ଦାରାନଗର ଗଙ୍ଗାତଟରେ ହିଁ ଅବସ୍ଥିତ । ତା' ନିକଟରେ ଜଣେ ମହାତ୍ମା କୁଟୀର ନିର୍ମାଣ କରି ରହୁଥିଲେ । ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ତାଙ୍କର ଗଭୀର ନିଷ୍ଠା ଥିଲା । ସେ ଅତ୍ୟନ୍ତ ଶ୍ରଦ୍ଧା ଏବଂ ନିୟମ ସହ ପାକ୍ଷିକ ପାଠ କରୁଥିଲେ । ସେ ଥିଲେ ବାଲବ୍ରହ୍ମଚାରୀ, ସଂସାରର ପ୍ରଲୋଭନ କେବେ ତାଙ୍କ ନିକଟକୁ ଆସି ନଥିଲା । ତେଣୁ ସେ କେବେ କୌଣସି ପ୍ରଲୋଭନରେ ପଡ଼ି ନଥିଲେ । ଆଖପାଖରେ ତାଙ୍କ ସଦାଚାରର ଅନେକ ଖ୍ୟାତି ଥିଲା । ଅନେକ ସ୍ତ୍ରୀ-ପୁରୁଷ ଗଙ୍ଗାସ୍ନାନ ନିମନ୍ତେ ଆସି ମହାତ୍ମାଙ୍କର ଦର୍ଶନ ମଧ୍ୟ କରି ଯାଉଥିଲେ ଏବଂ ତାଙ୍କୁ ଆବଶ୍ୟକ ବସ୍ତୁ ଭେଟି ଦେଉଥିଲେ । ମହାତ୍ମା ତାଙ୍କର ଆବଶ୍ୟକ ବସ୍ତୁ ରଖି ଅବଶିଷ୍ଟ ବସ୍ତୁ ବାଣ୍ଟି ଦେଉଥିଲେ; କିନ୍ତୁ କିଛି ସଂଗ୍ରହ କରୁ ନ ଥିଲେ । ତେଣୁ ଲୋକମାନେ ତାଙ୍କୁ ଶ୍ରଦ୍ଧା ସମ୍ମାନ ଦେଖାଉଥିଲେ । ସେ କାହା ସହିତ

Digitized by srujanika@gmail.com

ବିଶେଷ ସମ୍ବନ୍ଧ ରଖୁ ନ ଥିଲେ । ଅନେକ ସମୟ ପର୍ଯ୍ୟନ୍ତ ଅନେକ ସ୍ତ୍ରୀ ପୁରୁଷ, ଯୁବକ ଯୁବତୀ ତାଙ୍କ ନିକଟରେ ବସି ରହୁଥିଲେ । ସେ ତାଙ୍କ ଭଜନ ଧ୍ୟାନରେ ହିଁ ମଗ୍ନ ରହୁଥିଲେ । ନିଜ ପ୍ରତିଷ୍ଠା ରକ୍ଷା ଉଦ୍ଦେଶ୍ୟରେ ସେ କାହା ସହିତ ବିଶେଷ ସମ୍ପର୍କ ମଧ୍ୟ ରଖୁ ନ ଥିଲେ । ଧୀରେ ଧୀରେ ତାଙ୍କ ମନରେ ସେ ଜିତେନ୍ଦ୍ରିୟ ହୋଇ ଯାଇଛନ୍ତି ବୋଲି ଧାରଣା ସୃଷ୍ଟି ହୋଇଗଲା । ସେ ସଂଯମୀ, ସଦାଚାରୀ, ସରଳ ତଥା ସାକ୍ଷର ଥିଲେ । ଶ୍ରୀମଦ୍‌ଭାଗବତ ପାଠ କରୁ କରୁ ତା'ର ନବମ ସ୍କନ୍ଧର ୧୯ ଅଧ୍ୟାୟର ୧୭ ଶ୍ଳୋକକୁ ସନ୍ଦେହ କରି ବସିଲେ ।

"ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନାବିବିକ୍ତାସନୋ ଭବେତ୍
ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ।।"

ଅର୍ଥାତ୍—"ମାତା ଭଗିନୀ କନ୍ୟା ସହ ଏକାନ୍ତରେ ଏକାସନରେ ବସିବା ଉଚିତ ନୁହଁ । ଏଇ ଇନ୍ଦ୍ରିୟଗଣ ଅତ୍ୟନ୍ତ ବଳବାନ୍, ବିଦ୍ୱାନ୍‌ମାନଙ୍କ ମନକୁ ମଧ୍ୟ ଏହା ବିଚଳିତ କରି ଦିଏ ।"

ଏହି ଶ୍ଳୋକ ବ୍ୟାସଦେବ କାହିଁକି ଲେଖିଲେ, ବିଦ୍ୱାନ୍‌ମାନଙ୍କର ମନକୁ କାମନା କିପରି ବା ବିଚଳିତ କରିବ ! ଯାହାର ମନ ସାମାନ୍ୟ ପ୍ରଲୋଭନ ଦ୍ୱାରା ଚଞ୍ଚଳ ହୋଇଯାଏ , ସେ ବିଦ୍ୱାନ୍ ବା ହେବ କିପରି ? ସେ ଏହାଭାବି ସେଇ ଶ୍ଳୋକକୁ ମହତ୍ତ୍ୱ ଦେଲେ ନାହିଁ ।

ସେତେବେଳେ ଭଗବାନ ବ୍ୟାସ ପୃଥିବୀରୁ ଅନ୍ତର୍ହିତ ହୋଇ ନ ଥିଲେ । ସେ ପ୍ରକଟ ରୂପରେ ଗଙ୍ଗାତୀରରେ ହିଁ ବାସ କରୁଥିଲେ । ତେଣୁ ସେ ମହାତ୍ମା ନିଜର ସନ୍ଦେହର ସମାଧାନ ନିମନ୍ତେ ସତ୍ୟବତୀ ନନ୍ଦନ ପରାଶର ପୁତ୍ର ଭଗବାନ ବେଦ-ବ୍ୟାସଙ୍କ ନିକଟରେ ଦିନେ ପହଞ୍ଚିଗଲେ । ଭଗବାନ ବ୍ୟାସ ସ୍ନେହ ମହାତ୍ମାଙ୍କର ଯଥୋଚିତ ଆଦର ସତ୍କାର କଲେ । କୁଶଳ ସମାଚାର ପରେ ମହାତ୍ମା କହିଲେ—"ଭଗବନ୍ ! ମୁଁ ଗୋଟିଏ ସନ୍ଦେହର ସମାଧାନ ନିମନ୍ତେ ଆପଣଙ୍କ ନିକଟକୁ ଆସିଛି ।"

ଭଗବନ ବ୍ୟାସ କହିଲେ—"ହଁ ଭାଇ ! କୁହ କି ସନ୍ଦେହ ।" ସ୍ନେ କହିଲେ—"ଭଗବନ୍ ! ଆପଣ ଶ୍ରୀମଦଭାଗବତ ରଚନା କରିଛନ୍ତି ଏବଂ ତା'ଦ୍ୱାରା ସଂସାରର ବଡ଼ ଉପକାର କରିଛନ୍ତି; କିନ୍ତୁ ଆପଣଙ୍କ ଶ୍ଳୋକ—

ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନାବିବିକ୍ତାସନୋ ଭବେତ ।
ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ।।

କାହିଁକି ଲେଖିଲେ ? ବିଦ୍ୱାନ୍‌ମାନଙ୍କର ମନକୁ ଇନ୍ଦ୍ରିୟମାନେ କିପରି ବିଚଳିତ କରି ପାରିବେ ? ଆପଣଙ୍କର ଯୁବକ ପୁତ୍ର ଶ୍ରୀ ଶୁକ ଉଲଗ୍ନ ହୋଇ ସ୍ତ୍ରୀମାନଙ୍କ

Digitized by srujanika@gmail.com

ସହ ବୁଲୁଛନ୍ତି । ଜନକଙ୍କ ମହଲରେ ସେ ଅନେକ ସୁନ୍ଦରୀ ସ୍ତ୍ରୀମାନଙ୍କ ସହ ରହୁଥିଲେ । ତାଙ୍କୁ ଆକୃଷ୍ଟ କରିବା ନିମିତ୍ତ ସେମାନେ ଅନେକ ପ୍ରକାରର ହାବଭାବ କଟାକ୍ଷ କରିଥିଲେ କିନ୍ତୁ ତଥାପି ତ ଶୁକ ବିଚଳିତ ହେଲେନାହିଁ ।”

ବ୍ୟାସଦେବ କହିଲେ—“ଭାଇ ! ଦେଖ, ସମସ୍ତେ ତ ଆଉ ଶୁକ ହୋଇପାରିବେ ନାହିଁ । ମୁଁ କେବଳ ଶୁକ ନିମିତ୍ତ ତ ଭାଗବତ ଲେଖି ନାହିଁ । ଶୁକ, ଜନକ ପ୍ରଭୃତି ମୋ କଥାର ବ୍ୟତିକ୍ରମ । ମୁଁ ତ ମୋ ନିଜ ଅନୁଭୂତି କଥା କହୁଛି, ଇନ୍ଦ୍ରିୟମାନଙ୍କର ବିଷୟଭୋଗ ପ୍ରତି ଆକର୍ଷଣ ଅତି ପ୍ରବଳ । ହେ ଧର୍ମାତ୍ମା, ତେଜସ୍ୱୀ-ଗଣଙ୍କର ଏକାନ୍ତରେ ହିଁ ମନ ବିଚଳିତ ହୋଇ ଯାଇଥାଏ ।”

ମହାତ୍ମା କହିଲେ—“ମହାରାଜ ! ଆମମାନଙ୍କର ତ କଥା ଅଲଗା । ଆପଣ ସମସ୍ତେ କାରକ ପୁରୁଷ, ଭଗବାନଙ୍କର ଅବତାର । ଆପଣମାନଙ୍କର ଚେଷ୍ଟା ସଦାସର୍ବଦା ଲୋକକଲ୍ୟାଣ ନିମନ୍ତେ ନିହିତ; କିନ୍ତୁ ସାଧାରଣତଃ ମନୁଷ୍ୟ ସଂଯମ ଏବଂ ସଦାଚାରରେ ରହିଲେ ଏପରି ହଠାତ୍ ଇନ୍ଦ୍ରିୟ ଦ୍ୱାରା ବିଷୟାସକ୍ତ ହେବେ ନାହିଁ । ଆପଣ ଏହାକୁ ଅଭିମାନ ବୋଲି ମନେକରିବେ ନାହିଁ । ମୋ ଆଶ୍ରମକୁ ଏକୁ ଆରେକ ସୁନ୍ଦରୀ ଯୁବତୀଗଣ ଆସୁଛନ୍ତି ମୁଁ ସେ ଦିଗକୁ ଧ୍ୟାନ ମଧ୍ୟ ଦେଉନାହିଁ । ମୁଁ ଭାବେ ଯେ ଗଛ ଉପରେ କୋଇଲିମାନେ କୁହୁତାନ କଲାପରି ସେମାନେ ଆସି ଆଶ୍ରମ ବୁଲି ଚାଲି ଯାଉଛନ୍ତି ।

ବ୍ୟାସ କହିଲେ—“ଭାଇ ! ଏ ତ ଠିକ୍ କଥା । ତୁମେ ସଂଯମୀ, ଶାସ୍ତ୍ରଜ୍ଞ, ତଥା ସଦାଚାରୀ ଅଟ । ଭଲକଥା ଯେ ତୁମର ମନ ବିଚଳିତ ହେଉ ନାହିଁ; କିନ୍ତୁ ତଥାପି ମଧ୍ୟ ସମସ୍ତଙ୍କ ସମ୍ମୁଖରେ ସ୍ତ୍ରୀମାନଙ୍କ ସହ ଏକାନ୍ତରେ ମିଳିବା ଅଲଗା କଥା ଅଲଗା । ମୁଁ ତ ସେମାନଙ୍କ ସହ ମିଶିବା ନିମନ୍ତେ ନିଷେଧ କରିନାହିଁ । କେବଳ ଏତିକି କହୁଛି ଯେ ସେମାନଙ୍କ ସହ ଏକାନ୍ତରେ ମିଶିବା ନିରାପଦ ନୁହେଁ । ମଣିଷ ତ ପଶୁ ନୁହଁ । ମାତା, ଭଗ୍ନୀ, କନ୍ୟା ଏ ସମସ୍ତଙ୍କଠାରେ ମୋର କିଛି ଭେଦଭାବ ନାହିଁ । ତଥାପି କେବଳ ସାବଧାନତା ନିମନ୍ତେ ଏ କଥା ଲେଖାଯାଇଛି । ଯେତେ-ବେଳେ ଇନ୍ଦ୍ରିୟଗଣ ଚଞ୍ଚଳ ହୋଇଯାଆନ୍ତି, ହୃଦୟରେ କାମାଗ୍ନି ପ୍ରଜ୍ୱଳିତ ହୋଇଯାଏ ସେତେବେଳେ ଏ ମନୁଷ୍ୟ ପଶୁଠାରୁ ମଧ୍ୟ ହୀନ ହୋଇଯାଏ । କାମର ବେଗ ଅତ୍ୟନ୍ତ ପ୍ରବଳ । ବର୍ତ୍ତମାନ ତୁମେ ନୂଆ ନୂଆ ସାଧୁ ହୋଇଛ । ତୁମ ସାମ୍ନାକୁ ଏପରି ପ୍ରଲୋଭନ କେବେ ଆସିନାହିଁ । ଏହା ତୁମ ପ୍ରତି ଭଗବାନଙ୍କର ଅସୀମ କୃପା ।”

Digitized by srujanika@gmail.com

ମହାତ୍ମା କହିଲେ—"ନାଁ ମହାରାଜ ! ଏ ତ ଆପଣ ଅଯୁକ୍ତ କରି ବସିଲେ । ମୁଁ ଏହା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ । ମୁଁ ତ ଆପଣଙ୍କର ଏଇ ଶ୍ଳୋକ ଉପରେ ଅନଶନ କରୁଛି ।"

ବ୍ୟାସ କହିଲେ—"ହଇ, ତୁମ ଇଚ୍ଛା—ବାହ ତୁମର, ତେଣୁ ଯେଉଁଠି ଇଚ୍ଛା ତୁମେ ସେଠାରେ ଅନଶନ କରି ବସ ।" ଏହା ଶୁଣି ମହାତ୍ମା ବ୍ୟାସଙ୍କ ସମ୍ମୁଖରେ ଏହି ଶ୍ଳୋକ ଉପରେ ପ୍ରତିବାଦ କରି ଅନଶନ ଆରମ୍ଭ କରିଦେଲେ ଏବଂ ଆଶ୍ରମକୁ ଆସି ଭଜନ ପାଠ କରିବାକୁ ଲାଗିଲେ ।

ମନୁଷ୍ୟର ସ୍ୱଭାବ ଏହିପ୍ରା ଯେ, ସେ ଯାହାକୁ ଭୁଲିବାକୁ ଚାହେଁ ତାହା ହିଁ ତା'ର ଅଧିକ ମନେ ପଡ଼େ । ଯେପରି ଜପ କଲାବେଳେ କେବେହେଲେ ସାପ ମନେପଡ଼େ ନାହିଁ; କିନ୍ତୁ ତୁମେ କହିଦିଅ ଯେ ଜପ ସମୟରେ ସାପ କଥା ମନେ ପକେଇବ ନାହିଁ ତେବେ ଆକସ୍ମିକ ଭାବରେ ସାପର ହିଁ ସ୍ମୃତି ଆସିଥାଏ । କେବଳ ଆସେ ନାହିଁ ତାହା ନିରନ୍ତର ଲାଗି ରହିଥାଏ, ଆଦୌ ବିସ୍ମୃତ ହୁଏ ନାହିଁ । ସେହିପରି ମହାତ୍ମା ତ ସେଇ ଶ୍ଳୋକ ଉପରେ ଅନଶନ ଆରମ୍ଭ କରିଦେଲେ; କିନ୍ତୁ ମନରେ ତାହା ଦୃଢ଼ ଭାବରେ ଲେଖା ହୋଇଗଲା । ଯେତେବେଳେ ସେ ସେଇ ଜାଗାରେ ପହଞ୍ଚି ଯାଉଥିଲେ, ସେଇ କଥା ହିଁ ତାଙ୍କ ମନକୁ ଆସି ଯାଉଥିଲା । ସେ ବାରମ୍ବାର ଦୃଢ଼ ଭାବରେ କହୁଥିଲେ, ମୁଁ କେବେ ବି ଏପରି ପ୍ରଲୋଭନରେ ପଡ଼ିବି ନାହିଁ ।

ଦିନେ ସନ୍ଧ୍ୟାରେ ସେ ଭାଗବତ ପାଠ କରୁଥିଲେ । ଆଷାଢ଼ ମାସ ସମୟ । ଖୁବ୍ ଜୋର୍‌ରେ ତୋଫାନ ଆସିଲା । ଧୂଳିରେ ପୁରା କୋଠରି ଭରିଗଲା । ସେ ପୁସ୍ତକ ରଖିଦେଲେ, ଅଗ୍ନି ଠିକ୍ କରିଦେଲେ ଏବଂ ଏପଟ ସେପଟ ହେବାକୁ ଲାଗିଲେ । କିଛି ସମୟ ପରେ ବର୍ଷା ଆରମ୍ଭ ହୋଇଗଲା । ଅମାବାସ୍ୟାର ଅନ୍ଧାର ରାତି । ଚତୁର୍ଦ୍ଦିଗରେ ମେଘ ଛାଇ ହୋଇ ରହିଥିଲା । ମଝିରେ ମଝିରେ ବିଜୁଳି ଝଲକି ଯାଉଥିଲା । ସେହି ସମୟରେ ହଠାତ୍ ତାଙ୍କୁ ଏକ କୋମଳ କଣ୍ଠ ଶୁଣାଗଲା—"ସ୍ୱାମୀଜୀ ! ମୁଁ ଆଶ୍ରୟ ଚାହୁଁଛି । କୃପାକରି ମୋତେ ଆଶ୍ରୟ ଦେବେ କି ?" ଏଇ ଶବ୍ଦ ଭିତରେ କରୁଣା, ବିବଶତା, ଦୀନତା, ଅଧୀନତା ତଥା ପରମ କୋମଳତା ପୂର୍ଣ୍ଣ ହୋଇ ରହିଥିଲା । ମହାତ୍ମା କୁଟୀର ବାହାରକୁ ଆସି ଗୋଟିଏ ସ୍ତ୍ରୀ ଠିଆ ହୋଇଥିବାର ଦେଖିଲେ । ଅନ୍ଧକାର ରାତିରେ ସେ ଗୋଟିଏ ଛାୟା ପରି ପ୍ରତୀୟମାନ ହେଉଥିଲା ।

ମହାତ୍ମା ଅସମଞ୍ଜସରେ ପଡ଼ିଗଲେ, କହିଲେ—"ତୁମେ କିଏ ? ଏଠାକୁ କାହିଁକି ଆସିଛ ? ଅଉ ଆସିଲ ମଧ୍ୟ କିପରି ?"

Digitized by srujanika@gmail.com

ସେ ସ୍ତ୍ରୀଟି କହିଲା—"ଭଗବନ୍ ! ମୁଁ ଏକ ରାଜକୁମାରଙ୍କର ଉପପତ୍ନୀ ଅଟେ । କୁମାର ନିଜ ପତ୍ନୀ ସହ ବନବିହାର କରିବା ନିମନ୍ତେ ଆସିଥିଲେ । ମୁଁ ବଣଭିତରେ କିଛି ଫୁଲ ତୋଳିବାକୁ ଚାଲି ଆସିଥିଲି । ସେଇ ସମୟରେ ତୋଫାନ ଆସିଲା । ମୁଁ ବାଟ ଭୁଲିଗଲି । ସେତିକିବେଳଠାରୁ ମୁଁ ଆଶ୍ରୟ ଖୋଜି ଖୋଜି ବୁଲୁଛି । ଦୈବଯୋଗରେ ମୁଁ ଆସି ଏଠି ଆପଣଙ୍କ ନିକଟରେ ପହଞ୍ଚିଗଲି । ଆଜି ରାତିକ ମୋତେ ଆଶ୍ରୟ ଦିଅନ୍ତୁ । ସକାଳ ହେଲେ ମୁଁ ଚାଲିଯିବି ।"

ମହାତ୍ମା କହିଲେ—"ଦେଖ ଦେବି ! ଏଠି ସ୍ତ୍ରୀମାନଙ୍କର କିଛି କାମ ନାହିଁ । ଆମେ ସାଧୁ ଲୋକ । ଏକା ଏକା ଥାଉ । ଏଠାରୁ କିଛି ଦୂରରେ ଅନ୍ୟ ଏକ ଆଶ୍ରମ ଅଛି, ସେଠାକୁ ଚାଲିଯାଅ । ତୁମର ଏଠାରେ ରହିବା ଉଚିତ ନୁହଁ ।"

ସ୍ତ୍ରୀ ଜଣକ କହିଲା—"ମହାରାଜ ! ଏଇ ଅନ୍ଧକାର ରାତିରେ ମୁଁ ଆଉ କୁଆଡ଼େ ଯିବି ? ପୁଣି କେଉଁଠି ବାଟ ଭୁଲିଯିବି । ମୁଁ ଆପଣଙ୍କୁ ତ କିଛି ମାଗୁ ନାହିଁ, କେବଳ ଆଶ୍ରୟ ଚାହୁଁଛି । ଏଥିରେ କିଛି ଅନୁଚିତ କଥା ନାହିଁ । ଆପଣଙ୍କର ନିଜ ଉପରେ ବିଶ୍ୱାସ ନାହିଁ, ନାଁ ମୋ ଉପରେ ମଧ୍ୟ ବିଶ୍ୱାସ ହେଉନାହିଁ ?"

ମହାତ୍ମା କହିଲେ—"ନାହିଁ ନାହିଁ, ତୁମେ ମୋର କନ୍ୟା ସମାନ ! ନିଜ ଉପରେ ମୋର ସମ୍ପୂର୍ଣ୍ଣ ଭରସା ଅଛି । ତୁମ ଉପରେ ମଧ୍ୟ ମୋର କୌଣସି ପ୍ରକାରର ଅବିଶ୍ୱାସ କରିବାର କାରଣ ଦେଖାଯାଉ ନାହିଁ ।"

ସ୍ତ୍ରୀଟି କହିଲା—"ମୋ ଉପରେ ଯଦି ବି ଅବିଶ୍ୱାସ ହୁଏ, ମୁଁ ତ କୌଣସି ସାପ କି ବିଛା ନୁହେଁ ଯେ କାମୁଡ଼ି ଦେବି ? ଆପଣ ଆପଣଙ୍କ ଉପରେ ବିଶ୍ୱାସ ରଖନ୍ତୁ । ଆପଣଙ୍କ କୁଟୀରର ଗୋଟିଏ କୋଣରେ ଅଗ୍ନି ଜଳାଇ ମୁଁ ପଡ଼ି ରହିବି, ପ୍ରଭାତ ହେଲେ ଚାଲିଯିବି । ନିରାଶ୍ରୟଙ୍କୁ ଆଶ୍ରୟ ଦେବା ସମସ୍ତଙ୍କର ଧର୍ମ ଅଟେ । ତା'ଛଡ଼ା ମହାତ୍ମାମାନଙ୍କର ବିଭୂତି ତ ପରୋପକାର ନିମିତ୍ତ ହିଁ ନିହିତ ।"

ବର୍ତ୍ତମାନ ମହାତ୍ମା ଅଉ କ'ଣ କରନ୍ତେ ? ତା'ର ଏତେ ସୁନ୍ଦର ଯୁକ୍ତି ତଥା କୋମଳ ବଚନ ଶୁଣି ମହାତ୍ମାଙ୍କର ମନର ପରିବର୍ତ୍ତନ ହେଲା । ସେତିକିବେଳକୁ ବିଜୁଳି ଝଲକିଗଲା । ତା'ର ପ୍ରକାଶରେ ସୁନ୍ଦରତାର ସାକାର ମୂର୍ତ୍ତି ସେହି ସ୍ତ୍ରୀକୁ ମହର୍ଷି ଦେଖିଲେ । ଏପରି ସୌନ୍ଦର୍ଯ୍ୟ ସେ ଆଗରୁ କେବେହେଲେ ଦେଖି ନ ଥିଲେ । ତାଙ୍କର ମନ ଚଞ୍ଚଳ ହୋଇ ଉଠିଲା । ସେ ଆଉ ମନା କରି ପାରିଲେ ନାହିଁ । ସେ କହିଲେ—"ଭଲ କଥା, ରୁହ ।"

ମହାତ୍ମାଙ୍କଠାରୁ ଆଶ୍ୱାସନା ପାଇ ସେ ଟିକେ ଆଗକୁ ଚାଲି ଆସିଲା । ମହାତ୍ମା ଦୀପ ଜଳାଇଲେ । ତା'ର ରେଶମୀ ବସ୍ତ୍ର ଓଦା ହୋଇ ଯାଇଥିବାରୁ ସେଇ ବସ୍ତ୍ର

Digitized by srujanika@gmail.com

ମଧ୍ୟରୁ ତା'ର ଶରୀରର ଗଠନ ଭଲଭାବେ ଉପଲବ୍ଧି କରି ହେଉଥିଲା । ତା'ର ସେଇ ଅନୁପମ ସୌନ୍ଦର୍ଯ୍ୟକୁ ଦେଖି ମହାତ୍ମାଙ୍କର ହୃଦୟ ଆକୃଷ୍ଟ ହୋଇଗଲା । ମନର ଚଞ୍ଚଳତା ବଢ଼ିବାକୁ ଲାଗିଲା, ଯେପରି କିଏ ତାଙ୍କୁ ଜୋର୍ କରି ତା' ଆଡ଼କୁ ଟାଣୁଥିବା ପରି ତାଙ୍କୁ ଲାଗିଲା । ମହାତ୍ମା ଜ୍ଞାନୀ ଥିଲେ, ବିବେକୀ ଥିଲେ, ତେଣୁ ସେ ବୁଝିପାରିଲେ ଯେ ଏହା ସୌନ୍ଦର୍ଯ୍ୟର ଆକର୍ଷଣ । ଏହାକୁ ନିଜ ନିକଟରେ ରଖିବା ନିରାପଦ ନୁହେଁ । ବର୍ତ୍ତମାନ ତାଙ୍କର ନିଜ ଉପରେ ଅବିଶ୍ୱାସ ଆସିଗଲା । ତଥାପି ସେ ବିବେକ ହରେଇ ନ ଥିଲେ । ସେ କହିଲେ—"ଦେବି ! ତୁମର ଏଠାରେ ରହିବା ଉଚିତ ହେବନାହିଁ । ନିକଟରେ ମୋର ଅନ୍ୟ ଏକ କୋଠରି ଅଛି ଯେଉଁଠାରେ ଜାଳେଣି କାଠ ଅଛି । ତୁମେ ସେଇଠାକୁ ଚାଲିଯାଅ ।"

ସେ କହିଲା—"ମହାରାଜ ! ଯାହା ଆପଣଙ୍କ ଆଜ୍ଞା । ମୋତେ ତ ରାତି କାଟିବାକୁ ପଡ଼ିବ । ଆପଣ ଯେଉଁଠାରେ ରହିବାର ଆଜ୍ଞା ଦେବେ ମୁଁ ସେଇଠାରେ ହିଁ ରହିବି । ମୋତେ ସେଇ କୋଠରିଟି ଦେଖାଇ ଦିଅନ୍ତୁ । ଆଲୋକ ନେଇ ମୋତେ ସେଠାରେ ପହଞ୍ଚାଇ ଦିଅନ୍ତୁ ।"

ମହାତ୍ମା କହିଲେ—"ହଉ ଚାଲ ।" ଏହା କହି ସେ ଆଗେ ଆଗେ ଆଲୋକ ନେଇ ଚାଲିଲେ, ପଛେ ପଛେ ସେଇ ସ୍ତ୍ରୀଟି ଗଲା । ଭଜନ କୁଟୀର ନିକଟରେ ସେଇ କୋଠରିଟି ଥିଲା । ମୁନି ତାକୁ ଗୋଟିଏ କୁଶର ମୋଟା ଆସନ, ଗୋଟିଏ ବଲ୍‌କଲ ତଥା ବସ୍ତ୍ର ଦେଲେ ଏବଂ କହିଲେ—"ତୁମର ସମସ୍ତ ବସ୍ତ୍ର ଓଦା ହୋଇ ଯାଇଛି; ତୁମେ ତାହା ବାହାର କରି ଶୁଖାଇ ଦିଅ, ଏଇ ବଲ୍‌କଲକୁ ପିନ୍ଧିଦିଅ ।"

ସେ କହିଲା—"ମହାରାଜଙ୍କର ଅସୀମ କୃପା ! ଅଳ୍ପ ସମୟ ପାଇଁ ଆପଣ ବାହାରେ ଛିଡ଼ା ହୁଅନ୍ତୁ, ମୁଁ ଏଠାରେ ବସ୍ତ୍ର ବଦଳାଇ ଦେଉଛି ।"

ମହାତ୍ମା କହିଲେ—"ହେଉ ବଦଳ କରିଦିଅ । ସେ ଏହା କହି ବାହାରେ ଛିଡ଼ା ହୋଇଗଲେ । ସେ ସ୍ତ୍ରୀର ବହୁମୂଲ୍ୟ ବସ୍ତ୍ରରୁ ସୁଗନ୍ଧିତ ଦ୍ରବ୍ୟର ସୁଗନ୍ଧ ଆସୁଥିଲା । ତା'ର ଆଭୂଷଣର ଆଭା ଥିଲା ଅନୁପମ । ପ୍ରତି ଅଙ୍ଗରୁ ସୌନ୍ଦର୍ଯ୍ୟର ମାଧୁର୍ଯ୍ୟ ବାହାରୁଥିଲା । ମୁନିଙ୍କର ମନ ବିଚଳିତ ହୋଇଗଲା । ସେ ଅନ୍ୟମନସ୍କ ରହିବାକୁ ଲାଗିଲେ । ସେ ଅନୁଭବ କଲେ ଯେ ତାଙ୍କ ମନ ଆଉ ତାଙ୍କର ବଶ ହୋଇ ରହିନାହିଁ । ତଥାପି ସେ ଏତେଦିନ ସଂଯମ ରକ୍ଷା କରିଥିବା ହେତୁ ତାଙ୍କ ବିବେକ ତାଙ୍କୁ ଛାଡ଼ି ପାରି ନ ଥିଲା । ସେ ଶୀଘ୍ରତା ସହ ସେ ସ୍ତ୍ରୀକୁ କହିଲେ—"ଦେଖ ଝିଅ ! ବର୍ତ୍ତମାନ କବାଟ ବନ୍ଦ କରିଦିଅ । ହଁ ଗୋଟିଏ କଥା ମନେ ରଖିଥିବ । ଏଇଠି ନିକଟରେ ଗୋଟିଏ ଭୂତ ରହୁଛି । ସେ ଅନେକ ପ୍ରକାର

Digitized by srujanika@gmail.com

ରୂପ ହୋଇପାରେ । କେତେବେଳେ ସେ ଛେଳି ହୋଇ ଆସେ ତ କେତେବେଳେ ସେ ଶିଆଳ ହୋଇ ଆସେ । ସେ ଯେପରି ଇଚ୍ଛାକରେ ସେପରି ବେଶ ହୋଇ ଆସିପାରେ । ଏପରିକି ସେ ମୋର ରୂପ ହୋଇ ମଧ୍ୟ ଆସିପାରେ । ତେଣୁ ରାତିରେ ସେ ମୋ ରୂପନେଇ ଆସି ତୁମକୁ କବାଟ ଖୋଲିବା ପାଇଁ କହିଲେ ତୁମେ ଆଦୌ ଖୋଲିବ ନାହିଁ । ସେ ଯେତେ ବିଶ୍ୱାସ ଦେଖାଇଲେ ସୁଦ୍ଧା ତୁମେ ଆଦୌ କବାଟ ଖୋଲିବ ନାହିଁ । ତା' କଥାରେ ଯଦି ତୁମେ କବାଟ ଖୋଲିଦିଅ ତେବେ ତୁମର ଆଦୌ ମଙ୍ଗଳ ହେବ ନାହିଁ ।"

ସେଇ ସ୍ତ୍ରୀଟି ସରଳତାସହ କହିଲା—"ନାଁ ମହାରାଜ ! ମୁଁ ଆପଣଙ୍କର ଆଜ୍ଞା ପାଳନ କରିବି । କେହି ଯଦି ମୋତେ କବାଟ ଖୋଲିବାକୁ କହେ ମୁଁ ଆଦୌ କବାଟ ଖୋଲିବି ନାହିଁ । ବର୍ତ୍ତମାନ ଆପଣ ଯାଆନ୍ତୁ, ବିଶ୍ରାମ କରନ୍ତୁ ।" ଏହା କହି ସେ ଭିତରୁ କବାଟ ବନ୍ଦ କରିଦେଲା । ମୁନି ଆସି ନିଜ କୋଠରିରେ ଶୋଇ ପଡ଼ିଲେ ।

ମହାତ୍ମା ମିଛଟାରେ ସେହି ଭୂତ ବିଷୟରେ କହିଥିଲେ; କାରଣ କୌଣସି ମୁହୂର୍ତ୍ତରେ ହୁଏତ ତାଙ୍କ ନିଜ ମନ ଯଦି ଚଞ୍ଚଳ ହୋଇପଡ଼େ ତେବେ ସ୍ତ୍ରୀଟି କବାଟ ନ ଖୋଲି ନିଜ ଧର୍ମରକ୍ଷା କରିପାରିବ । କିନ୍ତୁ ଯେତେବେଳେ ସେ ନିଜ କୁଟୀରକୁ ଫେରିଆସିଲେ ତାଙ୍କର ପଶ୍ଚାତାପ ହେଲା ଯେ କାହିଁକି ସେ ଏପରି କହି ଆସିଲେ । ରହି ରହି ତା'ର ସୌନ୍ଦର୍ଯ୍ୟ ତାଙ୍କର ମନେ ପଡ଼ୁଥିଲା । ତାଙ୍କର ମନ ବିବ୍ରତ ହୋଇପଡ଼ିଲା । ସେ ଉଠି ପାଠ କରିବାକୁ ବସିଲେ; କିନ୍ତୁ ସେଥିରେ ମଧ୍ୟ ତାଙ୍କର ମନ ଲାଗିଲା ନାହିଁ । ସେ ବହି ରଖିଦେଲେ । ହାତ ପାଦ ଧୋଇଲେ, ପାଣି ପିଇଲେ, ଆସନ ଉପରେ ଆଖି ବନ୍ଦ କରି ଗଡ଼ି ପଡ଼ିଲେ । କିନ୍ତୁ ବାଦ ତ ନିକଟସ୍ଥ କୋଠରିରେ ହିଁ ବନ୍ଦ ହୋଇ ରହିଥିଲା, ମୁନିଙ୍କ ଆଖିକୁ ବା ତାହା ଆସନ୍ତା କିପରି । ମନରେ ତାଙ୍କର ଅନେକ ବିଚାର, ଅନେକ ଚିନ୍ତା ଆସିବାକୁ ଲାଗିଲା । ମହାତ୍ମା ଆଉ ଶୋଇ ପାରିଲେ ନାହିଁ । ଅନିଚ୍ଛାସତ୍ତ୍ୱେ ସେଇ କୋଠରି ସମ୍ମୁଖରେ ଯେ ପହଞ୍ଚିଗଲେ; କିନ୍ତୁ ସାହସ ହେଲାନାହିଁ, ଫେରିଆସିଲେ । ତଥାପି ମନ ମାନିଲା ନାହିଁ । ପୁଣି ଗଲେ, ପୁଣି ଫେରିଲେ । ଏହିପରି ତିନି ଚାରିଥର ହୋଇଗଲା । ଶେଷରେ ସାହସ କରି ସମ୍ପୂର୍ଣ୍ଣ ମନୋବଳ ସଂଗ୍ରହ କରି ସେ କହିଲେ—"ଝିଅ ! ଶୋଇ ପଡ଼ିଲୁଣି କି ?"

ଭିତରୁ ସେ ଉତ୍ତର ଦେଲା—"ନାଁ ମହାରାଜ ! ଶୋଇନାହିଁ ।"

ମହାତ୍ମାଙ୍କର ଟିକେ ସାହସ ହୋଇଗଲା, ସେ କହିଲେ—"ଅଚ୍ଛା ଟିକିଏ କବାଟ ଖୋଲ, ତୁମକୁ କିଛି କହିବାକୁ ଅଛି । ପାଣି ରଖିବାକୁ ତ ଭୁଲିଯାଇଛି, ଗୋଟିଏ ବଲ୍‌କଲରେ ତ କାମ ଚଳିବ ନାହିଁ; ତେଣୁ ଆଉ ଗୋଟିଏ ବଲ୍‌କଲ ନିଅ ।"

Digitized by srujanika@gmail.com

ସେ କହିଲା—"ନାଁ ମହାରାଜ ! ମୋର କୌଣସି ବସ୍ତୁର ଆବଶ୍ୟକତା ନାହିଁ । ବର୍ଷା ହେଉଥିବାରୁ ଶୋଷ ହେଉନାହିଁ । ମୋ ବସ୍ତ୍ର ମଧ୍ୟ ଶୁଖିଲା ହୋଇଗଲାଣି; ତେଣୁ ଆଉ ବଲ୍‌କଲର ମଧ୍ୟ ଆବଶ୍ୟକତା ନାହିଁ । ଆପଣ କଷ୍ଟ ନ କରି ଯାଆନ୍ତୁ, ଶୋଇବେ ।"

ମହାତ୍ମା କହିଲେ—ନାଁ ଶୋଇବା ପାଇଁ କିଛି କଥା ନାହିଁ । ତୁମେ ଟିକେ କବାଟ ଖୋଲ । ଅନ୍ୟ କଥା କିଛି କହିବାକୁ ଅଛି ।"

ସେ କହିଲା—"ମହାରାଜ ! କାଲି ସକାଳେ ହିଁ ଅନ୍ୟ କଥା ।"

ମହାରାଜ କହିଲେ—"କ'ଣ ହେଲା, ବର୍ତ୍ତମାନ ଖୋଲିବା ପାଇଁ ତୁମର ଆପତ୍ତି ଅଛି କି ?"

ସେ ସ୍ତ୍ରୀଟି କହିଲା—"ହଁ ମୋର ଆପତ୍ତି ଅଛି । ଆପଣ ମହାତ୍ମା ନୁହନ୍ତି—ଭୂତ ! ମହାତ୍ମାଙ୍କର ବେଶ ହୋଇ ମୋତେ ଠକିବାକୁ ଆସିଛନ୍ତି । ମହାତ୍ମା ମୋତେ ପ୍ରଥମରୁ ହିଁ ଏ କଥା କହି ଯାଇଛନ୍ତି ।"

ଏହା ଶୁଣି ମହାତ୍ମା ହସିଦେଲେ ଏବଂ କହିଲେ—"ଏ କଥା ତ ମୁଁ ମିଛରେ କହି ଦେଇଥିଲି । ତୁମେ ମୋତେ ବିଶ୍ୱାସ କର ତଥା ଛିଦ୍ର ମଧ୍ୟରେ ଦେଖ ମୁଁ ସେଇ ମହାତ୍ମା ।"

ସ୍ତ୍ରୀଟି କହିଲା—"ମୁଁ ଭଲଭାବରେ ଛିଦ୍ର ମଧ୍ୟ ଦେଇ ଦେଖି ସାରିଲିଣି । ଆକାର ପ୍ରକାର କଥାବାର୍ତ୍ତା ସବୁ ଆପଣଙ୍କର ସେମିତି । ଏ କଥା ମଧ୍ୟ ମହାତ୍ମା ମୋତେ କହି ଯାଇଥିଲେ ଯେ ସେ ମୋର ବେଶ ହୋଇ ଆସିବ କିନ୍ତୁ ତୁ ଆଦୌ ତାକୁ ବିଶ୍ୱାସ କରିବୁ ନାହିଁ । ତେଣୁ ମହାରାଜ ! ଆପଣ ଭୂତ ହୁଅନ୍ତୁ କିମ୍ବା ମହାତ୍ମା ହୁଅନ୍ତୁ, ଆଜି ତ ମୁଁ କୌଣସି ପ୍ରକାରେ କବାଟ ଖୋଲିବି ନାହିଁ । ମୁଁ ମହାତ୍ମାଙ୍କର ଆଜ୍ଞାଧୀନା; ସେ ମୋତେ ଯେପରି ନିର୍ଦ୍ଦେଶ ଦେଇଛନ୍ତି ସେହିପରି ମୁଁ କରିବି । ତାଙ୍କ ଆଜ୍ଞା କବାଟ ନ ଖୋଲିବାକୁ । ତେଣୁ ମୁଁ କବାଟ ଖୋଲିବି ନାହିଁ ।"

ମହାତ୍ମା କହିଲେ—"ହଉ ତେବେ ମୁଁ ଅନ୍ୟ ମାର୍ଗରେ ଆସୁଛି ।"

ସ୍ତ୍ରୀଟି କହିଲା—"ହଁ ବହୁତ ଖୁସିରେ ଆସନ୍ତୁ । ମୋର କୌଣସି ଆପତ୍ତି ନାହିଁ ।" ବର୍ତ୍ତମାନ ମହାତ୍ମା ଅନ୍ୟ ଉପାୟ ସବୁ ଭାବିବାକୁ ଲାଗିଲେ ।

ସ୍ୱାମିଜୀ କହୁଛନ୍ତି—"ମୁନିମାନେ ! ପଶ୍ଚିମ ପଟରେ କଞ୍ଚା ମାଟିରେ ଘର କରିଯାଏ । ମୋଟା ମୋଟା କାଠ ସ୍ତମ୍ଭ ଉପରେ ରଖି ଏପଟ ସେପଟ ଗ୍ରେଟ ଗ୍ରେଟ

Digitized by srujanika@gmail.com

କାଠ ଦେଇ ତା' ଉପରେ ମାଟି ଦିଆହୁଏ । ସେ ପଟର ମାଟି ଏତେ ଶକ୍ତ ଯେ ବର୍ଷା ପଡ଼ିଲେ ମଧ୍ୟ ଗୁଡର କିଛି କ୍ଷତି ହୁଏନି । ଚୋରମାନେ ସେଇ କଞ୍ଚା ଗୁଡରେ ସିନ୍ଧିକରି ଦୁଇଟା ମୋଟା କାଠ ଭିତରେ ରହି ବାନ୍ଧ ଭିତରକୁ ଯାଆନ୍ତି, ପୁଣି ଚୋରିକରି ସେଇ ବାଟଦେଇ ବାହାରକୁ ବାହାରି ଚାଲିଆସନ୍ତି । ମହାତ୍ମା ମଧ୍ୟ ସେଇ ଉପାୟ ଚିନ୍ତାକଲେ । ସେ ଗୁଡ ଉପରେ ଚଢ଼ି ସିନ୍ଧ ତିଆରି କଲେ । ଦୁଇଟି ବଡ଼ କାଠ ସନ୍ଧିରୁ ଗୋଟେ କାଠ ବାହାର କରି ଗୋଟିଏ ବାଟ ବାହାର କଲେ । ସଂଯୋଗକୁ ସେ ଯେଉଁଠି ବାଟକଲେ ସେଠାରେ ଦୁଇ ବଡ଼ କାଠ ମଧ୍ୟରେ ଗଣ୍ଠି ରହିଯାଇଥିଲା । ତେଣୁ ସେଇ ବାଟ ଦେଇ ମଣିଷ ବାହାରିବାର ଉପାୟ ନ ଥିଲା । ଅନ୍ଧାର ହୋଇଥିବାରୁ ମହାତ୍ମା ଏହା ଦେଖି ପାରିଲେ ନାହିଁ । ସେ ରହି ବାନ୍ଧ ତଳକୁ ପକାଇ ଦେଲେ ଏବଂ ମୁହଁ ଭିତରକୁ ପୂରାଇ ପଶିବାକୁ ଚେଷ୍ଟାକଲେ । ଦୁଇହାତ ଏବଂ ମୁଣ୍ଡ ତଳକୁ ବାହାରିଗଲା; କିନ୍ତୁ ଅଣ୍ଟା ମଝିରେ ଲାଖିଗଲା । ସେ ବହୁତ ବଳ ପ୍ରୟୋଗ କରି ମଧ୍ୟ ଭିତରକୁ ଯାଇପାରିଲେ ନାହିଁ କିମ୍ବା ଉପରକୁ ମଧ୍ୟ ବାହାରି ଆସି ପାରିଲେ ନାହିଁ । ସିନ୍ଧିକୁ ପରି ମଝିରେ ଝୁଲି ରହିଲେ । ସେ ଯଦି ପୂର୍ଣ୍ଣଯୋଗୀ ହୋଇ-ଥାଆନ୍ତେ ତେବେ ଉପର ମହ, ଜନ, ତପ ଆଦି ଲୋକର ସୁଖ ଉପଭୋଗ କରି ଉପରକୁ ଯାଇ ଥାଆନ୍ତେ । ଯଦି ଗୃହସ୍ଥ ହୋଇଥାଆନ୍ତେ ତେବେ ତଳକୁ ଯାଇ ସାଂସାରିକ ସୁଖ ଭୋଗ କରି ପୁଣ୍ୟ କରି ସ୍ୱର୍ଗକୁ ଯାଇ ଥାଆନ୍ତେ । ବର୍ତ୍ତମାନନା ସେ ଏ ପଟର ହେଲେ ନାହିଁ, କି ସେପଟର ମଧ୍ୟ ହେଲେ ନାହିଁ । ମଝିରେ ବାବାଜୀ ଫାଶରେ ଛନ୍ଦି ହୋଇ ପଡ଼ିଲେ । ସକାଳ ହୋଇଗଲା । ଗଙ୍ଗାସ୍ନାନ କରିବା ନିମନ୍ତେ ଅନେକ ଲୋକ ଆସିଲେ । ମହାତ୍ମାଙ୍କୁ ଏପରି ଅବସ୍ଥାରେ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସକାଳର ପ୍ରକାଶରେ ମହାତ୍ମା ଦେଖିଲେ ଯେ, କୁଟୀର ଭିତରେ ଗ୍ରନ୍ଥିର ଯେ ଅପରୂପ ସୁନ୍ଦରୀ ପରିବର୍ତ୍ତେ ପାଚିଲା ଦାଢ଼ିବାଲା ଭଗବାନ୍ ବ୍ୟାସ ବସି ହସୁଛନ୍ତି ଏବଂ ବାରମ୍ବାର ଭାଗବତର ସେଇ ଶ୍ଲୋକ ପଢ଼ୁଛନ୍ତି—

"ମାତ୍ରା ସ୍ୱସ୍ରାଦୁହିତ୍ରା ବା ନାବିବିକ୍ତାସନୋ ଭବେତ୍, ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ।।"

ଏହାଶୁଣି ମହାତ୍ମା ଅତିଶୟ ଲଜ୍ଜିତ ହେଲେ ଏବଂ କହିଲେ—"ଭଗବାନ ! ଆପଣଙ୍କର କଥନ ସର୍ବଥା ସତ୍ୟ । ଆପଣଙ୍କ କଥା ଉପରେ ଅନଶନ କରି ମୁଁ ଭୁଲ୍ କରିଛି । ବର୍ତ୍ତମାନ ମୁଁ କହୁଛି ଆପଣଙ୍କର ଗୋଟିଏ ଗୋଟିଏ ଶବ୍ଦ ଅନୁଭବ ଏବଂ ସତ୍ୟ ଉପରେ ଆଧାରିତ ।" ଏହାପରେ ବ୍ୟାସ ତାଙ୍କୁ ଫାଶରୁ ବାହାର କଲେ ଏବଂ ଶ୍ରଦ୍ଧାସହ ତାଙ୍କୁ ପାଦ୍ୟସ୍ପର୍ଶର ଅଙ୍କ ଦେଇ ନିଜ ଆଶ୍ରମକୁ ଚାଲିଗଲେ ।

ସୂତ ମୁନି କହୁଛନ୍ତି—"ତେଣୁ ଶାସ୍ତ୍ରକାରମାନେ ଏଇ ମନକୁ ଶଠ, କପଟ ଏବଂ ପୁଂଶ୍ଚଳୀ ସ୍ତ୍ରୀ ସହ ସମାନ ବୋଲି କହିଛନ୍ତି । ମୁଁ ମନକୁ ଜିତି ଯାଇଛି ଏପରି

Digitized by srujanika@gmail.com

ବିଶ୍ୱାସ କେବେ ବି କରିବ ନାହିଁ । ଜୀବନର ଶେଷ ପର୍ଯ୍ୟନ୍ତ ଏହାର ଲଗାମ ଟାଣି ରଖିଥିବ । ଏଇକଥା ମହାରାଜ ଯଯାତି ନିଜ ପତ୍ନୀ ଦେବଯାନୀଙ୍କୁ କହୁଛନ୍ତି ।”

ଏହାଶୁଣି ଶୌନକ ମୁନି କହିଲେ—“ହଁ, ତେବେ ମହାରାଜ ଯଯାତି ତା’ପରେ କ’ଣ କଲେ ?”

ସୂତ ମୁନି ଉତ୍ତର ଦେଲେ—“ହଉ, ତେବେ ମୁଁ ବର୍ତ୍ତମାନ ମହାରାଜ ଯଯାତିଙ୍କର ଅବଶିଷ୍ଟ କଥା ଶୁଣାଉଛି । ଆପଣମାନେ ମନଧ୍ୟାନ ଦେଇ ଶୁଣନ୍ତୁ ।”

## ଛପ୍‌ପୟ

ନୃପତି ଯଯାତି ବିଚାର କରେଂ ହା ! ପାପ କମାୟୋ ।
ପାୟୋ ଦୁର୍ଲଭ ଦେହ ଭଜନ ବିନୁ ବ୍ୟର୍ଥ ଗଁବାୟୋ ॥
ସୁତ କୋ ୟୌବନ ଲୟୋ ବେଗ ବେଗେ ଜଣି-ବାସର ।
ତୋଉ ତୃପ୍ତି ନ ଭଈ, ଲହ୍ୟୋ ନହିଁ ସୁଖମୟ ଅବସର ॥
ତାତୈଂ ଅବସବ ତ୍ୟାଗି କେଂ, ତପ ହିତ ବନ ମହଁ ଯାଉଁଗୋ ।
ବିଷୟାଶା ତଜି ଭକ୍ତି ତୈଂ, ଶତ ହରି ମାଁହିଁ ଲଗାଉଁଗୋ ॥



Digitized by srujanika@gmail.com

# ମହାରାଜ ଯଯାତିଙ୍କର ପରମପଦ ପ୍ରାପ୍ତି

ସ ତତ୍ର ନିର୍ମୁକ୍ତ ସମସ୍ତସଙ୍ଗ ଆତ୍ମାନୁଭୂତ୍ୟା ବିଧୁତ ତ୍ରିଲିଙ୍ଗଃ ।
ପରେଽମଲେ ବ୍ରହ୍ମଣି ବାସୁଦେବେ ଲେଭେ ଗତିଂ
ଭାଗବତୀଂ ପ୍ରତୀତଃ ॥ *

(ଶ୍ରୀ ଭା ୯ ସ୍କ, ୧୯ ଅ, ୨୫ ଶ୍ଳୋକ)

### ଛପ୍‌ପୟ

ଯେମ୍ପି କରି ପଶ୍ଚାତାପ ପୁରୁ ସୁତ ତୁରତ ବୁଲାୟୌ ।
ଯୌବନ ଦୈକେଂ ଲଇ ଜରା ବପୁ ବଧି ସମଝାୟୌ ॥
ସବକୁଁ ଦୀୟୌ ରାଜ ପୁରୁ ସମ୍ରାଟ ବନାୟୌ ।
ରାଜପାଟ ସବ ତ୍ୟାଗି ଗୟୌ ବନ ମନ ହରଷାୟୌ ॥
କରେ ଘୋଂସଲ ତ୍ୟାଗ ଜବ, ପକ୍ଷୀ ପର ଦେ କମତହୀ ।
ତ୍ୟାଂ ବିଷୟ ତେମେଂ ବିରତ ହ୍ୱୈ, ବନ ଗମନେ ନୃପ ତୁରତହୀ ॥

ସକାଳର ଭୂଲ ଯଦି ସନ୍ଧ୍ୟାରେ ଘରକୁ ଫେରିଆସେ ତେବେ ତାକୁ ଭୂଲ କୁହାଯାଏନି । ଏଇ ସାଂସାରିକ ବିଷୟଭୋଗରେ ଏତେ ଅଧିକ ଆକର୍ଷଣ ଅଛି ଯେ ପ୍ରାଣୀ ମରିବା ପର୍ଯ୍ୟନ୍ତ ମଧ୍ୟ ସେ ସବୁ ତ୍ୟାଗ କରି ପାରେନା । ଯେତେ ବୈରାଗ୍ୟ କଥା କହିଲେ ମଧ୍ୟ ସେଇ ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶ ସୁଖର ମାଞ୍ଚ ଇନ୍ଦ୍ରିୟଙ୍କୁ ଏଇଥିରୁ ଦୂରେଇ ରଖିବା ଅତ୍ୟନ୍ତ କଠିନ ହୋଇପଡ଼େ । ଯେଉଁ ଭାଗ୍ୟଶାଳୀଙ୍କୁ ତା'ର ପୁଣ୍ୟର

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରଜା ! ତା'ପରେ ସେଇ ବିଶ୍ୱବିଖ୍ୟାତ ମହାରାଜ ଯଯାତି ସମ୍ପୂର୍ଣ୍ଣ ଶଙ୍କାମୁକ୍ତ ହୋଇ ଆତ୍ମାନୁଭୂତି ଦ୍ୱାରା ଏଇ ତ୍ରିଗୁଣମୟ ଲିଙ୍ଗ ଦେହରୁ ମୁକ୍ତ ହୋଇ ପରମବ୍ରହ୍ମ ପରମାତ୍ମା ବାସୁଦେବଙ୍କୁ ପ୍ରାପ୍ତ କରି, ଭାଗବତୀ ଗତି ପ୍ରାପ୍ତ ହେଲେ ।"

Digitized by srujanika@gmail.com

ପ୍ରଭାବରେ—ଭଗବତ୍ କୃପା ବଳରେ— ବିଷୟ ବୈରାଗ୍ୟ ଆସିଯାଏ ତଥା ଏହା ସତ୍ ଏହା ଅସତ୍; ଏପରି ଜ୍ଞାନ ଆସିଯାଏ, ତା'ର ସମସ୍ତ ଶୁଭ-ଅଶୁଭ କର୍ମ କ୍ଷୀଣ ହୋଇ ଯାଇଥାଏ । ଜ୍ଞାନ ରୂପକ ଅଗ୍ନି ସମସ୍ତ ଭଲମନ୍ଦ କର୍ମକୁ ଭସ୍ମସାତ୍ କରି ଦେଇଥାଏ । କର୍ମ ନାଶ ହେବା ଫଳରେ ପୁରୁଷ ପରମଗତି ପ୍ରାପ୍ତ ହୋଇଥାଏ ।

ମୁନିମାନଙ୍କୁ ସମ୍ବୋଧନ କରି ସୂତ ମୁନି କହୁଛନ୍ତି—"ମୁନିଗଣ ! ଯେତେବେଳେ ମହାରାଜ ଯଯାତିଙ୍କର ବିଷୟରୁ ବୈରାଗ୍ୟ ଆସିଗଲା, ସେ ନିଜ ପୁତ୍ର ପୁରୁଠାରୁ ପୁଣି ତାଙ୍କ ବୃଦ୍ଧାବସ୍ଥା ନେଇ ଆସିଲେ । ପୁରୁ ତରୁଣ ହୋଇଗଲେ ଏବଂ ଦେଖି ଦେଖି ମହାରାଜ ବୃଦ୍ଧ ହୋଇଗଲେ । ସେଇ ସମୟରେ ସେ ତାଙ୍କର ସମସ୍ତ ପ୍ରଜାଙ୍କୁ ଡକାଇ କହିଲେ—"ପ୍ରଜାଗଣ ! ମୁଁ ବର୍ତ୍ତମାନ ରାଜଗାଦି ଛାଡ଼ି ତପସ୍ୟା କରିବାକୁ ବଣକୁ ଯିବି, ତୁମେ ମୋ ସ୍ଥାନରେ ପୁରୁଙ୍କୁ ହିଁ ରାଜା ବୋଲି ସ୍ୱୀକାର କରିବ ।"

ପ୍ରଜାମାନେ କହିଲେ—"ହେ ରାଜା ! ଆପଣ ଧର୍ମର ସାରାଂଶ ଜାଣିବା ମହାପୁରୁଷ । ତଥାପି ମଧ୍ୟ ଆପଣ ଏପରି ନୀତି ବିରୁଦ୍ଧ କାର୍ଯ୍ୟ କାହିଁକି କରୁଛନ୍ତି ? ନିୟମାନୁସାରେ ଯଦୁ ହିଁ ରାଜସିଂହାସନର ଉତ୍ତରାଧିକାରୀ । ଜ୍ୟେଷ୍ଠପୁତ୍ର ହିଁ ରାଜଗାଦୀ ଲାଭ କରେ—ଏହା ସନାତନ ଧର୍ମର ନିୟମ । ଆପଣ ଏଇ ପାରମ୍ପରିକ ନିୟମକୁ ଭାଙ୍ଗି କନିଷ୍ଠ ପୁତ୍ର ପୁରୁଙ୍କୁ କାହିଁକି ରାଜା କରୁଛନ୍ତି ?"

ପ୍ରଜାମାନଙ୍କଠାରୁ ଏପରି ଯୁକ୍ତି ଶୁଣି ରାଜା କହିଲେ—"ପ୍ରଜାଗଣ ! ତୁମର ବିରୋଧ ଯଥାର୍ଥ । ନିୟମାନୁସାରେ ଯଦୁ ହିଁ ରାଜ୍ୟର ଉତ୍ତରାଧିକାରୀ; କିନ୍ତୁ ସେ ପୁତ୍ରର କର୍ତ୍ତବ୍ୟ କରି ନାହିଁ । ଯେ ମାତାପିତାଙ୍କର ଆଜ୍ଞାପାଳନ କରେ ସେଇ ହିଁ ପୁତ୍ର । ମୋର ଚାରି ପୁତ୍ର ଯଦୁ, ତୁର୍ବସୁ, ଅନୁ ଏବଂ ଦ୍ରୁହ୍ୟୁ ମୋର ଅନାଦର କରିଛନ୍ତି । ମୋ କଥା ଶୁଣି ନାହାଁନ୍ତି । ତେଣୁ ମୁଁ ସେମାନଙ୍କୁ ଅଭିଶାପ ଦେଇ ସେମାନଙ୍କୁ ରାଜ୍ୟଚ୍ୟୁତ କରି ଦେଇଛି । କନିଷ୍ଠ ହୋଇଥିଲେ ମଧ୍ୟ ପୁରୁ ଜ୍ୟେଷ୍ଠପୁତ୍ରର କାର୍ଯ୍ୟ କରିଛି । ସେ ନିଜର ସଦାଚାର, ସଂଯମ ତଥା ସୁଗୁଣ ଦ୍ୱାରା ମୋତେ ସନ୍ତୁଷ୍ଟ କରିଛି । ତେଣୁ ସେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ହିଁ ରାଜ୍ୟର ଉତ୍ତରାଧିକାରୀ । ମୁଁ କୌଣସି ଦ୍ୱେଷବଶତଃ କିମ୍ବା ପକ୍ଷପାତ କରି ଏପରି କରୁନାହିଁ । ମୁଁ ପ୍ରଥମରୁ ଶୁକ୍ରାଚାର୍ଯ୍ୟଙ୍କୁ ନିବେଦନ କରିଥିଲି ଯେ - ଯେଉଁ ପୁତ୍ର ମୋର ଜରାବସ୍ଥା ନେଇ ମୋତେ ତା'ର ଯୁବାବସ୍ଥା ଦେବ, ସେ ହିଁ ମୋର ରାଜ୍ୟର ଉତ୍ତରାଧିକାରୀ ହେବ । ଭଗବାନ୍ ଶୁକ୍ର ମଧ୍ୟ ତାହା ସମର୍ଥନ କରିଥିଲେ ଏବଂ ମୋତେ ସେଇ ଅନୁରୂପ ବର ମଧ୍ୟ ଦେଇଥିଲେ । ତାଙ୍କର କଥା ଅନୁସାରେ ମୁଁ ଏପରି କରୁଛି । ଆପଣମାନେ ମଧ୍ୟ ସମର୍ଥନ କରନ୍ତୁ । କାରଣ ପ୍ରଜାଙ୍କ ସମର୍ଥନ ବିନା କେହି ରାଜା ହୋଇପାରେନା ।"

Digitized by srujanika@gmail.com

ଏହାଶୁଣି ପ୍ରଜାଗଣ 'ସାଧୁ' 'ସାଧୁ' କହି ମହାରାଜାଙ୍କ କଥାକୁ ସମର୍ଥନ କଲେ । ତା'ପରେ ମହାରାଜ ଯଯାତି ନିଜ ହାତରେ ନିଜର ସୁବର୍ଣ୍ଣ-ମଣ୍ଡିତ ଦିବ୍ୟ ମୁକୁଟ ପୁରୁଙ୍କୁ ପିନ୍ଧାଇ ଦେଲେ । ସମସ୍ତ ପ୍ରଜା ପୁରୁଙ୍କୁ ରାଜା ବୋଲି ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ମହାରାଜ ତାଙ୍କର ଅନ୍ୟ ଚାରି ପୁତ୍ରଙ୍କୁ ମଧ୍ୟ ଚାରିଦିଗରେ ଚାରିଖଣ୍ଡ ରାଜ୍ୟ ଦେଇ ପୁରୁଙ୍କୁ ଅଧୀନ ମଣ୍ଡଳେଶ୍ୱର କରିଦେଲେ । ଦକ୍ଷିଣ-ପୂର୍ବ ଦିଗରେ ଦ୍ରୁହ୍ୟୁଙ୍କୁ, ଦକ୍ଷିଣରେ ଯଦୁଙ୍କୁ, ପଶ୍ଚିମରେ ତୁର୍ବସୁ ତଥା ଉତ୍ତରରେ ଅନୁଙ୍କୁ ରାଜ୍ୟ ଦେଲେ । ଏହିପରି ସମଗ୍ର ଭୂ-ମଣ୍ଡଳକୁ ଭାଗ ଭାଗ କରି ମହାରାଜ ଯଯାତି ନିଜ ପତ୍ନୀମାନଙ୍କ ସହିତ ତଥା ବ୍ରାହ୍ମଣମାନଙ୍କ ସହିତ ତପସ୍ୟା କରିବାକୁ ବଣକୁ ଚାଲିଗଲେ । ଏହି ପାଞ୍ଚ ପୁତ୍ରଙ୍କର ସନ୍ତାନ ମଧ୍ୟରୁ ଯଦୁଙ୍କ ସନ୍ତାନ ସନ୍ତତିଙ୍କୁ 'ଯାଦବ', ତୁର୍ବସୁଙ୍କ (ତୁରୁକ୍) ବଂଶଜଙ୍କୁ ଯବନ, ଦ୍ରୁହ୍ୟୁଙ୍କ ବଂଶଧରଙ୍କୁ ଭୋଜବଂଶୀ, ଅନୁଙ୍କର ସମୁଦ୍ର ତୀରରେ ଏବଂ ଟାପୁମାନଙ୍କରେ ରହୁଥିବା ବଂଶଜଙ୍କୁ ମ୍ଳେଚ୍ଛ ଏବଂ ପୁରୁଙ୍କ ବଂଶଜମାନଙ୍କୁ ପୌରବ କୁହାଗଲା ।

ରାଜ୍ୟଭାର ତ୍ୟାଗ କରି ମହାରାଜ ଯଯାତି ଅତ୍ୟନ୍ତ ଶାନ୍ତି ଲାଭ କଲେ । ସେ ବାନପ୍ରସ୍ଥ ମୁନିମାନଙ୍କ ପରି ବେଶ ଧାରଣ କରି, ବଣରେ ରହି ଘୋର ତପସ୍ୟା କଲେ । କନ୍ଦମୂଳ, ଫଳ ଖାଇ ଇନ୍ଦ୍ରିୟ ଦମନ କରି ଶାସ୍ତ୍ରୀୟ ବିଧିମତେ ସେ କଠୋର ନିୟମ ପାଳନ କରୁଥିଲେ । ସେ ବିଷୟ ଭୋଗରୁ ମୁହଁ ଆଡ଼େଇ ନେଇଥିଲେ । ଏହିପରି ସହସ୍ର ବର୍ଷ ପର୍ଯ୍ୟନ୍ତ ସେ ବଣରେ ତପସ୍ୟା କଲେ । ଶେଷରେ ସେ ନିଜର ପବିତ୍ର କୀର୍ତ୍ତିକୁ ପୃଥିବୀରେ ହିଁ ଛାଡ଼ି ଦେବତାମାନଙ୍କ ଦ୍ୱାରା ଅଭିନନ୍ଦିତ ହୋଇ ସ୍ୱର୍ଗକୁ ଗଲେ ଏବଂ ସେଠାରେ ଇନ୍ଦ୍ରଙ୍କ ସମ ଐଶ୍ୱର୍ଯ୍ୟ ଭୋଗକରି ସୁଖପୂର୍ବକ ରହିବାକୁ ଲାଗିଲେ । ତାଙ୍କର ସବୁଲୋକରେ ଗତି ଅବ୍ୟାହତ ଥିଲା । ସେ ଯେତେବେଳେ ଚାହୁଁଥିଲେ ବ୍ରହ୍ମଲୋକକୁ ଚାଲି ଯାଉଥିଲେ ତଥା ଯେତେବେଳେ ଚାହୁଁଥିଲେ ବରୁଣଲୋକରେ ମଧ୍ୟ ଆନନ୍ଦରେ ବିହାର କରୁଥିଲେ । ଥରକ ପାଇଁ ତାଙ୍କୁ ସ୍ୱର୍ଗଚ୍ୟୁତ ହେବାକୁ ପଡ଼ିଥିଲା ।

ଏହାଶୁଣି ଶୌନକ ମୁନି ପଚାରିଲେ—"ଧର୍ମାତ୍ମା ମହାରାଜ ଯଯାତିଙ୍କୁ ପୁଣି ସ୍ୱର୍ଗଚ୍ୟୁତ ହେବାକୁ କାହିଁକି ପଡ଼ିଥିଲା ? ଏପରି କି ଅପରାଧ ସେ କରିଥିଲେ ଯାହାଦ୍ୱାରା ତାଙ୍କର ଏପରି ପତନ ହେଲା । ଦୟାକରି ସେ କଥା ଆମକୁ ଶୁଣାନ୍ତୁ ।"

ଏହାଶୁଣି ସୂତ ମୁନି କହିଲେ—"ମହାରାଜ ! ଅପରାଧ କ'ଣ ! ସେ ସବୁ ଇନ୍ଦ୍ରଙ୍କ ଷଡ଼ଯନ୍ତ୍ର ଥିଲା । କଥା ହେଉଛି, ଦିନେ ଇନ୍ଦ୍ର ପଚାରିଲେ—"ରାଜା ! ରାଜ୍ୟଭାର ଛାଡ଼ି ବଣରେ ଆପଣ କାହାପରି ତପସ୍ୟା କଲେ ?"

Digitized by srujanika@gmail.com

ସେଇ ସମୟରେ କଥା କହୁ କହୁ ରାଜାଙ୍କର ଟିକେ ଅହଂଭାବ ଆସିଗଲା । ସେ କହିଲେ—"ଦେବେନ୍ଦ୍ର ! ଆପଣ ମୋ ତପସ୍ୟା ବିଷୟରେ କ'ଣ ପଚାରୁଛନ୍ତି ? ମୋ ସହିତ ସମକକ୍ଷ ସେପରି କେହି ତପସ୍ୟା କରିଥିଲେ ସିନା ମୁଁ ତାଙ୍କ ନାମ କହିବି । ମୁଁ ଯେପରି ତପସ୍ୟା କରିଛି ସେପରି ତପସ୍ୟା ଦେବତାମାନଙ୍କ ମଧ୍ୟରେ ମନୁଷ୍ୟ, ଗନ୍ଧର୍ବ ତଥା ମହର୍ଷିମାନଙ୍କ ମଧ୍ୟରେ କିଏ କରିଥିବ ଏପରି କେହି ମୋତେ ଦେଖାଯାଉ ନାହାନ୍ତି । ମୋ ସମାନ ତପସ୍ୟା କେହି କରି ନଥିବେ ।"

ଏହାଶୁଣି ଇନ୍ଦ୍ର ହସିଦେଲେ । ତାଙ୍କର ଷଡ଼ଯନ୍ତ୍ର ସଫଳ ହେଲା । ସେ କହିଲେ—"ହେ ରାଜା ! ନିଜ ପୁଣ୍ୟକୁ ଯେ ନିଜ ମୁହଁରେ ପ୍ରଶଂସା କରେ ତା'ର ପୁଣ୍ୟ ସେହି ସମୟରେ ହିଁ କ୍ଷୀଣ ହୋଇଯାଏ । ଇଏ ହେଲା ପ୍ରଥମ । ଦ୍ୱିତୀୟରେ ଆପଣ ସମସ୍ତଙ୍କ ତପସ୍ୟା ବିଷୟରେ ଜାଣିନାହାଁନ୍ତି । ଜାଣି ନଥାଇ ସୁଦ୍ଧା ଆପଣ ଆପଣଙ୍କ ସମାନ ତଥା ଆପଣଙ୍କଠାରୁ ଶ୍ରେଷ୍ଠ ପୁରୁଷଙ୍କର ଅନାଦର କଲେ । ତେଣୁ ଆପଣଙ୍କର ସମସ୍ତ ପୁଣ୍ୟ କ୍ଷୀଣ ହୋଇଗଲା । ପୁଣ୍ୟ କ୍ଷୀଣ ହୋଇଗଲେ ପ୍ରାଣୀ ସ୍ୱର୍ଗରେ ରହିପାରେ ନାହିଁ । ବର୍ତ୍ତମାନ ଆପଣଙ୍କୁ ମର୍ତ୍ତ୍ୟଲୋକକୁ ଓଲଟା ମୁହଁ କରି ପଡ଼ିବାକୁ ହେବ । ସମ୍ଭାଳି ଯାଅ, ଓଲଟା ମୁହଁ କରି ପଡ଼ିବାକୁ ପ୍ରସ୍ତୁତ ହୋଇଯାଅ ।"

ଏହାଶୁଣି କିନ୍ତୁ ମହାରାଜ ଯଯାତି ଆଦୌ ବିଚଳିତ ହେଲେନାହିଁ । ସେ କହିଲେ—"ଯଦି ଭୁଲବଶତଃ ଅନ୍ୟର ଅନାଦର କରିବାହେତୁ ମୋର ପୁଣ୍ୟ ନାଶ ହୋଇ ମୋତେ ତଳକୁ ପଡ଼ିବାକୁ ହେବ, ତେବେ ସେଥିପାଇଁ ମୋର ଆଦୌ ଚିନ୍ତା ନାହିଁ । କିନ୍ତୁ ଦେବରାଜ ! ମୁଁ କେବଳ ଏତିକି ଚାହୁଁଛି ଯେ ସ୍ୱର୍ଗରୁ ଚ୍ୟୁତ ହେଲେ ସୁଦ୍ଧା ମୋତେ ସଜ୍ଜନଙ୍କ ମଧ୍ୟରେ ରହିବାକୁ ପଡ଼ୁ ।"

ଦେବରାଜ ଇନ୍ଦ୍ର କହିଲେ—"ତଥାସ୍ତୁ" । ଦେବଦୂତ ତାଙ୍କୁ ତତ୍‌କ୍ଷଣାତ୍ ତଳେ ପକାଇ ଦେଲେ । ସେ ନିଜ ତେଜ ଦ୍ୱାରା ଦଶ ଦିଗକୁ ଆଲୋକିତ କରି ରାଜର୍ଷି ବିଶ୍ୱାମିତ୍ରଙ୍କ ପୁତ୍ର ଅଷ୍ଟକଙ୍କର ଯଜ୍ଞ ଭୂମିରେ ପଡ଼ିଲେ । ସେ ସମୟରେ ସେଠାରେ ପ୍ରତର୍ଦ୍ଦନ, ବସୁମନା ଏବଂ ମହାରାଜ ଉଶୀନରଙ୍କ ପୁତ୍ର ପୁଣ୍ୟଶ୍ଳୋକ ଶିବି ମଧ୍ୟ ଉପସ୍ଥିତ ଥିଲେ । ଯେତେବେଳେ ମହାରାଜ ଯଯାତି ରାଜ୍ୟ ଶାସନ କରୁଥିଲେ ସେତେବେଳେ ତାଙ୍କର ସ୍ନାତକ ଗୁରୁଦକ୍ଷିଣା ନିମିତ୍ତ ବିପୁଳ ଧନ ଯାଚଜ୍ଞା କରିବାକୁ ଆସିଥିଲେ । ମହାରାଜଙ୍କ ପାଖରେ ଏତେ ଧନ ନ ଥିଲା । ତେଣୁ ସେ ନିଜ କନ୍ୟା ଋଷିଙ୍କୁ ଦେଇଦେଲେ । ସେଇ କନ୍ୟା ନିକଟରୁ ଭିନ୍ନ ଭିନ୍ନ ରାଜାଙ୍କର ଏଇ ଅଷ୍ଟକ ଇତ୍ୟାଦି ଚାରି ପୁତ୍ର ଜନ୍ମ ହୋଇଥିଲେ । ଏଇ ଦୃଷ୍ଟିରୁ ମହାରାଜ ଯଯାତି ଥିଲେ ତାଙ୍କର ମାତାମହ (ଅଜା) । ଏମାନଙ୍କୁ ଏ କଥା ଜଣା ନ ଥିଲା । ମହାରାଜ ପୃଥିବୀକୁ

ହର୍ଷ କଲେ ନାହିଁ । ମୁହଁ ଉପରେ ଛିଡ଼ା ହୋଇ ସେ ଅଷ୍ଟକଙ୍କର ସବୁ ପ୍ରଶ୍ନର ଉତ୍ତର ଦେଲେ । ତାଙ୍କ ସହ ଭ୍ରମଣ କଲେ । ଏହା ପ୍ରଭାବରେ ମହାରାଜ ଯଯାତି ପୁଣି ନିଜ ଶରୀର ସହ ସ୍ୱର୍ଗକୁ ଫେରିଗଲେ । ସେଠାରୁ ସେ ଅନ୍ୟାନ୍ୟ ଲୋକରେ ବିହାର କରି କରି ଭଗବାନଙ୍କର ନିତ୍ୟଧାମ ବୈକୁଣ୍ଠକୁ ଗଲେ ଯେଉଁଠାରୁ ଆଉ ଫେରି ହୁଏନାହିଁ । ଏହିପରି ମହାତ୍ମା ଯଯାତି ଭଗବଦ୍ ଭକ୍ତିର ପ୍ରଭାବରେ ପରମପଦ ପ୍ରାପ୍ତ ହେଲେ ।

ଦେବଯାନୀଙ୍କୁ ମହାରାଜ ଯେତେବେଳେ ସେ ଛେଳି ଦୁଇଟିର କାହାଣୀ କହୁଥିଲେ ସେତେବେଳେ ସେ ପ୍ରଥମେ ତାହା ଏକ ପରିହାସ ବୋଲି ମନେ କରିଥିଲି । କିନ୍ତୁ ଯେତେବେଳେ ମହାରାଜ ଯଯାତି ସର୍ବସ୍ୱ ତ୍ୟାଗ କରି ବଣକୁ ଚାଲିଗଲେ ସେତେବେଳେ ଦେବଯାନୀ ମଧ୍ୟ ଏହି ସାଂସାରିକ ଭୋଗ ଏବଂ ସମ୍ବନ୍ଧକୁ ଅନିତ୍ୟ ତଥା କ୍ଷଣଭଙ୍ଗୁର ବୋଲି ମନେକରି ଏବଂ ଏହାକୁ ଭଗବାନଙ୍କ ଦ୍ୱାରା ରଚିତ ମାୟା ବୋଲି ଜାଣି; ଏ ସବୁରୁ ଆସକ୍ତି ତ୍ୟାଗ କରି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ନିକଟରେ ମନ ଲଗାଇ ତନ୍ମୟ ହୋଇଗଲି ଏବଂ ଶେଷରେ ଏହି ପାର୍ଥିବ ଶରୀର ତ୍ୟାଗକରି ସତ୍-ସ୍ୱରୂପରେ ମିଶିଗଲି ।"

ସୂତମୁନି କହୁଛନ୍ତି—"ମୁନିଗଣ ! ଏହିପରି ଥିଲା ମହାରାଜ ଯଯାତିଙ୍କର ଚରିତ । ସେହି ଧରମ ଯଶସ୍ୱୀଙ୍କ ବର୍ଣ୍ଣନ ମୁଁ ଯେଉଁ ଭଗବାନ ବାସୁଦେବଙ୍କ କୃପାରୁ କରିପାରିଲି; ସେହି ସର୍ବାନ୍ତର୍ଯାମୀ, ସର୍ବବ୍ୟାପକ, ସମ୍ପୂର୍ଣ୍ଣ ଜଗତର ରଚୟିତା ସକଳ ପ୍ରାଣୀର ଆଶ୍ରୟସ୍ଥଳ ଶାନ୍ତ ସ୍ୱରୂପ ଶ୍ରୀହରିଙ୍କର ପାଦପଦ୍ମରେ ମୁଁ ବାରମ୍ବାର ପ୍ରଣାମ କରୁଛି ।"

## ଛପ୍‌ପୟ

ଘୋର ତପସ୍ୟା କରୀ ଶତ୍ରୁ ଭଗବତ୍ ମହଁ ଲଗେଯା ।<br>
ତ୍ରିଭୁବନ ବ୍ୟାପୀ କୀର୍ତ୍ତି ଅଂତ ମହଁ ନୃପ ତନ ତ୍ୟାଗେୟା ॥<br>
ଗୟେ ସ୍ୱର୍ଗ ତପ ଅହଙ୍କାର ତେ ଗଇ ଭୂବ ଆୟେ ।<br>
ତଇ ସଜ୍ଜନ ସଂସର୍ଗ ଫେର ହୁ ସ୍ୱର୍ଗ ସିଧାୟେ ॥<br>
ସବ ଲୋକନି କେ ଭୋଗ ସୁଖ, କର୍ ନହୀଂ ତିନ ମହଁ ରତୀ ।<br>
ପହୁଁଚେ ପୁନି ବୈକୁଣ୍ଠ ନୃପ, ପାଇ ଭଗବତୀ ଗତୀ ॥

●

Digitized by srujanika@gmail.com

# ପୁରୁବଂଶୀ ମହାରାଜ ଦୁଷ୍ମନ୍ତ

ପୁରୋର୍ବଂଶଂ ପ୍ରବକ୍ଷାମି ଯତ୍ର ଜାତୋଽସି ଭାରତ ।
ଯତ୍ର ରାଜର୍ଷୟୋ ବଂଶ୍ୟା ବ୍ରହ୍ମବଂଶ୍ୟାଶ୍ଚ ଜଜ୍ଞିରେ ॥ *

(ଶ୍ରୀ ଭା ୯ ସ୍କ, ୨୦ ଅ, ୧ ଶ୍ଳୋ)

**ଛପ୍ପୟ**

ନୃପ ଯଯାତ ଲଘୁ ପୁତ୍ର ପୁରୁ କୋ ବଂଶ ସୁନାଉଁ ॥
ଜନ୍ମେଜୟ୍ ତନ ପୁତ୍ର ଭୟେ, ତନ କୁଳ-ଯଶ ଗାଉଁ ॥
ରୈଦହ ପିଢ଼ି ମାହିଁ ଭୟେ ଦୁଷ୍ମନ୍ତ ଭୂପବର ।
ପରମ ଯଶସ୍ୱୀ ବୀର ଶକ୍ତୁଜିତ ବଂଶ ଯୈଶସ୍କର ॥
ଦେବବଧୂଟୀ ମେନକା, ସୂତା ପ୍ରେମ ମହଁ ଫଁସି ଗୟେ ॥
ଭୟୋ 'ବର୍ଷ' ଜିନ ନାମ ତେଁ,ଭରତ ତନୟ ତନକେଭୟେ ॥

ବଂଶ ପରମ୍ପରାକୁ ଅକ୍ଷୁଣ୍ଣ ରଖିବା ପିତୃଋଣ ପରିଶୋଧ ନିମନ୍ତେ ଅତ୍ୟନ୍ତ ଆବଶ୍ୟକ । ପୂର୍ବପୁରୁଷମାନେ ଏଇ ଆଶା ରଖି ଥାଆନ୍ତି ଯେ ଆମ ବଂଶରେ ଏପରି କେହି ତେଜସ୍ୱୀ ଯଶସ୍ୱୀ ତଥା ଭଗବତ୍ ଭକ୍ତ ହେବ ଯେକି ସ୍ୱୟଂ ମୁକ୍ତି ପାଇବ, ଆଗପଛ ପୁରୁଷଙ୍କୁ ମଧ୍ୟ ମୁକ୍ତି ଦେଇଦେବ । ପୃଥିବୀ ଉପରେ ଯେତେଦିନ ଯାଏ ଯାହାର ଯଶ ରହିଥାଏ ସେ ସେତିକି ଦିନଯାଏ ସ୍ୱର୍ଗରେ ରହି ସୁଖ ଉପଭୋଗ କରିଥାଏ । ଯାହାକୁ ଏଠି କେହି ଜାଣି ନଥାନ୍ତି ତାକୁ ସ୍ୱର୍ଗରେ ବା ଜାଣିବ କିଏ

---

* ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ ସମ୍ବୋଧନ କରି କହୁଛନ୍ତି—"ହେ ରାଜା ! ଯେଉଁ ପୁରୁବଂଶରେ ଆପଣଙ୍କର ଜନ୍ମ ହୋଇଛି, ଯେଉଁ ପୁରୁବଂଶରେ ଅନେକ ରାଜର୍ଷିଙ୍କର ଜନ୍ମ ହୋଇଛି ଏବଂ ବ୍ରାହ୍ମଣ ବଂଶ ଏଇଥିରୁ ଚାଲିଛି, ମୁଁ ବର୍ତ୍ତମାନ ସେଇ ପୁରୁବଂଶର ବର୍ଣ୍ଣନ କରୁଛି ।"

Digitized by srujanika@gmail.com

ଅଣ୍ଡ ତା'ପାଇଁ ସେଠି ଯାଗା ରହିବ କପର ? ଯାହାର ନାମ ଦ୍ୱାରା ବଂଶ ବିଖ୍ୟାତ ହୋଇଥାଏ, ଯାହାର ନାମ ପ୍ରତିଦିନ ଅନ୍ୟମାନେ ନେଇଥାଆନ୍ତି, ସେ ତ ନିଜର ଯଶଦ୍ୱାରା ଚିରଦିନ ପାଇଁ ଅମର ହୋଇଯାଏ । ପଞ୍ଚଭୌତିକ ଶରୀର ନ ରହିଲେ ମଧ୍ୟ ତା'ର କୀର୍ତ୍ତିମୟ ଦେହ ସର୍ବତ୍ର ବ୍ୟାପ୍ତ ହୋଇଥାଏ ।

ସୂତ ମୁନି କହୁଛନ୍ତି—"ମହାରାଜ ଯଯାତିଙ୍କର କନିଷ୍ଠ ପୁତ୍ର ପୁରୁଙ୍କ ବଂଶ ବିଷୟରେ ବର୍ତ୍ତମାନ ମୁଁ ଶୁଣାଉଛି । ଏ ବଂଶରେ ଅନେକ କ୍ଷତ୍ରିୟ ବଂଶ ସୃଷ୍ଟି ହୋଇଥିଲା, ଯେଉଁମାନେ ନିଜ ଶୁଦ୍ଧାଚରଣ ଫଳରେ ବ୍ରାହ୍ମଣ ହୋଇଯାଇଥିଲେ । ଏହାପରି ଏ ବଂଶରେ ରାଜର୍ଷି ଏବଂ ବ୍ରହ୍ମର୍ଷିଙ୍କର ମଧ୍ୟ ଜନ୍ମ ହୋଇଥିଲା ।

ମହାରାଜ ପୁରୁଙ୍କ ପୁତ୍ର ହେଲେ ଜନ୍ମେଜୟ ଯେ କି ପୌରବ ନାମରେ ଖ୍ୟାତ ହୋଇଥିଲେ । ଜନ୍ମେଜୟଙ୍କର ପୁତ୍ର ହେଲେ ପ୍ରଚିନ୍‌ବାନ । ତାଙ୍କ ପୁତ୍ର ହେଲେ ପ୍ରବୀର ଏବଂ ପ୍ରବୀରଙ୍କର ପୁତ୍ର ହେଲେ ନମସ୍ୟୁ, ନମସ୍ୟୁଙ୍କର ପୁତ୍ର ଚାରୁପଦ, ତାଙ୍କର ପୁତ୍ର ହେଲେ ସୁଧୁ, ସୁଧୁଙ୍କର ବହୁଗବ, ତାଙ୍କର ସଯାତି ଏବଂ ସଯାତିଙ୍କର ଅହଂଯାତି । ଅହଂଯାତିଙ୍କର ପରମ ଯଶସ୍ୱୀ ପୁତ୍ର ହେଲେ ରୌଦ୍ରାଶ୍ୱ । ଏହି ମହାରାଜ ରୌଦ୍ରାଶ୍ୱ ସ୍ୱର୍ଗର ପରମ ସୁନ୍ଦରୀ ଘୃତାଚୀ ଦ୍ୱାରା ଦଶ ପୁତ୍ର ଉତ୍ପନ୍ନ କଲେ, ଯାହାଙ୍କ ନାମ—ଋତେୟୁ, କୁକ୍ଷେୟୁ, ସ୍ଥଣ୍ଡିଲେୟୁ, କୃତେୟୁ, ଜଲେୟୁ, ସନ୍ନେୟୁ, ଧର୍ମେୟୁ, ସତ୍ୟେୟୁ, ବ୍ରତେୟୁ, ଏବଂ ବନେୟୁ ରୂପେ ପ୍ରସିଦ୍ଧ ହେଲା ।

ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ ଋତେୟୁ । ତେଣୁ ନିୟମାନୁସାରେ ଋତେୟୁ ହିଁ ରାଜଗାଦିରେ ବସିଲେ । ସେଇ ଋତେୟୁଙ୍କର ପୁତ୍ରର ନାମ ଥିଲା ରନ୍ତିଭାର । ମହାରାଜ ରନ୍ତିଭାର ପରମ ଧାର୍ମିକ, ଯଶସ୍ୱୀ, ତଥା ରାଜର୍ଷି ଥିଲେ । ତାଙ୍କର ସୁମତି, ଧ୍ରୁବ ଏବଂ ଅପ୍ରତିରଥ—ଏହି ତିନି ପରମ ଯଶସ୍ୱୀ ପୁତ୍ର ହେଲେ । ସବୁଠାରୁ ବଡ଼ ଥିଲେ ସୁମତି, ତେଣୁ ନିୟମ ଅନୁସାରେ ସେ ରାଜା ହେଲେ । ସବୁଠାରୁ ଶ୍ରେଷ୍ଠ ଅପ୍ରତିରଥ ଅତ୍ୟନ୍ତ ଧର୍ମାତ୍ମା ତଥା ବ୍ରାହ୍ମଣ ଭକ୍ତିଭର ଥିଲେ । ତାଙ୍କର ପୁତ୍ର ରାଜର୍ଷି କଣ୍ୱ । କଣ୍ୱଙ୍କର ପୁତ୍ର ହେଲେ ମେଧାତିଥି । ମେଧାତିଥି-ଙ୍କର ପୁତ୍ର ପ୍ରସ୍କଣ୍ୱ ଇତ୍ୟାଦି ନିଜ କର୍ମ ଦ୍ୱାରା ବ୍ରାହ୍ମଣ ହୋଇଯାଉଥିଲେ । ତାଙ୍କର ବଂଶ କ୍ଷତ୍ରିୟଙ୍କ ବଂଶଠାରୁ ପୃଥକ୍ ହୋଇଗଲା । ବର୍ତ୍ତମାନ ମହାରାଜ ସୁମତିଙ୍କର ବଂଶଚରିତ ଶୁଣନ୍ତୁ । ମହାରାଜ ସୁମତିଙ୍କର ପୁତ୍ର ହେଲେ ରୈଭ୍ୟ । ସେଇ ରୈଭ୍ୟଙ୍କର ପୁତ୍ର ହେଲେ ପରମ ଯଶସ୍ୱୀ ଦୁଷ୍ମନ୍ତ; ଯେ ମେନକା ଅପ୍‌ସରାଠାରୁ ଜନ୍ମିଥିବା ପରମ ସୁନ୍ଦରୀ ଶକୁନ୍ତଳାଙ୍କୁ ବିବାହ କରିଥିଲେ ।"

Digitized by srujanika@gmail.com

ଏହା ଶୁଣି ଶୌନକ ମୁନି ସୂତ ମୁନିଙ୍କୁ ପଚାରିଲେ—"ମହାରାଜ ଦୁଷ୍ମନ୍ତଙ୍କର ଦେବୀ ଶକୁନ୍ତଳାଙ୍କ ସହିତ ଭେଟ କେଉଁଠି ହେଲା ଏବଂ ତାଙ୍କର ବିବାହ କେଉଁ ପ୍ରକାରରେ ହେଲା ? ଏ ବିଷୟ ଆମକୁ ଦୟାକରି ଶୁଣାନ୍ତୁ ।"

ସୂତ ମୁନି ଉତ୍ତର ଦେଲେ—"ମହାରାଜ ! ଏ ପ୍ରସଙ୍ଗ ଅତ୍ୟନ୍ତ ସରସ ତଥା ରୁଚି ବୋଧକ । ମୁଁ ଏହା ଶୁଣାଉଛି । ମହାରାଜ ଦୁଷ୍ମନ୍ତ ପୌରବବଂଶରେ ରତ୍ନସମ ପ୍ରକାଶିତ ହୋଇଥିଲେ । ସେ ପରମ ଧର୍ମାତ୍ମା ଥିଲେ । ଆସମୁଦ୍ର ସ୍ଥଳ ଆଦି ଭୂ-ମଣ୍ଡଳର ସେ ଥିଲେ ଏକମାତ୍ର ଅଧୀଶ୍ୱର । ତାଙ୍କ ସମକକ୍ଷ ରାଜା ଏହି ପୃଥିବୀରେ ଦ୍ୱିତୀୟ କେହି ନ ଥିଲେ । ମ୍ଳେଚ୍ଛ, ଡାକୁ ତଥା ସମସ୍ତ ବର୍ଣ୍ଣାଶ୍ରମୀ ତାଙ୍କ ଶାସନର ଅଧୀନ ଥିଲେ । ତାଙ୍କ ସମୟରେ ଜମି ଚାଷ କରି ଧାନ ବୁଣିବାର ଆବଶ୍ୟକତା ନ ଥିଲା । କିଛି ନ କରି ମଧ୍ୟ ଫସଲ ଉତ୍ପନ୍ନ ହେଉଥିଲା । ଉପଯୁକ୍ତ ସମୟରେ ବର୍ଷା ହେଉଥିଲା । ବ୍ରାହ୍ମଣମାନେ ତପସ୍ୟାରେ ମଗ୍ନ ରହୁଥିଲେ, କ୍ଷତ୍ରିୟମାନେ ପ୍ରଜାପାଳନ କରୁଥିଲେ । ବୈଶ୍ୟମାନେ ନିଜ ବ୍ୟାପାରରେ କପଟ କରୁ ନ ଥିଲେ । ଶୂଦ୍ରମାନେ ଶ୍ରଦ୍ଧାସହି ସବୁବର୍ଣ୍ଣର ସେବା କରୁଥିଲେ । ସ୍ୱୟଂ ରାଜା ମଧ୍ୟ ଅତ୍ୟନ୍ତ ହୃଷ୍ଟପୁଷ୍ଟ ତଥା ଯୁଦ୍ଧବିଦ୍ୟା ବିଶାରଦ ଥିଲେ । ସେ ଶକ୍ତିରେ ଭଗବାନ ବିଷ୍ଣୁଙ୍କର ସମକକ୍ଷ ତଥା ତେଜରେ ସୂର୍ଯ୍ୟ ସମ ଜାଜ୍ୱଲ୍ୟମାନ ଥିଲେ । ପ୍ରଜାମାନେ ତାଙ୍କ ବ୍ୟବହାରରେ ସର୍ବଦା ସନ୍ତୁଷ୍ଟ ରହୁଥିଲେ । ଏପରି ସମ୍ରାଟ ପାଇ ସେମାନେ ନିଜକୁ ସୌଭାଗ୍ୟଶାଳୀ ମନେ କରୁଥିଲେ ।

ମହାରାଜ ମୃଗୟା କରିବାକୁ ଅତ୍ୟନ୍ତ ଭଲ ପାଉଥିଲେ । ସେ ନିଜ ରାଜଧାନୀ ହସ୍ତିନାପୁରର ନିକଟବର୍ତ୍ତୀ ଜଙ୍ଗଲକୁ ମୃଗୟା ନିମନ୍ତେ ପ୍ରାୟ ଯାଉଥିଲେ । ଥରେ ମହାରାଜ ନିଜ ସେନାସହିତ ଅତ୍ୟନ୍ତ ଆଡ଼ମ୍ବର ସହକାରେ ବଣକୁ ମୃଗୟା ନିମନ୍ତେ ବାହାରିଲେ । ପ୍ରଜାମାନଙ୍କୁ ଯେତେବେଳେ ଜଣାପଡ଼ିଲା ଯେ ମହାରାଜ କେତେଦିନ ପର୍ଯ୍ୟନ୍ତ ବଣକୁ ଶିକାର କରିବାକୁ ଯାଉଛନ୍ତି ପ୍ରେମବଶତଃ ସେମାନେ ତାଙ୍କୁ ସାକ୍ଷାତ କରିବାକୁ ଆସିଲେ । ସ୍ତ୍ରୀମାନେ ଦୂରରୁ ରାଜାଙ୍କ ଦର୍ଶନ କଲେ । ପ୍ରଜାମାନେ ଜୟ ଜୟକାର ସହ ତାଙ୍କ ପଛେ ପଛେ ଚାଲିଲେ । ଆଗେ ଆଗେ ବାଜା ବାଜୁଥିଲା । ପଛରେ ଚତୁରଙ୍ଗ ସେନା ଚାଲୁଥିଲେ । କୈଳାସ ଶିଖରସମ ହାତୀ ଉପରେ ବିରାଜମାନ ହୋଇ ରାଜା ପଥ ଅତିକ୍ରମ କରୁଥିଲେ । ତାଙ୍କ ମଥା ଉପରେ ସୁବର୍ଣ୍ଣ ରଙ୍ଗ ଶ୍ୱେତଛତ୍ରୀ ରହିଥିଲା । ଦୁଇ ପାର୍ଶ୍ୱରେ ଚାମର ସେବା ହେଉଥିଲା । ପ୍ରଜାମାନେ ଅତୃପ୍ତ ନେତ୍ରରେ ତାଙ୍କର ଦର୍ଶନ କରୁଥିଲେ । ନଗର ବାହାରକୁ ଯାଇ ରାଜା ସେମାନଙ୍କୁ ଶ୍ରଦ୍ଧାପୂର୍ବକ ଫେରାଇ ଦେଲେ । ତା'ପରେ ସେ ଏପରି ଘନଜଙ୍ଗଲ ମଧ୍ୟରେ ପ୍ରବେଶ କଲେ ଯେଉଁଥିରେ ଅନେକ ହିଂସ୍ର ଜନ୍ତୁ ବାସ କରୁଥିଲେ । ରାଜା ଅନେକ ସିଂହ, ବାଘ, ମୃଗ,

Digitized by srujanika@gmail.com

ଉତ୍ପାତ ଜନ୍ତୁଙ୍କୁ ମାରିଲେ । ସୈନିକମାନେ ସେହି ଜଙ୍ଗଲ ଭିତରେ କୋଳାହଳ କରି ଦେଲେ । ମୃଗମାନେ ଦୌଡ଼ି ପଳାଇବାକୁ ଲାଗିଲେ । ହାତୀମାନେ ଇତସ୍ତତଃ ହେବାକୁ ଲାଗିଲେ! ସିଂହ ଗର୍ଜ୍ଜନ କରିବାକୁ ଲାଗିଲେ ତଥା ଅନ୍ୟାନ୍ୟ ବନ୍ୟ ଜନ୍ତୁ ଭୟରେ ଏଣେତେଣେ ଲୁଚିବାକୁ ଲାଗିଲେ । ସୈନିକମାନେ କଞ୍ଚାମାଂସ ଖାଇ ହସି ଖେଳି ଗୀତ ଗାଇ ନାଚିବାକୁ ଲାଗିଲେ । ମହାରାଜ ସ୍ୱୟଂ ବନ୍ୟ ଜନ୍ତୁଙ୍କର ପଛେ ପଛେ ଯାଉଥିଲେ ଏବଂ ତାଙ୍କ ଅଙ୍ଗରକ୍ଷକ ତାଙ୍କୁ ଅନୁଗମନ କରୁଥିଲେ । ସୈନିକମାନେ ଖୁସିରେ ମାତାଲ ହୋଇଥିଲେ । ବଣକୁ ଆସି ସେମାନଙ୍କର ସ୍ୱଚ୍ଛଳତା ବଢ଼ି ଯାଇଥିଲା । ରାଜା ଗୋଟିଏ ବଣରୁ ଅନ୍ୟଏକ ବଣକୁ, ସେଠାରୁ ଆହୁରି ଅନ୍ୟ ଏକ ବଣକୁ ବୁଲି ବୁଲୁଥିଲେ ।”

ଶେଷରେ ଗୋଟିଏ ବଣ ଭିତରେ ରାଜା କ୍ଲାନ୍ତ ହୋଇ ରହିଗଲେ । କେଉଁଠି ବିଶ୍ରାମ ନେବେ ସେଇକଥା ଚିନ୍ତା କଲେ । ଏହି ସମୟରେ ଅଭିସାରିକା ପରି ଧୀର ମନ୍ଥର ଗତିରେ ପ୍ରବାହିତ ମାଳିନୀ ନଦୀ ତାଙ୍କୁ ଦେଖାଗଲା । ସେଥିରେ ଅଧିକ ଜଳ ନ ଥିଲା; କିନ୍ତୁ ଯେତିକି ଥିଲା ତାହା ଅତ୍ୟନ୍ତ ସ୍ୱଚ୍ଛ । ତା'ର ଦୁଇ ତୀରରେ ହଂସ, ସାରସ, ଚକ୍ରବାକ ତଥା ଅନ୍ୟାନ୍ୟ ଜଳଜନ୍ତୁ କଳରବ କରୁଥିଲେ । ସେଇ ନଦୀ ତଟରେ ତାଙ୍କୁ ଏକ ସୁନ୍ଦର ଆଶ୍ରମ ଦେଖାହେଲା । ସେଇ ଆଶ୍ରମରେ ଅନେକ ପ୍ରକାରର ଚିକ୍‌କଣ ପତ୍ର ଥିବା ଗଛସବୁ ଲାଗିଥିଲା । ସେଥିରେ କୌଣସି କଣ୍ଟା ଯୁକ୍ତ ବା ମୃ ଫଳଫୁଲହୀନ ଗଛ ନଥିଲା । ତା' ଉପରେ ବସି ପକ୍ଷୀ ନିଜ ମଧୁର ଧ୍ୱନିଦ୍ୱାରା ସେତେ-ଯେପରି ପଥିକମାନଙ୍କୁ ଆତିଥ୍ୟ ଦେବା ନିମନ୍ତେ ଆହ୍ୱାନ କରୁଥିଲେ । ଝିଙ୍କାରୀର ସ୍ୱର ସହ କୋଇଲିର କୁହୁତାନ ମିଶିଯାଇ ଗୋଟାଏ ବିଚିତ୍ର ସ୍ୱର ସୃଷ୍ଟି ହେଉଥିଲା । କ'ଣ ସବୁ କହି କହି ଶୁଆ ଉଡ଼ି ଯାଉଥିଲେ । ପାରା ଦାନା ଖୁଣ୍ଟୁଥିଲେ । ଅନ୍ୟ ପକ୍ଷୀ କେତେକ ଉଡ଼ୁଥିଲେ । ଆଉ କେତେ ବସା ଭିତରେ ବସିଥିଲେ ।

ଆଶ୍ରମର ବୃକ୍ଷସବୁ ପତ୍ରପୁଷ୍ପ ଭରା ତଥା ଘଞ୍ଚ ଥିଲା । ସେଗୁଡ଼ିକ ଉପରେ ଲତାସବୁ ଗୁଡ଼େଇ ହୋଇ ରହିଥିଲେ ତଥା ହଲି ହଲି ବୃକ୍ଷଗୁଡ଼ିକୁ ବାରମ୍ବାର ଆଲିଙ୍ଗନ କରୁଥିଲେ । ରଙ୍ଗ ବେରଙ୍ଗ ଫୁଲ ସବୁ ସେଥିରେ ଭର୍ତ୍ତି ହୋଇ ରଙ୍ଗୀନ ବସ୍ତ୍ରପରି ମନେ ହେଉଥିଲା । ବୃକ୍ଷଗୁଡ଼ିକର ବିଶାଳ ଶାଖାସବୁ ଯେତେଯେପରି ଆକାଶକୁ ସ୍ପର୍ଶ କରିବାକୁ ପରସ୍ପର ସହିତ ପ୍ରତିଯୋଗିତା କରୁଥିଲେ । ଫଳପୁଷ୍ପଭରା ଶାଖାଗୁଡ଼ିକ ଉପରେ ମଧୁଲୋଭୀ ଭ୍ରମରଗଣ ବସି ତନ୍ମୟ ହୋଇ ମଧୁପାନ କରୁଥିଲେ । ଶୀତଳ ମନ୍ଦ ପବନ ବାରମ୍ବାର ସେଇ ବୃକ୍ଷଙ୍କୁ ପୁଲକିତ କରୁଥିଲା । ସେଇ ଅନୁପମ ଆଶ୍ରମ ଦର୍ଶନରେ ମହାରାଜ ଦୁଷ୍ମନ୍ତଙ୍କର ମନ ଅତ୍ୟନ୍ତ ଆନନ୍ଦିତ ହେଲା । ସେ ବିସ୍ମୟାଭିଭୂତ ହୋଇ ଆଶ୍ରମକୁ ଲକ୍ଷ୍ୟ କରୁଥିଲେ । ମାଲିନୀ ନଦୀ ସେଇ ଆଶ୍ରମର ମଝିରେ ହିଁ ବହି

Digitized by srujanika@gmail.com

ଯାଇଥିଲା । ମଝିରୁ ଶ୍ରେଷ୍ଠ ଶ୍ରେଷ୍ଠ ନାଳି ସବୁ ଆଶ୍ରମର ବୃକ୍ଷମୂଳଗୁଡ଼ିକର ଜଳସେଚନ ନିମନ୍ତେ ଖୋଳାଯାଇଥିଲା । ସ୍ଥାନେ ସ୍ଥାନେ ଲତାକୁଞ୍ଜ ସବୁ ସୃଷ୍ଟି କରାଯାଇଥିଲା, ଯାହାର ପୁଷ୍ପର ସୁଗନ୍ଧରେ ସମ୍ପୂର୍ଣ୍ଣ ଆଶ୍ରମ ସୁବାସିତ ହୋଇଯାଉଥିଲା । ସମ୍ମୁଖରେ ହିଁ ତାଙ୍କୁ ଏକ ଜଟାଧାରୀ ତପସ୍ୱୀ ଦେଖା ଦେଲେ ।

ମହାରାଜ ବିନମ୍ର ସ୍ୱରରେ ହାତଯୋଡ଼ି କହିଲେ—"ତପସ୍ୱୀ ! ମୁଁ ଜାଣିବାକୁ ଚାହୁଁଛି ଏହା କେଉଁ ମହର୍ଷିଙ୍କର ଆଶ୍ରମ । କୃପାକରି କହିବେ କି ?"

ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ତପସ୍ୱୀ ଜଣକ କହିଲେ—"ହେ ରାଜା ! ଏହା କଶ୍ୟପ-କୁଳୋଦ୍‌ଭବ କୁଳପତି ଭଗବାନ କଣ୍ୱଙ୍କର ଆଶ୍ରମ ଅଟେ ।"

ଏହାଶୁଣି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ମନେ ମନେ ଭାବିଲେ—ଆଜି ମୋର ପରମ ସୌଭାଗ୍ୟ ଯେ ଭଗବାନ କଣ୍ୱଙ୍କର ଆଶ୍ରମରେ ଆସି ପହଞ୍ଚିଛି; ଆଜି ମୁଁ ସେଇ ମହର୍ଷିଙ୍କର ଦର୍ଶନ କରି ମୋ ଜୀବନକୁ ସଫଳ କରିବି । ଏହାଭାବି ସେ ଆଶ୍ରମର ଦ୍ୱାରଦେଶରେ ପହଞ୍ଚି ରଥରୁ ଓହ୍ଲାଇ ପଡ଼ିଲେ । ତାଙ୍କ ପାଖରୁ ସମସ୍ତ ରାଜକୀୟ ଆଡ଼ମ୍ବର କାଢ଼ି ଦିଆଗଲା । ସାଧାରଣ ବେଶରେ ସେ ନିଜ ମନ୍ତ୍ରୀ ଏବଂ ପୁରୋହିତଙ୍କୁ ନେଇ ଭଗବାନ କଣ୍ୱଙ୍କର ଦର୍ଶନ ନିମନ୍ତେ ଗଲେ । ସେ ସମସ୍ତ ସୈନିକମାନଙ୍କୁ ଆଦେଶ ଦେଇ ଗଲେ—"ଏହା ମୁନି ଆଶ୍ରମ ଅଟେ, ତେଣୁ ଏଠି କୌଣସି ପ୍ରକାରର ଉପଦ୍ରବ କରିବ ନାହିଁ । କେହି ମୋର ଅନୁସରଣ କରିବ ନାହିଁ । ଚୁପ୍‌ଚାପ ଶାନ୍ତିରେ ଏଠାରେ ଅପେକ୍ଷା କର ।" ଏହିପ୍ରକାର ନିର୍ଦ୍ଦେଶ ଦେଇ ମହାରାଜ ଆଶ୍ରମରେ ପ୍ରବେଶ କଲେ । ସେ ଦେଖିଲେ ଯେ ସ୍ଥାନେ ସ୍ଥାନେ ସିଂହ, ବ୍ୟାଘ୍ର, ମୃଗ ସ୍ୱଚ୍ଛନ୍ଦରେ ଏକାଠି ବସି ଖେଳୁଛନ୍ତି । ସେମାନେ ସମସ୍ତେ ଆଶ୍ରମର ପାଳିତ ପଶୁ ଥିଲେ । ଏମାନେ ମନୁଷ୍ୟଙ୍କୁ ଭୟ କରୁ ନଥିଲେ କିମ୍ବା କାହା ଉପରେ ଆକ୍ରମଣ କରୁ ନଥିଲେ । ମୟୂରମାନେ ପୁଚ୍ଛ କାଢ଼ି ଏପଟ ସେପଟ ହୋଇ ନୃତ୍ୟ କରୁଥିଲେ । ସ୍ଥାନେ ସ୍ଥାନେ ଦେବତାମାନଙ୍କର ପୀଠ ନିର୍ମିତ ହୋଇଥିଲା । ଶ୍ରେଷ୍ଠ ଶ୍ରେଷ୍ଠ ପର୍ଣ୍ଣ କୁଟୀରରେ ମୁନିଗଣ ବାସ କରୁଥିଲେ । ଅନେକ ଯଜ୍ଞବେଦୀ ତିଆରି ହୋଇଥିଲା । ସେଥିରୁ ଧୂଆଁ ବାହାରି ଆକାଶରେ ସୁଗନ୍ଧ ବିତରଣ କରି ବିଳୀନ ହୋଇଯାଉଥିଲା । ବ୍ରହ୍ମଚାରୀଗଣ ମୃଗଶିଶୁଙ୍କ ପରି ଏପଟ ସେପଟ ଖେଳିଯାଉଥିଲେ । ମହର୍ଷି ବସି ଧ୍ୟାନ କରୁଥିଲେ । କେତେଜଣ ସାମବେଦ ମନ୍ତ୍ର ଗାନ କରୁଥିଲେ, କେତେ-ଜଣ ଋଗ୍‌ବେଦ ପାଠ କରୁଥିଲେ, ଆଉ କେତେକ ଯଜୁର୍ବେଦ ସିଂହିତାକୁ ସ୍ୱରସହିତ ଉଚ୍ଚାରଣ କରୁଥିଲେ । କେତେକ ଶିଶୁ ଫଳ ତୋଳୁଥିଲେ ତଥା କୁଶ ସମିଧାକୁ ଏକତ୍ରିତ କରି ବାନ୍ଧୁଥିଲେ । ଅନେକ ଜଣ କୁଟୀରର ଅଗଣାକୁ ଗୋବରରେ

Digitized by srujanika@gmail.com

ଲଗୁଥିଲେ । ସେହି ଆଶ୍ରମରେ ଦଶ ସହସ୍ର ତପସ୍ୱୀ ଋଷି-ମୁନି, ବ୍ରହ୍ମଗୃହସ୍ଥ ତଥା ବାନପ୍ରସ୍ଥୀ ବାସ କରୁଥିଲେ । ବୈକୁଣ୍ଠ ସମାନ ସେହି ଆଶ୍ରମ ଅତ୍ୟନ୍ତ ରମଣୀୟ ହୋଇଥିଲା । ସେଠାରେ ସ୍ୱଚ୍ଛତା ଏପରି ଥିଲା ଯେ ଅଶୁଚିର ସ୍ଥାନ ସେଠାରେ ଦେଖା ନ ଥିଲା ।

ସୂତ ମୁନି କହୁଛନ୍ତି—"ମୁନିଗଣ ! ରାଜା ସେହି ଅନୁପମ ଶୋଭାମୟ ଆଶ୍ରମକୁ କୌତୂହଳୀ ହୋଇ ଋଦ୍ଧି ଗୃଦ୍ଧି କଣ୍ୱ ମୁନିଙ୍କ କୁଟୀରଆଡ଼କୁ ଅଗ୍ରସର ହେଲେ ।"

## ଛପ୍ପୟ

ମୃଗୟା-ହୃତ ନୃପ ଗଚ୍ଛେ ସେନ ସଜି ନିର୍ଜନ ବନ ମହୁଁ ।
ସିଂହ ବ୍ୟାଘ୍ର ମୃଗ ମାରି ଶ୍ରମିତ ହୋଇ ସୋଚେ ମନ ମହୁଁ ।।
ଋଷି ଆଶ୍ରମ ଇତ ହୋନ୍ତୁ ମଟାଉଁ ଶ୍ରମ ତହୁଁ ଜାଇ ।
କଣ୍ୱାଶ୍ରମ ତବ ଦୃଶ୍ୟ ଦୂର ତେହିଂ ଦୟୋ ଦଖାଇ ।।
ସଜଟନ୍ତ୍ର ତଜି ଚଲେ ନୃପ, ବ୍ରାହ୍ମୀ ଶ୍ରୀ ଲଖି ହୋଇ ଚକିତ ।
ଖଗ-ମୃଗ-ସେବିତ ପୁଷ୍ପ-ଫଳ-ଯୁତ ଆଶ୍ରମ ଶୋଭା ଲଖିତ ।।



କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ

Digitized by srujanika@gmail.com

ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କ ପାଇଁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର
ନୂତନ ପ୍ରକାଶିତ ଦୁଇଟି ପୁସ୍ତକ ।

## ଈଶ୍ୱର

ଲେଖକ—ଡଃ ନୃସିଂହ ଚରଣ ପଣ୍ଡା

ମୂଲ୍ୟ :

ସାଦା—ଟ ୨୦-୦୦
ବନ୍ଧାଇ—ଟ ୨୪-୦୦

## ଭାରତର ମୁନିଋଷି

ଲେଖକ- ବ୍ରଜକିଶୋର ସାହୁ

ମୂଲ୍ୟ :

ସାଦା—ଟ ୨୩-୦୦
ବନ୍ଧାଇ—ଟ ୨୭-୦୦

ସଂସ୍କୃତର ଅବକ୍ଷୟ ସମସ୍ତଙ୍କ ପାଇଁ ଚିନ୍ତାର ବିଷୟ । ଏହି ଅବକ୍ଷୟକୁ ବନ୍ଦ କରିବାକୁ ହେଲେ ମାନସିକ ଓ ବୌଦ୍ଧିକ ସ୍ତରରେ ଉଦ୍ୟମ ଆବଶ୍ୟକ ।

ସେଥିପାଇଁ ଏହି ଦୁଇଟି ପୁସ୍ତକ ଅବଶ୍ୟ ପଠନୀୟ ।

Digitized by srujanika@gmail.com